

# ରତ୍ନାକର ସ୍ମୃତି

# ରତ୍ନାକର-ସ୍ମୃତି

(୧୯୭୦)

ଯଶୋଃକୃତେ ଶଶ୍ୱଦୁଦାରବୃତ୍ତୟେ
ସଦା ବୁଧାମୋଦ କଳା ବିଳାସିନେ
ଯଥାର୍ଥ ରତ୍ନାକର ନାମଧାରଣେ
ସୁହୃତ୍ତମାୟ ତ୍ରିଦଶାତ୍ମନେ ନମଃ ॥

ସମ୍ପାଦନା :
ଶ୍ରୀ ସଚ୍ଚିଦାନନ୍ଦ କର ଏମ୍. ଏ.

ପ୍ରକାଶକ :
ହୃଦାନନ୍ଦ ପଣ୍ଡ

ଓପୁନର ପ୍ରିଣ୍ଟର୍ସ, କଟକ

# ତାଙ୍କର କେତୋଟି ଉପଦେଶ

(1) To sleep in daytime is almost to commit a sin.

(ଦିନରେ ଶୋଇବା ଏକ ପାପ ଭଳି)

(2) Moral courage makes a man man .

(ନୈତିକ ସାହସ ହିଁ ମଣିଷକୁ 'ମଣିଷ' କରେ)

(3) Shun procrastination .

(ଦୀର୍ଘସୂତ୍ରୀତା ପରିହାର କର)

(4) Of all the words that pen can write, tongue can utter, the worst are-' it might have been.

(ମସିରେ ଲେଖାଯାଉ ମଣିଷର କଣ୍ଠ ସ୍ୱରରୁ ଝରେ ଯେତେ ଶବ୍ଦ
ସବୁଠାରୁ ନୀଚତମ ହେଲା—ଆହା, ହୋଇ ଯାଇଥାନ୍ତା ଏହା ।)

(5) Trust no future however pleasant , Act act in the living present ,

ନାହିଁ ବିଶ୍ୱାସ ଭବିଷ୍ୟତେ, ହେଉ ପଛେ ତାହା ସୁଖପ୍ରଦ
କାମ କର, କର କାମ ଏହାହିଁ ବର୍ତ୍ତମାନର ସଂପଦ ।

(6) Be ready for the punishment of your sin, which is true forgiveness .

(ତୁମର ପାପର ଦଣ୍ଡ ପାଇଁ ପ୍ରସ୍ତୁତ ହୁଅ, ତାହାହିଁ ପ୍ରକୃତ କ୍ଷମା)

(7) 'ପିତୃଦେବୋ ଭବ' 'ମାତୃଦେବୋ ଭବ, ଆଚାର୍ଯ୍ୟଦେବୋ ଭବ' ।

(8) ସଙ୍ଗମଃ ସଜ୍ଜନୈଃ ସହ ।

ଏହି ଉପଦେଶଗୁଡ଼ିକୁ ସେ କେବଳ କଥାରେ ନ କହି ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ସେ ଆଶୀର୍ବାଦ କରନ୍ତୁ, ଏହି ଉପଦେଶଗୁଡ଼ିକୁ ଆମେ ଯେପରି ପାଳନ କରି ପ୍ରକୃତ ମନୁଷ୍ୟ ପଦବାଚ୍ୟ ହୋଇ ପାରିବୁ ।

ମିନତି ଦାଶ
ମେଡ଼ିକାଲ କଲେଜ, କଟକ



ବିରିବାଟୀର ରତ୍ନାକର ବିଦ୍ୟାମନ୍ଦିରର ପ୍ରାଣପ୍ରତିଷ୍ଠାତା ମହାଶୟ ଓ ସହଯୋଗୀଗଣ



ଗୋପବନ୍ଧୁ ଭବନରେ ଲାଲ ଲଜପତରାୟଙ୍କ ଶ୍ରାଦ୍ଧସଭାରେ ଅଧ୍ୟାପକ ରତ୍ନାକର ପତି ଭାଷଣ ଦେଉଛନ୍ତି ।
ପଣ୍ଡିତ ହରିହର, ଶ୍ରୀ ରାଧାନାଥ ରଥ ପ୍ରମୁଖ ବସିଛନ୍ତି ।

## ତାଙ୍କ ଲେଖନୀରୁ :—

(ସ୍ୱର୍ଗତ ରତ୍ନାକର ପଣ୍ଡା ଜଣେ ଦାର୍ଶନିକ ଓ ପ୍ରାବନ୍ଧକ ଭାବରେ ସୁପରିଚିତ । କିନ୍ତୁ ସେ ମଧ୍ୟ କବିତା ରଚନା କରିଥିଲେ ଓ ତାହା ତତ୍କାଳୀନ ପତ୍ରିକାରେ ପ୍ରକାଶ ପାଇଥିଲା । ତାଙ୍କ ରଚିତ କବିତାଗୁଡ଼ିକ ମଧ୍ୟରୁ ତିନୋଟି କବିତା ଏଠାରେ ପ୍ରକାଶ କଲୁ ।)

—୧ମ ଉଚ୍ଛ୍ୱାସ—

ମାତୃ କୋଳେ ଯେବେ ଲଭିଲି ଜନମ,
ଖେଳିଗଲା ଘରେ ଆନନ୍ଦ ପରମ ।
ସୁନେଇ ନାମି ସେ କାଟିଇ ମୋ ଲାଜ,
ଧାଈ ପଣେ ତାର ପଟାନ୍ତର ନାହିଁ ।

କୁଆଁ କୁଆଁ ଶୁଣିଲେ କାନ୍ଦ କାନ୍ଦ କୋଳେ,
ପଡ଼ିଗଲା ଯେବେ ବୃକ୍ଷ ବେଳା ଢୋଳେ ।
ଧାଇଁଲେ ଜନନୀ ତୋଳି ସ୍ନେହ ଭରେ,
ଲୋତକ ନୟନୁ ଧାର ଧାର ଝରେ ।

ସୁନେଇ ନାମୀର ହାତ କୌଶଳ,
ଚେତାଇ ଦେଲା ମୋ ଶରୀର ମଣ୍ଡଳ ।
ହସିଲେ ଜନନୀ ଭାଷିଲେ ବଚନ—
'ଧନ୍ୟ ଲୋ ସୁନେଇ ତୋର ଧାଈପଣ' ।

କି ଶୁଭ ମୁହୂର୍ତ୍ତେ ଲଭିଲୁ ଜନମ,
ଧାଈ ପଣେ କରୁ କି ସାଧୁ କରମ !
ହଜିଯାଇଥିଲା ମୋ ସୁଖ ସଙ୍ଗୀତ,
କେତେ ମନେ ଚିନ୍ତେ ଦେଇଥିଲି ଗାଳି ।

ଏବେ ସେ ଲଭିଲି ତୋ ଯୋଗୁଁ ଚେତନା,
ଭୁଲିଗଲି ମୁହିଁ ମନର ବେଦନା" ।
ଏକାଳେ ଆସିଣ ଏକଇ ବ୍ରାହ୍ମଣ,
ଠିକା ଥିଲି ଧରି କରେ ଝଣଝଣ ।

କହିଲ ବ୍ରାହ୍ମଣ ଜନକଙ୍କୁ ଗୁରୁ,
ଶୁଣ ହେ ମହାତ୍ମା ଆସିଛୁ କପାଇଁ ।
ଆସିଛୁ ଏ ଥର ଧର ଶିବଂଶାଣ,
ଏନ୍ତକ ପ୍ରାର୍ଥନା ପୂରାଅ ମୋ ଆଶ ।

ଅପୁତ୍ରକ ମୁହିଁ ପୁତ୍ର ଲଭେ ଆଶେ,
ଯାଗ ଯଜ୍ଞ କେତେ କରିଲି ଆଗ୍ନାପେ ।
ବ୍ରାହ୍ମଣ ବୈଷ୍ଣବ ତୋଷିଲି ମୁଁ କେତେ,
ପୂଜିଲି ବର୍ଷରେ ଦେବ ଦେବୀ ଯେତେ ।

କଲି ଅକାତରେ ଧନ ବିତରଣ,
ପତ୍ନୀ ସଙ୍ଗେ ପୁଣି ତୀର୍ଥ ପର୍ଯ୍ୟଟନ ।
ଓଷା ବ୍ରତମାନ ପାଳିଲି ଯତନେ,
ପୁତ୍ର ଲଭି ଆଶା ପୋଷି ସଦା ମନେ ।

ଘୋର ଭାଗ୍ୟ ମୋର ହେଲି ପୁତ୍ର ହୀନ,
ଦୀନ ହୀନ ଭାବେ କଟାଇଲି ଦିନ ।
ଆଉ ପୁତ୍ର ଲଭେ ନାହିଁ ମୋର ଆଶା,
କି କହିବି ଆଜ ନ ଆସଇ ଭାଷା ।

ନରେଶ ଯଶ ଶୁଣି ଆସିଲି ମୁଁ ଧାଇଁ,
ଆଉ କି ପାରିବି ପୁତ୍ର ଉପୁଜାଇ ।
ଜାଣିଛି ଏକେ ତ ତୁମ୍ଭେ ଧନହୀନ,
ଦୁଃଖ କଷ୍ଟେ ସଦା ପୁଡାଉଛ ଦିନ ।

ଦୁଜେ ପୁଣି ତୁମ୍ଭେ ଅଟ ପୁତ୍ରବାନ,
ଏହି ଶିଶୁଟିକୁ କରିପାର ଦାନ ।
ପୋଷ୍ୟପୁତ୍ର ଭାବେ ପାଳିବି ଯତନେ,
ଅପୁତ୍ରକ ଦୋଷ ଭୁଲିବି ଜୀବନେ ।

ହେବ ମୋର ଅନ୍ତ ଈଶ୍ୱରାଧିକାଶ,
ସକଳ ସମ୍ପଦ ହୋଇବ ତାହାର ।
ଏ ଥିଲା ମୋ କର୍ଣ୍ଣେ କହୁଛେ ଗଣେଶ,
ହେବ ହେ ଏ ତବ ଦୁଃଖର କାରଣ ।

ସୁନେଇଧାଈ ସେ ଶୁଣୁଥିଲା ବସି,
ବିକଟ ସ୍ୱରରେ ଦେଲା ତହୁଁ ହସି ।
ଭାଷିଲା—ହଇ ହେ ! ବ୍ରାହ୍ମଣ ଗୋସାଇଁ,
ମୁହିଁକୁ କି ତୁମ୍ଭ ଲାଜ ଟିକେ ନାହିଁ ?

ଆସିଛ ଏଠିକି ବଡ଼ ଜଣକ ପଣେ,
ଧନମୁଦ୍ରା ଦେଇ ଦରିଦ୍ର ବ୍ରାହ୍ମଣେ ।
ନେବ ତା ବଦଳେ ଏ ଶିଶୁ ତନୟ,
କରିବ ଜୀବନ ତବ ସୁଖମୟ ।

କପାଇଁ ଏ ମୋତେ ଦର୍ଶନ୍ତ ଗୋସାଇଁ,
ଏ ଶିଶୁ ତନୟ ନୁହେ ତୁମ୍ଭପାଇଁ ।
ଜନନୀ ଏହାର ଦୁଃଖିନୀ ଟି ସତ,
ସୁତଟି ପାଇଛି କରି ନାନା ବ୍ରତ ।

କୋହନପାତ୍ର ତାର ଅଟେ ଏ ତନୟ,
ଜାଣି ନାହିଁ କି ହେ ! ଜନନୀ ହୃଦୟ ।
କୋଟିନା ତାର ଏ ସନ୍ତାନ ପର,
ନାଧୁନ ଫିଟୁଳା ଆନନ୍ଦ ପସର ।

ସନ୍ତାନକୁ କୋଳେ ଧରିଣ ଜନନୀ,
ମଣଇ ନିଜକୁ ବଡ଼େ ମହାଧନୀ ।
ଦରିଦ୍ର ପଣରେ ହେଲେ ହୀନମାନ,
କି ହେବ, ତାହାର ଏ ଶିଶୁ ସନ୍ତାନ ।

କୋଳେ ଧରି ଭୁଞ୍ଜେ ସରଗର ସୁଖ,
ଉଦର ଜ୍ୱାଳାରେ ନୋହଣ ବିମୁଖ ।
ଦରିଦ୍ର କୁଟୀରେ ହେଲେହେଁ ଜନମ,
ନ ହେବ କି ଧନେ ପୁରୁଷ ଉତ୍ତମ ?

ଧାନ୍ୟପଣ ସିନା କରଇ ଗୋସାଇଁ,
ହୃଦୟେ କାହାକୁ ଡରେ ଓ଼ର ନାହିଁ ।
ଘର ଧାନ୍ଦ ମୁହିଁ ପଢ଼ିନାହିଁ ପାଠ—
କହୁ କହେ ଯାହା ତା ସତ ନିରାଟ ।

ଏ ଶିଶୁର ଜନ୍ମ ଏ ଘାନ କୁଟୀରେ—
ହେଲେହେଁ ହୋଇବ ବିଖ୍ୟାତ ମହୀରେ,
ପିତାମାତାଙ୍କର ବଢ଼ାଇବ ଟେକ,
ହୋଇବ ଏହାର ନିର୍ମଳ ବିବେକ ।

ଗ୍ରାମବାସୀଙ୍କର ବିପଦର ସଖା,
କପାଳେ ଏହାର ରହିଅଛି ଲେଖା ।
ନିଜବାହୁ ବଳେ ହେବ ମହାସ୍ଥାନ,
କହି ଦେଉଛନ୍ତି ମତେ ଭଗବାନ ।

ଏକାଳେ ଜନକ ସୁନେଇକୁ ଗୁହିଁ,
କହନ୍ତି କଳାହ କରୁ ତୁ କିମ୍ପାଇଁ,
ସରଳ ମଧୁର ବଚନର ବଳେ
ସନ୍ତୋଷ ଲଭନ୍ତି ଏଭବେ ସଭଳେ
କର୍କଶ ବଚନ ପ୍ରାଣେ ଦିଏ ଦୁଃଖ,
କେବେହେଁ କାହାକୁ ନ କର ବିମୁଖ ।

ଅସମ୍ପୂର୍ଣ୍ଣ

# ଗତ କଥା

କେତେ ଦିନର କେତେ କଥା ପଡ଼ିଯାଏ ମନେ
ଗତ ଜୀବନ ଦେଖି ମନ ନାଚେ ନାନା ତାନେ ।
ସ୍ମୃତି ଦୁଆରୁ ଦିଶେ କେତେ ମଧୁର ହସାହସି,
କେତେ ବିଷାଦ କେତେ ପ୍ରାଣ-ଡୋର କଶାକଷି ।

ହରଷର ଅନ୍ତରାଳେ ଦୁଃଖ ଘନଚ୍ଛାୟା
ମାଡ଼ିବସିଛି ହୃଦଭୂମି ଧରି ନାନା ମାୟା ।
ଶଇଶବର ସରଳ ଶାନ୍ତ ସୁଖ-ଆସ୍ୱାଦନ
ପ୍ରଣୟୀଜନ-ହରଷଭରା-ପ୍ରେମ-ଆବାହନ ।

ଜନନୀ ପ୍ରାଣପୀୟୂଷ-ବାଣୀ ସ୍ନିଗ୍ଧ ଆଲିଙ୍ଗନ
ଗୁରୁ ବଦନେ ଜୀବନ ପୂତ-ମନ୍ତ୍ର ଉଚ୍ଚାରଣ;
ସାନ୍ଧ୍ୟ ଶୀତଳ ତଟିନୀତଟ-ମୃଦୁଳ ସମୀରଣ,
ତ୍ରିବାହେ ତାର ହୃଦୟଖୋଲା ମଧୁର ସମ୍ଭାଷଣ ।

ଯାଇଛି ଲୁଚି ଗତ ଜୀବନେ ନ ଦିଏ ଆଉ ଦେଖା
ସ୍ମୃତି-ଦୁଆରେ ଖେଳଇ ତାର କ୍ଷୀଣ କିରଣରେଖା ।
ଦେଖଇ ସେ ରେଖା ଦିଶଇ କେତେ ବିରହ ଯାତନା ଭୋଗ
କେତେ ବିଳାପ, ଲାଞ୍ଛନା ପୂର୍ଣ୍ଣ ଦୁଃଖ, ଶୋକ, ରୋଗ ।

ଆଶା କୁହୁକେ ତୋଳିଛି ଯେତେ ସ୍ୱର୍ଣ୍ଣ ଅଟ୍ଟାଳିକା
ନିରାଶ ମନେ ଲଭିଛି ଯେତେ ବିପଦ ବିଭୀଷିକା;
ନାହିଁ ତ ଆଉ ଗଲାଣି କେଉଁ ଦୂର ଅଜ୍ଞାତ ଦେଶେ
ଉଭେଇ ଯାଏ ପଲକେ ଯଥା ସ୍ୱପନ ସୁପ୍ତି ଶେଷେ ।

ଏମନେ ବସି କାହଲ ଦିନ ଗତ କଥା ଭାଳି,
କେଉଁ ବୁଲ୍‌ବୁଲି କିଏ ସେ ମୋର ଶ୍ରବଣେ ଦିଏ ଢାଳି ।
“ଜୀବନ ସାରା ଖେଳଘର, ଖେଳଇ ଗୋଟି ଗୋଟି,
କ୍ଷଣକେ ସୁଖ, କ୍ଷଣକେ ଦୁଃଖ ବଦେ କୋଟି କୋଟି ।

ଗ୍ରୀଷ୍ମ ଖର, ବରଷାଧାର, ଶରତ ଶଙ୍ଖ ଖେଳା,
ହେମନ୍ତର ହେମ ଶାନ୍ତ ଶୀତ ଶିଶିର ହେଳା ।
ମଧୁକାକର ମଳୟ ତାନ ପତ୍ରପୁଷ୍ପଭର,
ଦେଖି ହସଇ ଗୋଟିକ ପରେ ଗୋଟିଏ ସିନା ଧର ।

ବିବିଧ ଖେଳା ତେସନେ ତୋର ଜୀବନେ ହଏ ଦେଖା,
ସୃଷ୍ଟିର ଏ ମୂଳମନ୍ତ୍ର ଧରମେ ତୋର ଲେଖା ।
ପୂର୍ଣ୍ଣ ସୁଖ ପୂର୍ଣ୍ଣଶାନ୍ତି ଗୋଟିକ ବିନା କାହିଁ,
ଅବୁଝା ପଣେ ଗତ ଜୀବନେ ନହୁଅ ଆଉ ବାଇ ।”



# ଜରା-ଆମନ୍ତ୍ରଣ

ସଂସାରର ଗଣ୍ଡିବନ୍ଧା ସାରେଣି ଜୀବନେ,
ଜାଗିଉଠେ କେତେ କଥା ଅସ୍ଥିର ଏ ମନେ ।
ଶୈଶବରୁ ଅରଜିଲି ବନ୍ଧୁ ଅଗଣନ,
ଅନ୍ତିମ ଜୀବନେ ଏବେ କରଇ ସ୍ମରଣ ।

ବାଲ୍ୟସଖା ବାଳକାଳେ ଖେଳିଲେ ମୋ ସଙ୍ଗେ,
ହସିଖେଳି କଟାଇଲେ ଦିନ କେତେ ରଙ୍ଗେ ।
କେତେ ହସ, କେତେ କାନ୍ଦ, କେତେ ଯେ ରହସ୍ୟ,
ଜଳର ତରଙ୍ଗ ପ୍ରାୟେ ହୁଅନ୍ତି ଅଦୃଶ୍ୟ ।

ସଂସାରର କଷାଘାତ ନ ଛୁଇଁ ପରାଣେ,
ସରଳ ହୃଦୟେ ମୋର କି ଆନନ୍ଦ ଆଣେ ?
ପ୍ରଫୁଲ୍ଲ ବଦନେ ମୋର ଜ୍ୟୋତିର ମୂର୍ଚ୍ଛନା,
ପୋଛିଦିଏ ହୃଦପଟୁ ସକଳ ଯାତନା ।

ତାରୁଣ୍ୟର ଅଭ୍ୟୁଦୟେ ନବୀନ ଉତ୍ସାହେ,
କେତେ ନବନବ ଭାବେ ପ୍ରାଣେ ଖେଳିଯାଏ !
ଜଗତ ମଣଇଁ ଯେହ୍ନେ ନନ୍ଦନ କାନନ,
ତା ଶୋଭା-ସମ୍ପଦ ମନ କରଇ ହରଣ ।

କି ଅପୂର୍ବ ସୁଖ ତହିଁ କରେ ଉପଭୋଗ,
ଭୁଲି ଜୀବନର ଯେତେ ଦୁଃଖ ଶୋକ ରୋଗ ।
ଯୌବନର ଉନ୍ମାଦନା ନଚୁଏ କରଙ୍ଗେ,
କରେ ସନ୍ତରଣ ଭବ-ସାଗର-ତରଙ୍ଗେ ।

ଖୋଜିବୁଲେ ଥଳକୂଳ ସେ ସାଗର ବକ୍ଷେ,
ନ ପାଇ ସନ୍ଧାନ ତାର ଚଳଇ ଅଲକ୍ଷ୍ୟେ ।
ପଥ କି ବିପଥ ମୋର ନରହଇ ଜ୍ଞାନ,
ପ୍ରାଣଭରି ଖେଳେ ଗର୍ବ ଦମ୍ଭ ଅଭିମାନ ।

ଗର୍ଜ୍ଜିବ ଲୁହାର ବାଡ଼ ଭାଙ୍ଗିବ ପର୍ବତ,
ଶ୍ରମ ପରାକ୍ରମେ ବଶ କରିବ ଜଗତ ।
ଗଢ଼ିବ କୁବେରପୁରୀ, ରଚିବ ସରଗ,
ଧରାକୁ ମଣିବ ସର୍ବ ହୋଇଣ ସୁଭଗ ।

ଉଠେ ପ୍ରାଣେ କହୁଣ ମୋ କେତେ ଉନ୍ମାଦନା,
ଘନ ଘନ ଖେଳିଯାଏ ଅପୂର୍ବ କଳ୍ପନା ।
କିନ୍ତୁ ହାୟ ! ଆଜି ଆଉ ନାହିଁ ସେ ଜୀବନ,
କି ଅଦ୍ଭୁତେ ହଜିଗଲା ତା'ର ଚିହ୍ନବର୍ଣ୍ଣ ।

ଜରାର କଷଣ ଏବେ ଘାରଇ ସତତ,
ସକଳ ଶକତି ମନେ ତହିଁ ପରାହତ ।
ଜୀବନ ମଣଇଁ ଆଜି ଦୁଃଖର ଭଣ୍ଡାର,
ଭାଳଇ ଏକାକୀ କେମନ୍ତେ ହେବି ଏଥୁଁ ପାର ।

ଏ ଭାବନା ଅନ୍ତରାଳେ ଶୁଭଇ ଶବଦ,
ପରାଣେ ଦିଅଇ ଅହୋ ! ଅପୂର୍ବ ଆନନ୍ଦ ।
କହେ ସେ ଶବଦ—ଆରେ, ମାନବ ପାଗଳ !
ଭୁଲିଯାଉ ଜୀବନର ମହା ଲକ୍ଷ୍ୟସ୍ଥଳ ?

ନୁହେରେ ଜୀବନ ତୋର ଜରାର ଶିକାର,
ସକଳ ଭାବନା ତୋର ମନର ବିକାର ।
ଜରା ଯେବେ ଜୀବନରେ ଦିଏ ତୋର ଦେଖା,
ମଣ, ତାହା ଲକ୍ଷ୍ୟସ୍ଥଳ-ନିର୍ଦ୍ଦେଶକ-ରେଖା ।

ଅନନ୍ତ-ଶକତି-ପରିପୂର୍ଣ୍ଣ ତୋ ଜୀବନ,
ରୋଧି ନ ପାରଇ ତାହା ଜରାର କଷଣ ।
ଯାହାକୁ ମରଣ ବୋଲି ମଣୁ ଏ ଜଗତେ,
ନବୀନ-ଜୀବନ-ପଥ ଅଟେ ସେ ମରତେ ।

ଅନାଦ୍ୟ କୋଷ୍ଠୁ ତୁ ନିତ୍ୟ-ଯୌବନ-ବିଳାସୀ,
ଅନ୍ତରେ ନିହିତ ନବ ନବ ଜ୍ୟୋତିରାଶି ।
ସେ ଜ୍ୟୋତି-ବନ୍ୟାସେ ଢୁଞ୍ଚିଯିବ ଜରା-ତମ,
ଲଭିବୁ ପରାଣେ ପୂର୍ଣ୍ଣ ପୁରୁଷ-ଉତ୍ତମ ।

ମର୍ତ୍ତ୍ୟରେ ଜନମ ତୋର ସାଧନାର ଲାଗି,
ପ୍ରାଣର ପୂର୍ଣ୍ଣତା-ପଥେ ଉଠ ଏବେ ଜାଗି ।
ଏ ସାଧନା-ପୀଠେ ତୁହି ହେବୁରେ ଅମର,
ଆଜ ଏ ନିଭୃତେ ଘେନ ଏ ମହା ମନ୍ତ୍ର ।

ଶୈଶବ କୌମାର ଜରା ଜିଣି ଆତ୍ମବଳେ,
ଅନାଦ୍ୟ ନିତ୍ୟର ସୁଖ ଭୁଞ୍ଜ ମହୀତଳେ ।

---



# ଆଦର୍ଶ ଅଧ୍ୟାପକ

**ଡଃ କୁଞ୍ଜବିହାରୀ ତ୍ରିପାଠୀ,** ଅଧ୍ୟାପକ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।

—ଆଜ୍ଞା ! ଦଣ୍ଡବତ ।

—'ଅଦ୍ୟଷ୍ଟୋତ୍ତର ସମ୍ବତ୍ସରଞ୍ଜୀବିତମସ୍ତୁ', କରେ ହୀନା ଭଲ ଅଛୁ ତ ?

—ଆଜ୍ଞା ! ବଅସ ଆସି ଗୃହକୋଡ଼ ଦୁଇ ଧଇଲା । ଆଉ ଭଲ କଣ ପଚାରୁଛନ୍ତ ? ଦେହ ଭଲଅଛୁ ଯେ ଏବକୁ ସଂସାରର ନୂଆ ଢଙ୍ଗଢାଙ୍ଗ ଆଉ ଭଲ ଲାଗୁନାହିଁ । ଠାକୁରେ ତୁରନ୍ତ ନେଇଗଲେ ଭଲ ।

—ନା, ନା, ଦେହ ଭଲ ଥାଇ ତୁ ବିଶାଶଏ ବର୍ଷ ବଞ୍ଚିଲେ ଗାଁର ଭଲ ହେବ । ତୁ ଚାଲିଗଲେ ଏ ଗାଆଁର ଲୋକଙ୍କୁ ଭଲମନ୍ଦରେ ତାଗିଦ୍ କରିବାକୁ କେହି ନଥିବ ।

—ହଉ, ଆପଣଙ୍କର ଆଶୀର୍ବାଦ ।

—ଆଜ୍ଞା, ଏ ବାପ ଗୋସେଇଁବାପ ଅମଳର ଘରଖଣ୍ଡ କଣ ଏପରି ମାଟିଘର ହୋଇ ପଡ଼ିଥିବ ? ଗାଁ ଚାରିଆଡ଼ୁ ଯେ ଚାଠପଡ଼ି ହାକିମ ହୁକୁମା ହେଲେ ତାଙ୍କ ଗାଁ ଘରଖଣ୍ଡି ପକ୍କା କରିଗଲେ । ଆପଣଙ୍କ ଖଣ୍ଡିକ ବାକି ମାଟି ହୋଇ ପଡ଼ି ରହିଲା । ଗାଁ ଘରଆଡ଼େ ଟିକିଏ ନଜର ଦେଲେ ଭଲ ହୁଅନ୍ତା ।

—ହୀନା, ଭାଗବତ ତ ଶୁଣିଛୁ, ଭାଗବତ କଣ କହୁଛି ଧନ ଅର୍ଜିଲେ—ଧର୍ମ କରି, ଧର୍ମେ ପ୍ରାପତ ନରହରି ।

—ଦେଖିଲୁ ହୀନା, ଧନ ଅର୍ଜିଲେ କୋଠା କରିବା ତ ଭାଗବତ ଲେଖିନାହିଁ ?

—ହିଁ ଆଜ୍ଞା ସତ କହୁଛନ୍ତି । ହେଲେ, ଗାଁର କେତେ ଲୋକ ଏ କଥା ଭରସି ଆପଣଙ୍କ ଆଗରେ କହି ନ ପାରିଲାରୁ ମୁଁ କହି ପକାଇଲି ।

ତାଙ୍କ ଉପା ଗ୍ରାମର ବୟୋଅଶୀ ବର୍ଷର ବୁଢ଼ା ସ୍ୱାମୀ ଶୋଇ ଜ୍ୱାଙ୍କ ଗ୍ରାମର ତଥା ନିକଟବର୍ତ୍ତୀ ଗ୍ରାମର ବଡ଼ ପାଠୁଆମାନଙ୍କର ସ୍ୱ ସ୍ୱ ଗ୍ରାମର ଆଧୁନିକ ଧରଣର କୋଠାଘର ଦେଖି ସେହିପରି ଖଣ୍ଡିଏ କୋଠାଘର ନିଜ ଗ୍ରାମରେ କରିବା ସକାଶେ ଯାହାଙ୍କ ପାଖରେ ପୂର୍ବୋକ୍ତ ଭାବରେ ନିଜର ମତବ୍ୟକ୍ତ କରିଥିଲେ, ସେ ହେଉଛନ୍ତି ଆମର ପ୍ରାତଃସ୍ମରଣୀୟ ଆଦର୍ଶ ଅଧ୍ୟାପକ ପୂଜ୍ୟ ରତ୍ନାକର ପତି ।

ସ୍ୱର୍ଗତ ସମ୍ମାନାସ୍ପଦ ଅଧ୍ୟାପକ ରତ୍ନାକର ପତି ଥିଲେ ଜଣେ ବଦାନ୍ୟ, ନିରହଙ୍କାର, କର୍ତ୍ତବ୍ୟପରାୟଣ ଏବଂ ଆତ୍ମପ୍ରଚାରପରାଙ୍ମୁଖ ଦାର୍ଶନିକ ।

ତାଙ୍କ ସହ ମୋର ପରିଚୟ ହୁଏ ୧୯୨୮ ମସିହାରେ, ୧୯୬୯ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏ ପରିଚୟ କ୍ରମଶଃ ଘନିଷ୍ଠତାରେ ପରିଣତ ହୁଏ । ୧୯୨୮ଠାରୁ ୧୯୩୨ ପର୍ଯ୍ୟନ୍ତ ୪ବର୍ଷ କାଳରୁ ୨ବର୍ଷ ମୁଁ ତର୍କଶାସ୍ତ୍ରର ଛାତ୍ର ହୋଇଥିବାରୁ ଏବଂ ଏହା ପରେ ୨ବର୍ଷ ବି. ଏ. ଶ୍ରେଣୀରେ ଦର୍ଶନଶାସ୍ତ୍ରର ଛାତ୍ର ହୋଇଥିବାରୁ ମୁଁ ତାଙ୍କ ସହିତ ରେଭେନ୍‌ସା କଲେଜରେ ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇଥିଲି । ଏ ଚାରିବର୍ଷ ମଧ୍ୟରେ ତାଙ୍କଠାରୁ ବହୁ ଉପଦେଶ ଗ୍ରହଣ କରିଅଛି ।

୧୯୩୮ରେ ଅଧ୍ୟାପକ କାଶୀନାଥ ଦାଶଙ୍କ ଅବସରପ୍ରାପ୍ତି ପରେ ତାଙ୍କ ସ୍ଥାନରେ ରେଭେନ୍‌ସା କଲେଜରେ ମୋର ଅଧ୍ୟାପକତ୍ୱ ସମୟ ମଧ୍ୟରେ ସେ କିଛି ସମୟ ଓଡ଼ିଆ ବିଭାଗରେ ଅନ୍ତର୍ଭୁକ୍ତ ହୋଇ ଥିବାରୁ ତାଙ୍କ ସହିତ ଓଡ଼ିଆ ବିଭାଗର ସହକର୍ମୀ ରୂପେ କାର୍ଯ୍ୟ କରି ଆସିଅଛି । ତାଙ୍କ ମୁଖରୁ ତାଙ୍କ ଜୀବନୀସମ୍ବନ୍ଧୀୟ ଅନେକ କଥା ମଧ୍ୟ ଶୁଣିଅଛି ।

ଶୈଶବ କାଳରେ ସେ ବହୁତ କଷ୍ଟ ସ୍ୱୀକାର କରି ବିଦ୍ୟାଧ୍ୟୟନ କରିଥିଲେ । କଟକର (ଏକାଡେମୀ) ସ୍କୁଲରେ ପଢ଼ିବା ସମୟରେ କିଛିଦିନ ତାଙ୍କ ଗ୍ରାମରୁ ପ୍ରତିଦିନ କଟକକୁ ଯା ଆସ କରି ପଢୁଥିଲେ । ସ୍କୁଲରୁ ପଦବ୍ରଜରେ ଗ୍ରାମକୁ ଫେରିବା ସମୟରେ ଗ୍ରୀଷ୍ମଋତୁର ପ୍ରଚଣ୍ଡ ଉତ୍ତାପରେ ତାଙ୍କ କଣ୍ଠ ଶୁଷ୍କ ହୋଇଯାଏ ଏବଂ ସେ ଅଗତ୍ୟା ଓଉଗଛରେ ଚଢ଼ି ଓଉଫଳ ଚୋବାଇ କଣ୍ଠ ଆର୍ଦ୍ର କରିଥାନ୍ତି । ଅର୍ଥାଭାବରୁ ବହି କିଣି

ନ ପାରି ଶ୍ରୀଯୁକ୍ତ ଭାଗିରଥୀ ମହାପାତ୍ର ପ୍ରମୁଖ ମହାଧ୍ୟାୟୀଙ୍କଠାରୁ ପାଠ୍ୟପୁସ୍ତକ ଧାର କରି ପଢ଼ି ଫେରାଇ ଦିଅନ୍ତି । ପାଠଦଶାରେ କଷ୍ଟକରେ ରହି ନିଜେ ଚଳାଇ କରି ଲଣ୍ଠନର ବ୍ୟବସ୍ଥା କରି ନ ପାରି, ଚୁଲି ଆଲୁଅରେ ପୁସ୍ତକ ପାଠ କରନ୍ତି ଏବଂ ଅତ୍ୟନ୍ତ ମେଧାବୀ ଥିବାରୁ ଯାହା ଥରେ ମାତ୍ର ପଢ଼ନ୍ତି ବା ଶୁଣନ୍ତି ତାହା ମନେ ରଖନ୍ତି ।

କଠିନ ଓ ଶ୍ରମମୟ ଛାତ୍ରଜୀବନ ପରେ ସେ ଦର୍ଶନ ଅଧ୍ୟାପକ ଭାବରେ ନିଜ ଯୋଗ୍ୟତାବଶତଃ ସରକାରୀ ନିଯୁକ୍ତି ଲାଭ କରନ୍ତି । ଏଥିସକାଶେ ତାଙ୍କ ଶ୍ୱଶୁର ପୁଣ୍ୟଶ୍ଲୋକ ଉତ୍କଳମଣି ଗୋପବନ୍ଧୁଙ୍କର କୌଣସି ସାହାଯ୍ୟ ଆବଶ୍ୟକ ହୋଇନାହିଁ । ଏ ପ୍ରସଙ୍ଗରେ ଗୋପବନ୍ଧୁ ବାବୁ ଶିକ୍ଷା ବିଭାଗର ଡିରେକ୍ଟରଙ୍କୁ କହି ତାଙ୍କ ଜାମାତା ରତ୍ନାକର ବାବୁଙ୍କୁ ଚାକିରିରେ ରଖାଇବା ଅଭିଯୋଗ ଭିତ୍ତିହୀନ । *

ଅଧ୍ୟାପକ ପତିଙ୍କ ନିୟମାନୁବର୍ତ୍ତିତା ଓ କର୍ତ୍ତବ୍ୟପରାୟଣତା ଛାତ୍ରମାନଙ୍କ ହୃଦୟରେ ଗଭୀର ରେଖାପାତ କରେ । ସେ ଠିକ୍ ସମୟରେ ଶ୍ରେଣୀକୁ ଆସି ଉପସ୍ଥାନ ନେଇ ଦଣ୍ଡାୟମାନ ହୋଇ ଅଧ୍ୟାପନାରେ ବ୍ୟାପୃତ ହୁଅନ୍ତି ଓ ସମାପ୍ତି ସୂଚକ ଘଣ୍ଟି ବାଜିବା ପର୍ଯ୍ୟନ୍ତ ଉଚ୍ଚ ସ୍ୱରରେ ଅଧ୍ୟାପନା କରନ୍ତି । ମଧ୍ୟେ ମଧ୍ୟେ ବ୍ଲାକ୍‌ବୋର୍ଡ଼ରେ ଲେଖି ବକ୍ତବ୍ୟ ବିଷୟ ସ୍ପଷ୍ଟୀକୃତ କରନ୍ତି । ବି. ଏ. ଦର୍ଶନ ଶ୍ରେଣୀରେ ଆମ୍ଭେ ସ୍ୱଳ୍ପସଂଖ୍ୟକ ଛାତ୍ର ଥିବାରୁ ସେ ଉପବେଶନ କରି ଅଧ୍ୟାପନା କରୁଥାନ୍ତି ଏବଂ ପ୍ରୟୋଜନାନୁସାରେ ବ୍ଲାକ୍‌ବୋର୍ଡରେ ଲେଖି ବୁଝାଇ ଦେଉଥାନ୍ତି ।

---

* ପଣ୍ଡିତ ଗୋଦାବରୀଶ ଲେଖିଛନ୍ତି, "ନୀଳକଣ୍ଠବାବୁ, କୃପାସିନ୍ଧୁ ଓ ମୁଁ ସମସ୍ତେ ଏମ୍. ଏ. ପାସ୍ କରିଥିଲୁ । ଗୋପବନ୍ଧୁ ବାବୁ ଆମ୍ଭକୁ ନେଇ ତ୍ୟାଗମନ୍ତ୍ରରେ ଦୀକ୍ଷିତ କରାଇଲେ । କିନ୍ତୁ ତାଙ୍କ ଜୋଇଁ ଯେତେବେଳେ ଏମ୍. ଏ. ପାସ୍‌କଲେ, ଶିକ୍ଷା ବିଭାଗ ଡିରେକ୍ଟରଙ୍କୁ କହି ତାଙ୍କୁ ସରକାରୀ ଚାକିରିରେ ରଖାଇ ଦେଲେ । ଏହି ଅଭିଯୋଗର ଉତ୍ତର ମୁଁ କେବେ ଦେଇପାରି ନାହିଁ ।" ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ—ଗୋଦାବରୀଶ ମିଶ୍ର, ୧ମ ସଂସ୍କରଣ, ୧୯୫୮, କଟକ ।

ଅଧ୍ୟାପକ ପତି ଜଣେ ନିପୁଣ ଅଧ୍ୟାପକ ଥିଲେ ହେଁ ପ୍ରାୟ ଦଶବର୍ଷ କଲେଜରେ ଅଧ୍ୟାପନା କରିବା ପରେ ମଧ୍ୟ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରାଶ୍ନିକ ବା ପରୀକ୍ଷକ ଭାବରେ ନିଯୁକ୍ତି ପାଇନଥିଲେ । ଏଥିସକାଶେ ସେ ଆପତ୍ତି ବା ଅଭିଯୋଗ କରି ଥିବାର ଜଣାପାଇ ନାହିଁ । ସିନେଟ୍ ପ୍ରଭୃତିକୁ ନିର୍ବାଚିତ ହୋଇ ସଭ୍ୟ ଭାବରେ ଯୋଗ ଦେବାକୁ ଚେଷ୍ଟା କରିବାର ଜଣାପଡ଼ିନାହିଁ ।

ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଭାବରେ ଯୋଗ-ଦେବା ବେଳେ ଓଡ଼ିଆ ବୈକଳ୍ପିକ ବିଷୟ ରୂପେ ଅଧୀତ ନ ହୋଇ କେବଳ ସପ୍ତାହରେ ଗୋଟିଏ ଘଣ୍ଟା ବାଧ୍ୟତାମୂଳକ ଭାବେ ପଢ଼ା ହେଉଥିଲା । କେତେକ ବର୍ଷ ପରେ ଓଡ଼ିଆ ପାସ ବିଷୟ ବା ବୈକଳ୍ପିକ ବିଷୟ ରୂପେ ପାଠ୍ୟ ହେଲା । ତର୍କଶାସ୍ତ୍ର ଓ ଦର୍ଶନ କ୍ଲାସରୁ ଛାତ୍ର ସଂଖ୍ୟା ହ୍ରାସ ପାଇଲା । ଫଳତଃ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ଅଧ୍ୟାପକ ପତିଙ୍କୁ କେତେକ ଘଣ୍ଟା ଓଡ଼ିଆ ପଢ଼ାଇବାକୁ ପଡ଼ିଲା । ଏହି ସମୟରେ ଓଡ଼ିଆ ଏବଂ ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି । ଅଧ୍ୟାପକ ପତି ତାଙ୍କ ପଠଦ୍ଦଶାରେ ବର୍ଷେ ବା ଦୁଇବର୍ଷ ଅଧ୍ୟାପକ ମହାନ୍ତିଙ୍କର ଛାତ୍ର ଥିଲେ । ଓଡ଼ିଆ ଅଧ୍ୟାପକ ଭାବରେ ପତି-ମହୋଦୟ ଡଃ ମହାନ୍ତିଙ୍କ ଅଧୀନରେ କାର୍ଯ୍ୟ କରୁଥାନ୍ତି । ଥରେ ଡଃ ମହାନ୍ତିଙ୍କ ନିର୍ଦ୍ଦେଶାନୁସାରେ ଅଧ୍ୟାପକ ପତି ଓଡ଼ିଆରେ ପ୍ରଶ୍ନ କରି ପାଣ୍ଡୁଲିପିଟି ତାହାଙ୍କୁ ଦିଅନ୍ତେ, ସେ ତାହାକୁ ପଢ଼ି ଅଧ୍ୟାପକଙ୍କ ବୈଠକ ଗୃହରେ ପ୍ରଶ୍ନାବଳୀରେ ରଚନାଶୈଳୀଗତ ଦୋଷ ବା ତ୍ରୁଟି ଦେଖାଇ ମନ୍ତବ୍ୟ ପ୍ରକାଶ କଲେ । ଅଧ୍ୟାପକ ପତି ଏଥିରେ କ୍ଷୁବ୍ଧ ହୋଇ "ତାଙ୍କ ପ୍ରଶ୍ନାବଳୀ ଶାସ୍ତ୍ର ଦୃଷ୍ଟିରୁ ପ୍ରମାଦହୀନ" ଏହି ମର୍ମରେ ଏପରି ଉଚ୍ଚ ସ୍ୱରରେ ଉତ୍ତର ଦେଲେ ଯେ ଆମ୍ଭେ ଅବାକ୍ ହୋଇଗଲୁ । ଡଃ ମହାନ୍ତି ମଧ୍ୟ କିଛି ପ୍ରତ୍ୟୁତ୍ତର ଦେଲେନାହିଁ । ଏହି ଘଟନା ବ୍ୟତୀତ ଅଧ୍ୟାପକ ପତିଙ୍କୁ କ୍ରୁଦ୍ଧ ହେବାର ମୁଁ ଦେଖିନାହିଁ ।

ଅଧ୍ୟାପକ ପତି ବହୁତ ହାଇସ୍କୁଲର ପରିଚାଳନା ସହିତ ସମ୍ପୃକ୍ତ ଥିଲେ ଏବଂ ଉତ୍କଳ ସାହିତ୍ୟ ସମାଜରେ କିଛିଦିନ ସଭାପତି ଭାବରେ କାର୍ଯ୍ୟ କରିଥିଲେ ।

ରେଭେନ୍‌ସା କଲେଜରେ ଅଧ୍ୟାପକ ଥିବା ସମୟରେ ବିହାର ଓଡ଼ିଶା ଶିକ୍ଷା ବିଭାଗର ସହକାରୀ ନିର୍ଦ୍ଦେଶକ ଶ୍ରୀ ଶ୍ୟାମଚରଣ ତ୍ରିପାଠୀଙ୍କ କାର୍ଯ୍ୟକାଳ ମଧ୍ୟରେ ପଣ୍ଡିତ ମହୋଦୟ ରାଞ୍ଚିକୁ ସ୍ଥାନାନ୍ତରିତ ହେଲେ । ଏହା ତାଙ୍କ ପକ୍ଷରେ ଅସୁବିଧାଜନକ ହେଲେ ମଧ୍ୟ ସେ କର୍ତ୍ତବ୍ୟାନୁରୋଧରେ ଏହାକୁ ବରଣ କରିଥିଲେ । ଏହାପରେ କାଳକ୍ରମେ ସେ ସମ୍ବଲପୁର ଜିଲ୍ଲା ସ୍କୁଲକୁ ଏବଂ ପରେ ରେଭେନ୍‌ସା କଲେଜକୁ ବଦଳି ହେଲେ । କର୍ମମୁଖର ଜୀବନର ଶେଷାଂଶ ଏହି କଲେଜରେ ଅତିବାହିତ କରି ଅବସର ଗ୍ରହଣ କଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଯେତେବେଳେ ଦର୍ଶନରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିଲା ସେ ସେଥିରେ ମୁଖ୍ୟ ଅଧ୍ୟାପକ ଭାବରେ କିଛି ସମୟ ଅଧ୍ୟାପନା କଲେ । ପରେ ବାଣୀବିହାରକୁ ଏହି ବିଭାଗ ସ୍ଥାନାନ୍ତରିତ ହୁଅନ୍ତେ ସେ ଅଧ୍ୟାପନା କାର୍ଯ୍ୟରୁ ବିରତ ହେଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ମଧ୍ୟ ସେ ଏମ୍.ଏ. ଓଡ଼ିଆ ପ୍ରଭୃତି ପରୀକ୍ଷାରେ ପ୍ରାଶ୍ନିକ ଓ ପରୀକ୍ଷକ ଭାବରେ ନିଯୁକ୍ତ ହୋଇ ଉକ୍ତ କାର୍ଯ୍ୟ ସମ୍ପାଦନ କରିଥିଲେ । ପରିଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପରମ ସନ୍ନ୍ୟାସୀ ପୂଜ୍ୟ ବିଶ୍ୱନାଥ ବାବାଙ୍କର 'ଅଲେଖ ପରଂବ୍ରହ୍ମ ଦର୍ଶନମ୍' ନାମକ ବିଶାଳ ଗ୍ରନ୍ଥର ନିରୀକ୍ଷକ ଭାବରେ ନିଯୁକ୍ତ ହୋଇଥିଲେ ଓ ଉକ୍ତ ଗ୍ରନ୍ଥର ପ୍ରାକ୍-କଥନ ଲେଖିବାକୁ ଅନୁରୁଦ୍ଧ ହୋଇ ସ୍ୱକର୍ତ୍ତବ୍ୟ ଦୃଢ଼ରୂପେ ସମ୍ପାଦନ କରିଥିଲେ । ଯେତେ ଦାୟିତ୍ୱ ସେ ଗ୍ରହଣ କରିଥିଲେ ତାହା କେବଳ କର୍ତ୍ତବ୍ୟବୋଧ ଦୃଷ୍ଟିରୁ କରିଥିଲେ । ଅର୍ଥ ଲାଭ ଦୃଷ୍ଟିରୁ ନୁହେଁ ।

ଅଧ୍ୟାପକ ପଣ୍ଡିତଙ୍କର ସଂସ୍କୃତ ଭାଷାରେ ଗଭୀର ପ୍ରବେଶ ଥିଲା । ସଂସ୍କୃତ ଦର୍ଶନ ଗ୍ରନ୍ଥାବଳୀ ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । କୌଣସି ସ୍ଥଳରେ ସ୍ୱଳ୍ପସନ୍ଦେହର ଅବକାଶ ଘଟିଲେ ସେ ସଂସ୍କୃତ ସାହିତ୍ୟ ଓ କୋଷଗ୍ରନ୍ଥ ଦେଖି ସ୍ଥିର-ସିଦ୍ଧାନ୍ତରେ ଉପନୀତ ହେଉଥିଲେ ।

ସେ ବହୁ ଛାତ୍ର, ଶିକ୍ଷକ ଏବଂ ପଣ୍ଡିତମାନଙ୍କୁ ମୁକ୍ତ ହସ୍ତରେ ସାହାଯ୍ୟ କରିଛନ୍ତି । ତାଙ୍କର ଅତିଥି ସତ୍କାର ଚିରସ୍ମରଣୀୟ ।

ତୃତୀୟଭାଗରେ ବିଭକ୍ତ ପ୍ରବନ୍ଧ ପ୍ରକାଶ, ସ୍ୱପ୍ନତତ୍ତ୍ୱ, ବିବର୍ତ୍ତନବାଦ ଓ କ୍ଷୁଦ୍ର କବିତାବଳୀ ପ୍ରଭୃତି ଓଡ଼ିଆ ସାହିତ୍ୟକୁ ତାଙ୍କର ଅମର ଦାନ ।

---

# ଗୁରୁ ଗରିମା

ଶ୍ରୀ ଶ୍ୟାମସୁନ୍ଦର ମିଶ୍ର

ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତି ମୋର ଗୁରୁ । ମୋର ମନେହୁଏ ତାଙ୍କର ଆକସ୍ମିକ ବିୟୋଗରେ ଦୁନିଆରେ ଯାହା କିଛି ଉନ୍ନତ ଏବଂ ମହତ୍ତ୍ୱ ତାହା ସହିତ ଆମର ଏକ ସମ୍ପର୍କ ଛିଣ୍ଡିଗଲା । ସତ୍ୟମୁଗ କହିଲେ ଆମ କଳ୍ପନାରେ ଯେଉଁ ସବୁ ଅବସ୍ଥାର ଚିତ୍ର ଆଙ୍କି ହୋଇଯାଏ, ସ୍ୱର୍ଗୀୟ ରତ୍ନାକର ବାବୁ ଥିଲେ ତାର ଏକ ଜୀବନ୍ତ ବିଗ୍ରହ । ଏହା ଗୁରୁଙ୍କର ଯଶୋଗାନ କରିବାକୁ ଯାଇ ସ୍ତବର ଅତିରଞ୍ଜିତ ବର୍ଣ୍ଣନା ନୁହେଁ । ପ୍ରତି କ୍ଷେତ୍ରରେ ଏହାର ପ୍ରମାଣ ରହିଛି । ଏଭଳି କେତୋଟି ପ୍ରମାଣ ପରିବେଷଣ କରିବା ଏହି ଲେଖାଟିର ଲକ୍ଷ ।

୧୯୨୭ ମସିହାର କଥା । ମୁଁ ସଦ୍ୟ ମାଟ୍ରିକୁ୍ୟଲେସନ ପରୀକ୍ଷା ପାସ୍ କରି ରେଭେନ୍‌ସା କଲେଜରେ ନାଁ ଲେଖାଇ ଥାଏ । କଲେଜ ଛାତ୍ରାବାସରେ ରହିଲା ଭଳି ମୋର ଆର୍ଥିକ ସମ୍ବଳ ନଥିଲା । ତେଣୁ ମୁଁ ବାଖରାବାଦର ଗୋଟିଏ ମେସରେ ରହି ଚାଲି ଚାଲି ପ୍ରତିଦିନ କଲେଜକୁ ଯାଉଥିଲି । ଦିନେ ରେଭେନ୍‌ସା କଲେଜ ହତା ପାଖରେ ପହଞ୍ଚିଲା ବେଳକୁ ରତ୍ନାକର ବାବୁଙ୍କ ସହିତ ଦେଖାହେଲା । ସେ ମୋତେ ଅନେକ ପ୍ରଶ୍ନ ପଚାରି ମୁଁ କେଉଁ ସ୍କୁଲରୁ ପାସ୍ କରିଛି, କେଉଁଠାରେ ରହି ପାଠ ପଢ଼ୁଛି ଇତ୍ୟାଦି ସବୁକଥା ବୁଝିନେଲେ । ମୁଁ ବାଖରାବାଦରୁ ଚାଲି ଚାଲି ଆସୁଛି ଶୁଣି ତାଙ୍କ ମନରେ ଗଭୀର ଦୁଃଖ ହେଲା । ସେ କହିଲେ "ତୁମ ଭଳି ଅନେକ ପିଲା କେତେ ଦୂର ବାଟରୁ ପଢ଼ିବାକୁ ଆସୁଛନ୍ତି । ତୁମେମାନେ ସବୁ ରାଣୀହାଟରେ ଘରଟିଏ ଭଡ଼ାନେଇ ମେସ୍‌ଟିଏ କରନ୍ତ କି, ତୁମମାନଙ୍କୁ ଏତେଦୂର ଚାଲିବାକୁ ପଡ଼ନ୍ତା ନାହିଁ । ମୁଁ ପଚିଶ ଘର ଭଡ଼ା ଟଙ୍କା ଦିଅନ୍ତି । କିନ୍ତୁ ରାଣୀହାଟରେ ତୁମେମାନେ ରହିଲେ ବଡ଼ ସୁବିଧା ହୁଅନ୍ତା ।" ବହୁତ ବିଶିଷ୍ଟ ଲୋକ ତଥା ଅଧ୍ୟାପକଙ୍କ ସହିତ ସାକ୍ଷାତ୍ କରିଥିଲି, କିନ୍ତୁ ଏହି ଧରଣର ମାନବିକତା ଧର୍ମିତା କାହା ପାଖରେ ଦେଖି ନଥିଲି । ରତ୍ନାକର ବାବୁଙ୍କଠାରୁ ମୋର ଭୟ ଛାଡ଼ିଗଲା । ମୁଁ ଯେତେବେଳେ ସମୟ ଓ ସୁବିଧା ପାଉଥିଲି, ସେହି

ମହାପୁରୁଷଙ୍କ ସାନ୍ନିଧ ଲାଭ କରି ପରମ ଆନନ୍ଦ ଉପଭୋଗ କରୁଥିଲି ।
ଦିନେ ସନ୍ଧ୍ୟାବେଳେ ତାଙ୍କ ବସାରେ ଯାଇ ପହଞ୍ଚିଲି । ସେ ରେଭେନ୍‌ସା
କଲେଜର ଅତି ପାଖରେ କେନାଲ କୂଳରେ ଥାଆନ୍ତି । ଦେଖିଲି ବୈଠକ
ଘରେ କେବଳ ସେ ଏକୁଟିଆ ବସି ଅତି ଉଚ୍ଚ ସ୍ୱରରେ "ଶୁଣୁଅଛ ସର୍ବେ
ଦିବସ ରଜନୀ ଜଗତର କୋଳାହଳ" ଭକ୍ତକବି ମଧୁସୂଦନଙ୍କର "ଧ୍ୱନି"
କବିତାଟି ଆବୃତ୍ତି କରୁଛନ୍ତି । ମତେ ଦେଖିବା ସଙ୍ଗେ ସଙ୍ଗେ କହିଲେ
"ମଧୁସୂଦନଙ୍କର ଭଗବତ୍ କଳ୍ପନା କି ଉଚ୍ଚ କୋଟିରେ ଏହି କବିତାଟି
ଆବୃତ୍ତି କରି ମୁଁ ସେହି କଥା ଭାବୁଥିଲି ।" ତା ପରେ ଗୋଟିଏ ଗୃହର
ପିଲା ଆସିଲା କିଛି ଜଳଖିଆ ନେଇ, ସେ ପଚାରିଲେ "କିରେ ତୋ ନାଁ
କ'ଣ", ସେ କହିଲା "ଅନାମ ।" ଏହା ଶୁଣି ରତ୍ନାକର ବାବୁଙ୍କର ହସ
କହିଲେ ନସରେ । ସେ ହସି ହସି ଏକେରକମ ବେଦମ୍ । ଅତି ଅମାୟିକ
ଲୋକ ନହେଲେ ଏଭଳି ହସିବା ଅସମ୍ଭବ ।

ରତ୍ନାକର ବାବୁଙ୍କ ସମ୍ବନ୍ଧରେ ମୋର ସର୍ବଶ୍ରେଷ୍ଠ ଅନୁଭୂତିର
ଅବକାଶ ଘଟିଥିଲା ଯେତେବେଳେ ସେ 'ଉତ୍କଳ ସାହିତ୍ୟ ସମାଜ'ର
ସଭାପତି ଥିଲେ । ମୁଁ ଜାଣେ ସେ ସଭାପତି ପଦପାଇଁ ଆଗ୍ରହୀ ନ ଥିଲେ ।
ସ୍ୱର୍ଗୀୟ ବିଚ୍ଛନ୍ଦଚରଣ ପଟ୍ଟନାୟକ ଦିନେ ମୋ ଘରକୁ ଆସି "ଉତ୍କଳ
ସାହିତ୍ୟ ସମାଜ"ର ଦୁର୍ଦ୍ଦଶା ମୋ ଆଗରେ ବର୍ଣ୍ଣନା କଲେ ଏବଂ କହିଲେ
"ଚାଲ ଆମେ ଦୁହେଁ ରତ୍ନାକର ବାବୁଙ୍କ ପାଖକୁ ଯାଇ ତାଙ୍କୁ "ଉତ୍କଳ
ସାହିତ୍ୟ ସମାଜ"ର ସଭାପତି ହେବାପାଇଁ ଅନୁରୋଧ କରିବା" । ମୁଁ
ବିଚ୍ଛନ୍ଦ ବାବୁଙ୍କ ସହ ରତ୍ନାକର ବାବୁଙ୍କ ଘରକୁ ଆସିଲି । ସେତେବେଳେ
ପ୍ରଫେସରପଡ଼ାରେ ତାଙ୍କ ଘର ତିଆରି ସରିଥାଏ । ଅନେକ ଅନୁରୋଧ
ପରେ ରତ୍ନାକର ବାବୁ "ଉତ୍କଳ ସାହିତ୍ୟ ସମାଜ"ର ସଭାପତି
ହେବାପାଇଁ ରାଜି ହେଲେ । ସମାଜର ସାଧାରଣ ସମ୍ପାଦକ ହେଲେ
ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ଏବଂ ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକ
ହେଲେ ସହକାରୀ ସମ୍ପାଦକ । ଥରେ "ଉତ୍କଳ ସାହିତ୍ୟ ସମାଜ"
ତରଫରୁ ପ୍ରସ୍ତାବ ହେଲା ଯେ ସମାଜ ଅନୁକୂଲ୍ୟରେ ଏକ ସାହିତ୍ୟ ସପ୍ତାହ
ପାଳିତ ହେବ ଏବଂ ଏହାର ଦୈନନ୍ଦିନ କାରବାର ବୁଝିବା ଦାୟିତ୍ୱ
ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଉପରେ ନ୍ୟସ୍ତ ରହିବ । ବିଚ୍ଛନ୍ଦ
ବାବୁ ଖୁବ୍ ଜବରଦସ୍ତ ଲୋକ । ସେ ଯଦି କୌଣସି କାରଣ ହେତୁ କଦା

ଉପରେ ବଗଡ଼ନ୍ତି, ତାହାହେଲେ ତାଙ୍କୁ ଚଳଚଳାନ୍ତି ନ କରି ଛାଡ଼ନ୍ତି ନାହିଁ । ସାହିତ୍ୟ ସପ୍ତାହ ତ ମହା ସମାରୋହରେ ସମ୍ପନ୍ନ ପାଳିତ ହେଲା । କିନ୍ତୁ ଏଥିରେ ସାହିତ୍ୟ ସମାଜର ସଭାପତି ବା ସାଧାରଣ ସମ୍ପାଦକ କାହାକୁ ହେଲେ କିଛି କହିବା ପାଇଁ ସୁବିଧା ଦିଆଗଲା ନାହିଁ । ସମସ୍ତଙ୍କ ଅପେକ୍ଷା ବିସ୍ମୟର କଥା ସାହିତ୍ୟ ସପ୍ତାହରେ ଯୋଗ ଦେବାପାଇଁ "ସମାଜ" ସମ୍ପାଦକଙ୍କୁ ନିମନ୍ତ୍ରଣ କରାଯାଇଥିଲା, କିନ୍ତୁ ତାଙ୍କ କାଗଜରେ ସେ "ସାହିତ୍ୟ ସପ୍ତାହ"ର ଯେଉଁ ବିବରଣୀ ଦେଲେ, ସେଥିରେ ବିରକ୍ତ ହୋଇ ବିଚ୍ଛନ୍ଦ ବାବୁ 'ସମାଜ' ସମ୍ପାଦକଙ୍କୁ ଦିଆଯାଇଥିବା ନିମନ୍ତ୍ରଣପତ୍ର ରଦ୍ଦ କରିଦେଲେ । ସମାଜ ସମ୍ପାଦକ ରତ୍ନାକର ବାବୁଙ୍କଠାରୁ ଜାଣିବାକୁ ଚାହିଁଲେ ଯେ ନିମନ୍ତ୍ରଣପତ୍ର ତାଙ୍କ ଜ୍ଞାତସାରରେ ରଦ୍ଦ ହୋଇଛି ନା ନାହିଁ । ଏହିସବୁ ଘଟଣାରେ ରତ୍ନାକର ବାବୁ ଅତିଶୟ ବିବ୍ରତ ହୋଇ ନିଜେ ସାହିତ୍ୟ ସମାଜ ଭବନକୁ ଆସି ବିଚ୍ଛନ୍ଦ ବାବୁଙ୍କୁ ଅନୁରୋଧ କଲେ ଯେ ସେ ଏକା ଏକା କାମ ନ କରି ସାଧାରଣ ସମ୍ପାଦକ ତଥା ସଭାପତିଙ୍କ ସହ ଆଲୋଚନା କରି ସାହିତ୍ୟ ସପ୍ତାହର କାର୍ଯ୍ୟ ନିର୍ଘଣ୍ଟ ଠିକ କରନ୍ତୁ । ଏଥିରେ ବିଚ୍ଛନ୍ଦ ବାବୁ ରାଗି ଅଗ୍ନିଶର୍ମା । ସେ କହିଲେ, ମୋ ଉପରେ ଯେତେବେଳେ ସମସ୍ତ ଦାୟିତ୍ୱ ଦିଆଯାଇଛି, ମୁଁ କାହିଁକି କାହାର ଅନୁମତି ନେବାପାଇଁ ଯିବି ? ଏହି ବାଦ ବିସମ୍ବାଦ ଏତେଦୂର ଗଲା ଯେ ରତ୍ନାକର ବାବୁ ଶେଷରେ ସଭାପତି ପଦରୁ ଇସ୍ତଫା ଦେଲେ । ଏହି ଇସ୍ତଫାପତ୍ର ଗୃହୀତ ହେବ ନା ନାହିଁ ଏହା ବିଚାର କରିବାଲାଗି "ଉତ୍କଳ ସାହିତ୍ୟ ସମାଜ"ର ଯେତେବେଳେ ଏକ ସାଧାରଣ ଅଧିବେଶନ ଆହୂତ ହେଲା, ସେତେବେଳେ ଦେଖାଗଲା ଯେ ବିଚ୍ଛନ୍ଦ ବାବୁଙ୍କର ଅତି ବଳିଷ୍ଠ ସମର୍ଥକ ହେଲେ ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜ । ସେ ପୂରାପୂରି ବିଚ୍ଛନ୍ଦ ବାବୁଙ୍କର ପକ୍ଷ ସମର୍ଥନ କଲେ ଏବଂ ଯାହା ଫଳରେ କି ସେହିଥର "ଉତ୍କଳ ସାହିତ୍ୟ ସମାଜ"ରେ ବିଚ୍ଛନ୍ଦ ବାବୁଙ୍କ ଦଳର ବିଜୟ ହେଲା । କିନ୍ତୁ ଏଭଳି ଘଟଣା ତ କିଛି ନୂଆ କଥା ନୁହେଁ । ଏଥିରେ ବିଶେଷତ୍ୱ କଣ ଅଛି ? ଏହି ପ୍ରଶ୍ନ ଅନେକଙ୍କ ମନରେ ଉଙ୍କି ମାରି ପାରେ । ପ୍ରକୃତରେ ଘଟଣାଟିରେ କିଛି ବିଶେଷତ୍ୱ ନାହିଁ । ଅଛି ରତ୍ନାକର ବାବୁଙ୍କ ପରବର୍ତ୍ତୀ କାର୍ଯ୍ୟକଳାପରେ । କାଳକ୍ରମେ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ବିୟୋଗ ହେଲା ଅତି ସନ୍ଦେହଜନକ ପରିସ୍ଥିତିରେ । ସାହିତ୍ୟିକ ହିସାବରେ ସ୍ୱର୍ଗୀୟ ପ୍ରହରାଜଙ୍କ ପ୍ରତିପତ୍ତି ଅତୁଳନୀୟ । ଏଣୁ ବହୁ ଜାଗାରେ ବହୁ ଅନୁଷ୍ଠାନ

ତରଫରୁ ତାଙ୍କର ସ୍ମୃତି ତର୍ପଣ ହେଲା । ରତ୍ନାକର ବାବୁ କିନ୍ତୁ ସ୍ୱର୍ଗୀୟ ପ୍ରହରାଜଙ୍କର କେବଳ ସାମୟିକ ସ୍ମୃତି ତର୍ପଣ କରି କ୍ଷାନ୍ତ ହେଲେନାହିଁ । ସେ ସ୍ୱର୍ଗୀୟ ପ୍ରହରାଜଙ୍କ ଜନ୍ମ ସ୍ଥାନରେ "ଗୋପାଳ ସ୍ମୃତି ବିଦ୍ୟାପୀଠ" ନାମକ ଏକ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା ଦିଗରେ ମନପ୍ରାଣ ଢାଳିଦେଲେ । ଏହା କିଛି ସହଜ କଥା ନୁହେଁ । ଏହା ଯେଉଁମାନେ କୌଣସି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାର ଉଦ୍ୟମ କରୁଛନ୍ତି, ସେମାନେ ଅଙ୍ଗେ ଅଙ୍ଗେ ଲଭୁଛନ୍ତି । ଦିନେ ସକାଳେ ଦେଖିଲି ରତ୍ନାକର ବାବୁ ମୋର କାଳୀଗଳି ବସାରେ ହାଜର । ମୁଁ କହିଲି "ସାର୍, ଆପଣ ନିଜେ କାହିଁକି ଆସିଲେ, ଡକାଇଥିଲେ ତ ମୁଁ ଯାଇଥାନ୍ତି ।" କହିଲେ "ନା, ତୁମ ପାଖରେ, ମୋର ଏକ ବିଶେଷ ଅନୁରୋଧ । ଏହି 'ଗୋପାଳ ସ୍ମୃତି ବିଦ୍ୟାପୀଠ'ଟି କୌଣସିମତେ ସ୍ଥାୟୀ ଭାବରେ ବଞ୍ଚାଇବାକୁ ହେବ, ଏଥିସକାଶେ ଆବଶ୍ୟକ ଅର୍ଥ ସଂଗ୍ରହ ଲାଗି ତୁମେ ଓ ମୁଁ ଟିକିଏ ବୁଲି ଯିବା । ହି କଟକରେ ମଧ୍ୟ ଯଥାସାଧ୍ୟ ଅର୍ଥ ସଂଗ୍ରହ କରିବା" । ମୁଁ କହିଲି, "ସାର୍, ଉତ୍କଳ ସାହିତ୍ୟ ସମାଜର ସେହି ସାଧାରଣ ଅଧିବେଶନ କଥା କ'ଣ ଆପଣ ପୂରାପୂରି ପାଶୋରି ହେଲେଣି ?" ସେ କହିଲେ, "ଛି, କୌଣସି ଲୋକର ବିୟୋଗ ପରେ ଆମେ ତା'ର ଗୁଣ କୀର୍ତ୍ତନ ହିଁ କରିବା ଉଚିତ । ତା'ର ଯାହା ଦୋଷଥାଏ, ତାହା ତା'ର ମରଦେହ ସହିତ ଚାଲିଯାଏ ।" ମୁଁ ମୁଗ୍‌ଧ ହୋଇ ଶୁଣୁଥିଲି । ଏହି ଆମର ରତ୍ନାକର ବାବୁ । ଆଜି ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏହି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ମୁଁ ନିଜକୁ ଧନ୍ୟ ମନେ କରୁଛି ।

---

# ସ୍ମରଣିକା

ପଣ୍ଡିତ **ବାସୁଦେବ ମହାପାତ୍ର**

ଏ ପରପ୍ରତ୍ୟୟ-ଯୁଗରେ ରତ୍ନାକରଙ୍କର ଅନନ୍ୟ-ସାଧାରଣ ଆଦର୍ଶ, ଅଗାଧ ପାଣ୍ଡିତ୍ୟ, ଆମାୟିକ ବନ୍ଧୁତା, ଅଦ୍ଭୁତ ଦାନ, ସେବାରେ ଆତ୍ମବିସ୍ମୃତି, ପଦେ ପଦେ—ସତ୍ୟର ଅବିକଳ ଅନୁସରଣ କେହି କଳ୍ପନା କରି ପାରିବେ ନାହିଁ—ବର୍ଣ୍ଣନା କରି କହିବା ସହଜ ସାଧ୍ୟ ନୁହେଁ । ୧୯୧୦ ଜୁଲାଇ ପହିଲି ଦିନ ମୁଁ ପୁଷ୍ପଗିରି ସ୍କୁଲ ଛାଡ଼ିବାରୁ ପ୍ୟାରୀମୋହନ ଏକାଡେ଼ମୀର ଦଶମ ଶ୍ରେଣୀରେ ନାମ ଲେଖାଇଲି । ଅନ୍ତରରେ ସ୍ୱରାଜ୍ୟଲାଭର ଦୃଢ଼ ବିଶ୍ୱାସ, ହସ ହସ ମୁଖରେ ବେପରୁଆ ଭାବ ।

ନିମାଇଁଚରଣ ଚଉପଟ୍ଟନାୟକ ସ୍କୁଲର ହେଡ୍‌ମାଷ୍ଟର-କି ସୁନ୍ଦର ଚେହେରା, କି ଆମାୟିକ ହସ ହସ ମୁଖ । ପ୍ରଥମ ଦର୍ଶନରେ ସେ ମନପ୍ରାଣ କିଣିନେଲେ । କହିଲେ, ପୁଷ୍ପଗିରି ସ୍କୁଲର ତୁମେ ପ୍ରଥମ ଛାତ୍ର, ଦେଖିବା ଏ ସ୍କୁଲରେ କ'ଣ ହେଉଛ । ମୁଁ ଦଶମ ଶ୍ରେଣୀରେ ଯାଇ ପିଲାମାନଙ୍କ ସଙ୍ଗେ ବସିଲି । ଋଷି ପ୍ରତିମ ପଣ୍ଡିତ ନାରାୟଣ ଦାସ ସଂସ୍କୃତ ପଢ଼ାଉଥିଲେ । ସଂସ୍କୃତ ବ୍ୟାକରଣମୂଳକ ଶିକ୍ଷା ଦେଖି ମୁଁ ପ୍ରଥମରୁ ନିଜକୁ ବଡ଼ ଦୁର୍ବଳ ମନେକଲି । ବୁଝିଲି, ଏକାଦଶ ଶ୍ରେଣୀର ରତ୍ନାକର ପରି ସ୍କୁଲର ସର୍ବଶ୍ରେଷ୍ଠ ଛାତ୍ର । ପରଦିନ ତାଙ୍କୁ ସାକ୍ଷାତ କରି ବନ୍ଧୁତା ସ୍ଥାପନ କରିବାକୁ ନିଶ୍ଚୟ କଲି । ଅଗ୍ରଜ ହରିହରାଙ୍କ ପରିଚୟ ପ୍ୟାରୀମୋହନଙ୍କ ତ୍ୟାଗପୂତ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱ ବିଷୟ ଶୁଣି ବସାରେ ଗୋଟିଏ ପ୍ୟାରୀମୋହନ ଶୀର୍ଷକ ପଦ୍ୟ ଲେଖି ପକାଇଥିଲି ।

ଦ୍ୱିତୀୟ ଦିନ ଏକାଦଶ ଶ୍ରେଣୀର ଗୋଟିଏ ବେଞ୍ଚ ପ୍ରାନ୍ତରେ ବସି କିଛି ଚିନ୍ତା କରୁଥିବାର ଦେଖି ମୁଁ ରତ୍ନାକରଙ୍କ ପାଖକୁ ଯାଇ କାନ୍ଧକୁ ଧରି ହଲାଇ ଦେଲି । ସେ ଅବାକ୍ ହୋଇ ଠିଆ ହୋଇଗଲେ । କହିଲେ, କି ବାସୁଦେବ ବାବୁ ଯେ । କହିଲି, ଆଜି ଖେଳଛୁଟି ସମୟରେ ହେଡ୍‌ମାଷ୍ଟରଙ୍କ ଅଫିସକୁ ଯାଇ ଏ ବର୍ଷ ପ୍ୟାରୀମୋହନଙ୍କର

ବାର୍ଷିକୋତ୍ସବ କରିବାପାଇଁ ତାଙ୍କୁ ଟିକିଏ ମତାଇ କହିବା । ମୁଁ କବିତାଟି ଦେଖାଇଲି—ସେ ଅତି ଆନନ୍ଦରେ ନାଚିଗଲେ । କହିଲେ ମୁଁ ସେ ଟିଏ କବିତା ଛୁଟି ପୂର୍ବରୁ ଲେଖିଥିବି । ଦୁଇଟିଯାକ କବିତା ଧରି ହେଡ଼୍‌ମାଷ୍ଟରଙ୍କ ପାଖକୁ ଯିବା ।

ଛୁଟି ଘଣ୍ଟା ବାଜୁ ନ ବାଜୁଣୁ, ରତ୍ନାକର ଆମ କ୍ଲାସ ଦ୍ୱାର ସମ୍ମୁଖରେ ହାଜର । ତାଙ୍କ ପଦ୍ୟଟି ମୋ ହାତକୁ ବଢ଼ାଇ ଦେଲେ । ଦେଖିଲି କବିତାଟି ସ୍ୱଗ୍ଧରା ଛନ୍ଦରେ ଲେଖା । ସେଥିରେ କି ଅନୁପ୍ରାସ ! କି ସ୍ୱର ସନ୍ଦର୍ଭ ! ମାଟ୍ରିକ୍ ଶ୍ରେଣୀର ଛାତ୍ରଠାରେ କି ଅଗାଧ ପାଣ୍ଡିତ୍ୟ ! ପଦ୍ୟଟିର ଧୋଷା ପଦଟି ହେଉଛି :—

ସଜ୍ଜନ ସତ୍ତମ ଦୀନ ସନାତନ
ଶ୍ୟାମସୁନ୍ଦର ମୋହନ ସାଧୋ !
ହେ ସୁର ମନ୍ଦର ନିତ୍ୟ ନିବାସକ
ଦୀନ ନିରାଶ୍ରୟ ବନ୍ଧୋ !

ଜୁଲାଇ ଦୁଇ ତାରିଖ ଦିନ ମୁଁ ସ୍ପଷ୍ଟ ବୁଝି ପାରିଲି—ଏ ରତ୍ନାକର ବାଣୀଭଣ୍ଡାରର ଗୋଟିଏ ମନୋଜ୍ଞ ରତ୍ନ ହେବେ । ଶ୍ୟାମମୋହନଙ୍କ ଶ୍ରାଦ୍ଧ ସଭା ହେବ ଜୁଲାଇ ୮ ତାରିଖ, ଶନିବାର । ମୁଁ ଓ ରତ୍ନାକର ହେଡ଼୍‌ମାଷ୍ଟରଙ୍କ ଅନୁମତି ନେଇ ବାଗ୍ମୀଶ୍ରେଷ୍ଠ ବିଶ୍ୱନାଥ କରଙ୍କୁ ସଭାରେ ମୁଖ୍ୟ ହେବାପାଇଁ ଅନୁରୋଧ କରିବାକୁ ଗଲୁ । ସେ ସଙ୍ଗେ ସଙ୍ଗେ ପରମ ଆନନ୍ଦିତ ହୋଇ ରାଜିହେଲେ । ସଭା ହେଲା । ତାଙ୍କ ଓଜସ୍ୱିନୀ ଭାଷା-ଭାବମୟ ବକ୍ତୃତା ଶତପ୍ରାଣ ପ୍ରକମ୍ପିତ କରୁଥିଲା । ଶେଷରେ ଆମ ଦୁଇ ବନ୍ଧୁଙ୍କ କବିତା ତାଙ୍କ ମାସିକ ପତ୍ରିକାରେ ଛପାଇବାକୁ ନେଇ ଆନନ୍ଦରେ କହିଥିଲେ—ତୁମେ ଉତ୍କଳ ବାଣୀଭଣ୍ଡାରକୁ ଦିନେ ଶ୍ରୀବୃଦ୍ଧିମନ୍ତ କରିବ । ସେଦିନ ସଭାରେ, ଗୋଟିଏ Poor fund ଦୀନଶିକ୍ଷା-ପାଣ୍ଠି ପର ମାସଠାରୁ ଖୋଲିବାପାଇଁ ସର୍ବ ସମକ୍ଷରେ ହେଡ଼୍‌ମାଷ୍ଟର ପ୍ରକାଶ କରିଥିଲେ ।

ପରଦିନ ଶୁଣିଲି-ରତ୍ନାକର ଝାଞ୍ଜିରିମଙ୍ଗଳା ସାହିରେ ଘର ଭଡ଼ା ନେଇ କେତେଜଣ ଛାତ୍ରଙ୍କ ସହ ପରୀକ୍ଷା ପୂର୍ବରୁ କିଛି ଦିନ ରହୁଛନ୍ତି । ରବିବାର ଦିନ ମୁଁ ତାଙ୍କ ବସାରେ ଯାଇ ଯାହା ଦେଖିଲି, ସେଥିରେ

ମୋ ଆଖିରୁ ଲୁହ ଗଡ଼ିବାକୁ ଲାଗିଲା । ୧୦ ହାତ, ଲମ୍ବ ୫।୬ ହାତ ଓସାରର ଗୋଟିଏ ଭଙ୍ଗା ମାଟି ଘର—ଛପରରେ କେତେକ ସ୍ଥାନରେ ଲୁଚା ଉଡ଼ି ଯାଇଛି, କାଗଜ ପଟି ପଡ଼ିଛି-କଣରେ ଗୋଟିଏ ଚୁଲ୍ଲୀରେ ରତ୍ନାକର ୮ ଜଣ ପିଲାଙ୍କପାଇଁ ରାନ୍ଧୁଛନ୍ତି । ହାତରେ ବହି ଖଣ୍ଡେ ଧରି ପଢ଼ୁଛନ୍ତି । ମୁଁ କାନ୍ଦି କାନ୍ଦି ରତ୍ନାକର ବାବୁ ବୋଲି ଡାକ ଦେଲି । ଠିଆ ହୋଇ ପଡ଼ିଲେ । କି ବାସୁଦେବ ବାବୁ ଯେ ! କହି ମୋ ଆଡ଼କୁ ମାଡ଼ି ଆସିଲେ । ମୁଁ କୁଣ୍ଢାଇ ପକାଇ କାନ୍ଦିଲି । ସେ ବି କାନ୍ଦିଲେ । କି ମନ୍ତ୍ରରେ ଦୁଇ ପ୍ରାଣ ବାନ୍ଧି ହୋଇଗଲା !

କାଳ ବହି ଚାଲିଲା । ସେ ବୃତ୍ତିପାଇ ବିଚକ୍ଷଣ ଛାତ୍ର ହୋଇ କଲେଜରେ ପଢ଼ିଲେ । ମୁଁ ମେଡ଼ିକାଲ୍ ବୃତ୍ତି ମାସିକ ୫୧୯ ମାତ୍ର ପାଇଲି । କ୍ରମେ ବନ୍ଧୁତା ଦୃଢ଼ତର ହେଲା । ପ୍ରତିଦିନ କାଠଯୋଡ଼ି ବାଲିରେ ଦୁହିଁଙ୍କ ଭବିଷ୍ୟତ କର୍ମପନ୍ଥା ସମ୍ବନ୍ଧରେ ଆଲୋଚନା ହୋଇ ଆଗରୁ ଦୃଢ଼ ନିର୍ଣ୍ଣୟ ହୋଇଥିଲା । ସମାଜ ସେବା, ଦେଶ ସେବା ଆମ୍ଭ ଦୁହିଁଙ୍କର ହେଲା କାମ୍ୟ । ୧୯୧୩ ପୂଜା ଛୁଟିରେ ରତ୍ନାକର ଆଇ.ଏ. ପାଶ୍ କରି ବି. ଏ. ପଢ଼ୁଥାନ୍ତି । ମୁଁ ଆଇ. ଏ. ପାଇଁ ପ୍ରସ୍ତୁତ ହେଉଥାଏ । ପୂଜା ଛୁଟିରେ ଆମେ ଦୁଇବନ୍ଧୁ ପୁରୀ ଯାଇଥାଉ । ରେଲ୍‌ରେ ଯାଇ ପୁରୀ ଷ୍ଟେସନରୁ ସମୁଦ୍ର କୂଳର ବିଚିତ୍ର ଦୃଶ୍ୟ ଦେଖି ଦେଖି ସ୍ୱର୍ଗଦ୍ୱାର ବଟେ ଦେଉଳକୁ ଆସି ଜଗନ୍ନାଥ ତ୍ରିମୂର୍ତ୍ତିଙ୍କୁ ମୁଣ୍ଡି ଆମାର ମନବାଞ୍ଛା ଜଣାଇଲୁ । ପଖାଳ ଅବଢ଼ା ଓ ଡାଲିମାରେ ଆହାର ଶେଷ ହେଲା । ତା’ପରେ ବ୍ରାହ୍ମଣ ସମିତିରେ ମୋର ପରିଚିତ ଛାତ୍ରମାନଙ୍କ ସଙ୍ଗେ ସାମାନ୍ୟ ଆନନ୍ଦ ଆଳାପ କରିସାରି, ଗୋପବନ୍ଧୁ ସେଠାରେ ମାଧବ ବାବୁଙ୍କ ଘରେ ରହି ଓକିଲାତି କରୁଛନ୍ତି ଜାଣି ଆମେ ଦୁଇବନ୍ଧୁ ତାଙ୍କ ବସାକୁ ଗଲୁ । ବହିଃପ୍ରାଙ୍ଗଣରେ ଦୁଇଝିଅ ଅନାବନା ଶାଗ ତୋଳୁଥିଲେ । ଗୋପବନ୍ଧୁଙ୍କ ଦୁଇକନ୍ୟା—ରଙ୍ଗ ଓ କେଶି । ଦୁହେଁ ଘର ଭିତରକୁ ପଶି ଗୋପବନ୍ଧୁଙ୍କୁ ନମସ୍କାର କରି ପାଖରେ ବସିଗଲୁ । ଗୋପବନ୍ଧୁ ପଚାରିଲେ—କୁଆଡ଼େ ଆସିଗଲ ବାବୁମାନେ ! ପୂଜା ଛୁଟିତ, ଟିକିଏ ବୁଲି ଆସିବା ଇଚ୍ଛା । ନାହିଁ ? ତା’ପରେ ଆମେ କଟକ ଫେରିଲୁ ।

୧୯୧୬ ବୈଶାଖ (ମେ) ମାସରେ ଦୁଇ ସ୍ମୃତିବନ ହେବ । ଗୋପବନ୍ଧୁ କାନ୍ଦ କାନ୍ଦ ଅବସ୍ଥ—ମୁଁ ଯାଇ ଦେଖିଲି ଚକ୍ଷୁରେ ଅବିରତ ଲୋତକଧାର ।

ମୁଁ—ଆପଣଙ୍କର ଏ କି ରଙ୍ଗ !

ଆପଣେ—ରଙ୍ଗକଥା ପଚାରୁଛ ? ରଙ୍ଗ ଅଛିଆଡ଼ ରହିଲ—ମୁଁ ଆତ୍ମହତ୍ୟା କରିବି ।

ମୁଁ—କାହିଁକି ? ଆପଣ ଯୋଗାଡ଼ କରୁନାହାନ୍ତି । ଏହି ଦଶପନ୍ଦରଦିନରେ ବିବାହ ହେବ ।

ଆପଣେ—ମୁଁ ମନେ ମନେ ରତ୍ନାକରକୁ ବାଛିଥିଲି ଯେ, ରତ୍ନାକର ନାସ୍ତି କରିଦେଲା । ତାର ଗୁରୁ ହରିହର, ନୀଳକଣ୍ଠ, ଗୋଦାବରୀଶ କେହି ତାର ଯୁକ୍ତି କାଟି ପାରିଲେ ନାହିଁ । ସେ ସମାନ ସମାନରେ ବିଭାହେବେ; ଠିକଏ ଧନୀ ଘରେ ବି ନୁହେଁ । ପଢ଼ା ନ ସରିଲେ ବିଭା ନିସିଦ୍ଧ । ସେ ବ୍ରହ୍ମଚାରୀ ଇତ୍ୟାଦି ଇତ୍ୟାଦି ।

ମୁଁ—ଏଇ କଥା ତ ! ଏଥିରେ ହତାଶ ହେବାର କଣ ଅଛି ? ମୁଁ ଏଇ କଟକ ଯାଉଛି, ତାକୁ ଧରି ୮।୧୦ ଜଣ ବନ୍ଧୁ ବାନ୍ଧବଙ୍କୁ ସାଙ୍ଗରେ ନେଇ କାଲି ଦିନ ଗୃହେଠାରେ ଆସି ପହଞ୍ଚିବି; ଆପଣ ଭୋଜନ-ପାନର ଠିକଏ ସୁବ୍ୟବସ୍ଥା କରିଥାନ୍ତୁ ଜାତି ତୁଳନା ଯେପରି ନ ଉଠେ ।

ଗୋପବନ୍ଧୁ—ମୂଳରୁ ମାଇପ ନାହିଁ, ପୁଅନା ଗୋପାଳିଆ ! ହଉ ଯା । ମୁଁ କଟକ ଯାଇ ରତ୍ନାକରଙ୍କୁ ଭେଟିଲି ।

ରତ୍ନାକର—କି ବାହୁବାବୁ ଯେ ! କୁଆଡ଼େ ଏ ଖରାରେ ?

ମୁଁ—ତୁମର ପାଖକୁ ତୁମର ବାଳୀ ଗୃହିଣୀ ଆଉ କେବେ ଯିବ ? ତୁମେ କଭଳି ଗୋପବନ୍ଧୁଙ୍କୁ ଧନୀ ବୋଲି କହୁଛ ? ଯେ ଧନକୁ ଧୂଳିଭଳି ଫିଙ୍ଗିଦେଇ ଦାରିଦ୍ର୍ୟ ବରଣ କରେ ସେ କଣ ଧନୀ ? ଗୋପବନ୍ଧୁ ଧନୀ ନୁହନ୍ତି—ଘାନତମ । ଆଉ ତୁମର ବ୍ରହ୍ମଚର୍ଯ୍ୟ ଅବସ୍ଥା ଭଙ୍ଗକରି ବିବାହ କରିବ ନାହିଁ । ଏ କଣ ଇତର ଜାତିର ଯୁବତୀ ବିବାହ ! ତୁମେ ଯାଇ କନ୍ୟାପତ୍ନୀ ଉପଭୋଗ କରିବାକୁ ମୂର୍ଖ ମଧ୍ୟ କହିବ ନାହିଁ । ତୁମେ ଦୁଇ ଆଖିରେ ରଙ୍ଗକୁ ଅନାବନା ଶାଗ ତୋଳିବାର ଦେଖିଥିଲ । କି ସୁନ୍ଦର ପିଲା । ସେ ହସ ହସ ମୁହଁ, ଧୀର ବିନମ୍ର

ବ୍ୟବହାର । ଏ ସଂପର୍କ ଆଉ ମିଳିବ ନାହିଁ—ତୁମେ ଏ ପ୍ରସଙ୍ଗ ଭାଙ୍ଗି ପାରିବ ନାହିଁ ।

ରତ୍ନାକର ହାରିବ ସ୍ୱୀକାର କରି ଗ୍ରାମକୁ ଲୋକ ପଠାଇଦେଲେ । ପରଦିନ ୯ଟା ଗାଡ଼ିରେ ଯାଇ ସଦଳବଳରେ ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇଲୁ । ସ୍କୁଲ ପିଲା କେତେକ ଆସିଥିଲେ । ହରିବୋଲ ପଡ଼ିଗଲା । ନିବନ୍ଧ ଶେଷ ହେଲା । ଯୌତୁକର ପ୍ରଶ୍ନ ନାହିଁ ।

ରତ୍ନାକର—କନ୍ୟାପକ୍ଷ ଅଧଲାଟିଏ ଦେବନାହିଁ, ମନେରଖ ବାପୁବାବୁ ! ତୁମେ ସବୁ ବିବାହ ସମସ୍ତ ଖର୍ଚ୍ଚ ଚଳାଇବ ପରା ସରିଲେ ମୁଁ ଶୁଝିବ ।

ରତ୍ନାକର କଲିକତାରୁ ବାଠହସ ଦିନ ସନ୍ଧ୍ୟାରେ ଆସି ପହଞ୍ଚିବାକୁ କହି ଚାଲିଗଲେ । ବିବାହର ପୂର୍ବଦିନ ଆମେ ବରଯାତ୍ରୀ ଦଶ ବାରଜଣ ବାହାରି ପଡ଼ିଲୁ । ଯାନବାହାନ, ପାଲିଙ୍କି ସଜ ରତ୍ନାକର ମନା କରିଦେଲେ ! ସମସ୍ତେ ଚାଲି ଚାଲି ଆସି ଗାଡ଼ି ଧଇଲୁ ।

ବିବାହ ବେଦିରେ ବର ମୁକୁଟ ପିନ୍ଧିବାର କଥା । କିନ୍ତୁ ରତ୍ନାକର ରାଜି ହେଲେ ନାହିଁ । ବେଦିର ଚାରି ଖୁଣ୍ଟପାଖେ ଚାରିଜଣ ନିଶଧାରୀ ସଂସ୍କାରକ, ମହାରଥୀ ନୀଳକଣ୍ଠ, କବି ଗୋଦାବରୀ, ସମ୍ପାଦକ ଶଶୀରଥେ, ଜଗବନ୍ଧୁ ସିଂହ କେହି ବୁଝାଇ ପାରିଲେ ନାହିଁ । ଆଖିରେ ଲୁହଧାର—ରତ୍ନାକର କହିଲେ ମୋର ଏହି ପଠନ୍ଦଶାରେ, ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଗାର୍ହସ୍ଥ୍ୟ-ଜଞ୍ଜାଳର ଗୁରୁଦବୋଝ, ମର୍ମ ବେଦନା ଟେରି ଛାତି ଫାଟି ଯାଉଛି । ମୋର କି ବିଜୟୋର୍ଜ୍ଜନ ହେଲା ଯେ ମୁକୁଟ ମଣ୍ଡିତ ହେବି ? ମୁଁ ପାରିବ ନାହିଁ ।

ମଣିଙ୍କର ମୁଣ୍ଡ ଘୂରିଗଲା—ଧାର ଧାର ଲୁହ ଗଡ଼ିଲା । ମୋତେ ଚଳିବ ହେଲା, ମୁଁ ଆସିଲି । ହସି ହସି କହିଲି, "ରତ୍ନାକର ବାବୁ ତୁମର ସଂସ୍କାର ପ୍ରିୟତାକୁ ମୁଁ ସବୁବେଳେ ସମର୍ଥନ, ସମ୍ମାନ କରେ । କିନ୍ତୁ ଆଜି ଯେ ତୁମର ଅତି ବାଳଚପଳତା ଦେଖୁଛି—ନହସି ରହି ପାରୁନାହିଁ । ସମାଜ-ସେବା କରିବା ପରି ଆମର ପଣ' ? ସେ ସେବା ପଦ ପ୍ରହାରରେ କି କରିଯାଏ ? ଏଇ ମୁକୁଟ ଆମର ସମାଜ । ଘୃଣା କରନାହିଁ, ପଦ ପ୍ରହାର କରନାହିଁ-ଭକ୍ତିପୂତ ହୃଦୟରେ ମସ୍ତକନତ-କରି ଧାରଣ କର ।

ତତ୍‌କ୍ଷଣାତ୍ ରତ୍ନାକର ମୁକୁଟ ପିନ୍ଧିଲେ । ଚତୁର୍ଦ୍ଦିଗରେ କରତାଳି, ଆନନ୍ଦ ଧ୍ୱନି ଉଚ୍ଛୁଳି ଉଠିଲା । ବେଦିକୃତ୍ୟ ସବଧିରେ ଶେଷ ହେଲା ।

ପରେ ଗୋପବନ୍ଧୁ ମୋତେ ଡାକି କହିଲେ, "ରଙ୍ଗ ତ ୨।୩ମାସ ହେବ ଗୃହଯୋଗ୍ୟା ହେଲାଣି । ଦିନ ଗୋଟିଏ ସ୍ଥିର କରି, ତାକୁ ନେଇ ତୁମେ ନିଜେ ଛାଡ଼ି ଦେଇ ଆସ ।"

ରତ୍ନାକରଙ୍କ ସଙ୍ଗେ ଶ୍ୱଶୁର ଘର ପଡ଼ି ଦିନ ସ୍ଥିର ହେଲା । ଯେଉଁଦିନ ବୋହୂ ଘରମାଡ଼େ—ସେଦିନ ଦୁର୍ବାକ୍ଷତ କର୍ମ ହୁଏ । ସେହି କଥା ରକ୍ଷାକରି ରଙ୍ଗ ଖଣ୍ଡଗଡ଼ରେ ବସି ଗୃହରୁ ଷ୍ଟେସନକୁ ବାହାରିଲା । ବୋଉଡ଼ି ନାହିଁ କାନ୍ଦିବାକୁ—ସାନ ଭଉଣୀ କେତକୀ ଠିକଏ ଠିକଏ ସୁଁସାଁ ହୋଇ କାନ୍ଦୁଥିଲା । ଦୁଇଟି ବେତାରେ ପିତାଙ୍କ ଦାନ ସଜାଡ଼ି ମୁଣ୍ଡାଇ ଯାଉଥିଲେ ଦୁଇଜଣ ଭଲେଇ । ଝିଅ ଜୋଇଁଙ୍କପାଇଁ ଦୁଇସେଟ ବାସନ; କିଛି ଲୁଗାପଟା, ପଟେବାପଣ । ଗରିବ ଘରେ ମଧ୍ୟ ତାଠାରୁ ଅଧିକ ଦିଆହୁଏ । ଏଇ ଉପଢ଼ୌକନକୁ ଅତିମାତ୍ରାରେ ବଢ଼ାଇ ପତ୍ରପ୍ରଚାରକମାନେ କିପରି ଲେଖି ପାରିଲେ ଯେ ମଣିଙ୍କ ବିପୁଳ ଦାନ ୨୦ଖଣ୍ଡ ଶଗଡ଼ରେ ଲଦା ହୋଇ ସୁଆଣ୍ଡୁରୁ ଯାଇଥିଲା ! ପଣ୍ଡିଙ୍କ ଗୃହଘରେ ରଖିବାକୁ ସ୍ଥାନ ମିଳିଲା ନାହିଁ ! କି ଅପପ୍ରଚାର, ମିଥ୍ୟାଚାର ।

ଦେହତ୍ୟାଗ ପୂର୍ବରୁ ପରେ ରତ୍ନାକର ଅନ୍ତରର ଗୁରୁ ବେଦନା ପ୍ରକାଶ କରି କହିଥିଲେ, "ଦେଖୁଛନ୍ତି ତ ବାସୁବାବୁ ! ଅଧଲାଟିଏ ମୁଁ ଝିଅସାରରେ ଗ୍ରହଣ ନ କଲେ ମଧ୍ୟ, ସାହିତ୍ୟିକମାନେ କିପରି ମିଥ୍ୟାପୂର୍ଣ୍ଣ ଉପନ୍ୟାସ ରଚନା କରି ଜାଣନ୍ତି ।"

ଗତବର୍ଷ ଫାଲ୍‌ଗୁନ ମାସ ମଧ୍ୟଭାଗରେ ମୁଁ କଣ୍ଟାପଡ଼ା ବ୍ଲକର **B. D. O.** ରମାକାନ୍ତଙ୍କ ପାଖରେ ଥାଏ—ଦିନେ ସ୍ୱପ୍ନରେ ରତ୍ନାକରଙ୍କର କଙ୍କାଳମାତ୍ର ଶରୀର ଆଖି ଆଗରେ ନାଚିଗଲା । ମୁଁ ପରଦିନ ସକାଳ ୧୦ ଘଣ୍ଟା ପୂର୍ବରୁ ପୁଅ ସଙ୍ଗେ ରତ୍ନାକରଙ୍କୁ ଦେଖିବାକୁ ଯାଇଥିଲି । କି କରୁଣ ହୃଦୟସ୍ପର୍ଶୀ ସେ ମିଳନ ! ସ୍ୱପ୍ନର ସେହି କଙ୍କାଳମାତ୍ର ଶରୀର । ରତ୍ନାକର ଦର୍ଶନ ମାତ୍ରକେ କାନ୍ଦି ପକାଇଲେ । ମୁଁ ତାଙ୍କୁ ଛାତିରେ ଭିଡ଼ି ଧରିଲି । କିଛିଦିନ ପରେ ରତ୍ନାକରଙ୍କ ନିର୍ବାଣ

ଜାଣିପାରି ଥକ୍କା ହୋଇ ବସିଗଲି । ଅଶ୍ରୁଧାର ବାରଣ ମାନିଲା ନାହିଁ । ପୂଜା ଆସି ଦିନକ ପରେ ରତ୍ନାକରଙ୍କର ଶେଷ ସ୍ୱହସ୍ତ ଲିଖିତ ପତ୍ର ପାଇଲି । ପତ୍ରଟି ବ୍ରହ୍ମପୁର ଦେଇ ପୂଜା ଯାଇଥିଲା । ସେଇ ପତ୍ରଟି ହେଉଛି—

ବାସୁଦେବ ବାବୁ,… … …

ମୋ କୁଟୀରରେ ଦୋଳପୂର୍ଣ୍ଣିମା ଦିନ ଗୋଟିଏ ବନ୍ଧୁ ମିଳନ ହେବ—ଆପଣ ନିଶ୍ଚୟ ଆସିବେ । ମୁଁ ସ୍ପଷ୍ଟ ବୁଝିପାରିଲି—ସେ ପବିତ୍ର ପ୍ରାଣରେ ମୋର ଦର୍ଶନ ପାଇଁ ଗଭୀର ବ୍ୟାକୁଳତା ଦେଖା ଦେଇଥିଲା—ଲୋକନାଥ ଦାସ ତାଙ୍କର ଜଣେ ସହପାଠୀ ବନ୍ଧୁଙ୍କୁ ଆଗରୁ ନିମନ୍ତ୍ରଣ କରି ରିକ୍ସାରେ ଫେରୁଥିଲେ । ହଠାତ୍ ଟଳି ପଡ଼ିଲେ—ସବୁ ଶେଷ । କି ସୁଖ ମୃତ୍ୟୁ ! କେତେଜଣଙ୍କ ଭାଗ୍ୟରେ ଏପରି ମୃତ୍ୟୁ ଘଟିପାରେ ! ଯାଅ ରତ୍ନାକର, ବୈକୁଣ୍ଠରେ ପତିପତ୍ନୀଙ୍କର ଶୁଭ ମିଳନ ହେଉ; ଦୀର୍ଘ ବିରହ ପରେ ଉଭୟଙ୍କ ପ୍ରାଣରେ ସାନ୍ତ୍ୱନା ଦିଅ ।

ଯାଅ ବିଚିତ୍ର-କର୍ମୀ, ଅନୁରୋଧ, ସେପାରିରୁ ପୁଣି ଶୀଘ୍ର ଦିନ ସ୍ଥିର କରି ନିମନ୍ତ୍ରଣ ପଠାଅ । ଅପେକ୍ଷାରେ ଗୃହିଁ ରହିଲି … … …

---

# "ମୋ ଧୂଳିଆ ଆସୁ ।"

**ଶ୍ରୀ ନନ୍ଦକିଶୋର ରଥ**

ଆସି ବର୍ଷ ପୂରିଗଲା । କାଲି ପରି ଲାଗୁଛି । ରତ୍ନାକର ବାବୁ ଅସୁସ୍ଥ ଅଛନ୍ତି ଶୁଣି ଦେଖିବାକୁ ଗଲି । ଘର ଭିତରେ ପଶି ଶଯ୍ୟା ପାଖକୁ ଯାଇ ନମସ୍କାର କଲି । ମୋ ମୁହଁକୁ ଚାହିଁଦେଇ ଗୋଟାଏ ସ୍ମିତ ଆନନ୍ଦର ପୁଲକ ତାଙ୍କ ମୁହଁରେ ଖେଳିଗଲା । କହିଲେ—"ନନ୍ଦକିଶୋର ! ସେଇ ଚୌକିରେ ବସ ।" ମୁଁ ବସିଲି । କଥା ଆରମ୍ଭ ହେଲା —

"ବୁଝିଲ, ନନ୍ଦକିଶୋର ! କାମ ସରି ଆସିଲାଣି । ଶୁଖିଲା ବରଡ଼ା, ଟିକିଏ ପବନ ଦେଲେ ଦୋହଲି ଖଡ଼ ଖଡ଼ ହୋଇ ଯାଉଛି । ଖସି ପଡ଼ିଲା କି ସତେ ! କୋଉଠି ଗୋଟାଏ କଣରେ ଖିଏ ଲାଗିଛି । ତାଳ ବରଡ଼ା ଘଣ ଟାଆଁସା ନା, କେତେବେଳେ ଗୋଟାଏ ଝଙ୍କା ପବନ ଆସିଲେ ହୁଏତ ବଞ୍ଚିବ ନାହିଁ । ସବୁ ଚାଲିବେ କାଳ ବଳେ ।

ମୁଁ ଯୋଗ କଲି—"ଯଶଃ ରହିବ ମହୀତଳେ ।" କହି ଦେଲି ସିନା, ତାଙ୍କ କଥାରେ ପଦ ଯୋଖିବାକୁ ଡରମାଡ଼େ ।

ତେଣୁ ଆରମ୍ଭ ହେଲା,—"କି ଯଶ ଅଛି ଯେ ମହୀତଳେ ରହିବ ? ଗୋଟିଏ ହିସାବରୁ କଥାଟା ଠିକ୍ ମଧ୍ୟ । ମହୀ ଉପରେ କିଛି ରହିବ ନାହିଁ । ଏକବାରେ ତଳକୁ, ଭିତରକୁ, ଚାଲିଯିବ । ତାହାହିଁ ଉଚିତ" ।

ମୁଁ କହିଲି—"ଏ ପ୍ରକାର ଭାବନା ସବୁ ଆଜି କାହିଁକି ହେଉଛି ? ତାଙ୍କ ପାଟିରୁ ବାହାରିଲା—

"ହେବାର ସମୟ ଆସିଗଲା । ଗୋଟାଏ କଥା ଆଜି ମୋର ବେଶୀ ମନେ ପଡ଼ୁଛି । ଆହା ! ମୋ ଘଇନା ଥାଆନ୍ତେ କି, କି ଦୁଃଖ ସେ ନ ସହିଛନ୍ତି ମୋ ଲାଗି ! ଅତି ଦରିଦ୍ର ଅବସ୍ଥା ତ ଥାଏ ଆମର । ମୁଁ ପାଠ ପଢ଼ିବି, ଘର ନାହିଁ, ଦ୍ୱାର ନାହିଁ, ଟଣ୍ଡିଆ ଗୃଳ ଟଣ୍ଡେ । ଡିବଣଟିଏ ରଖି ପଢ଼ିବାକୁ କଇସିନ ବା ଏତେ ଆସିବ କୁଆଡ଼ୁ ?

ଗାଁ ଗୁହାଳୀ ପାଠ ସାରି ଅପରପ୍ରାଇମେରି ସ୍କୁଲରେ ପଢ଼ି ବୃତ୍ତି ପାଇଲ । ସେଠୁଁ କଟକ ଭାବରେ ଯାଇ ସିଦ୍ଧେଶ୍ୱରପୁର ମାଇନର ସ୍କୁଲରେ ପଢ଼ିଲ ସେ ଏକ ରହସ୍ୟମୟ ସ୍ମୃତି । ସେ ସ୍କୁଲର ପଣ୍ଡିତ ମହାଶୟଙ୍କର ମୋଠାରେ ଭାରି ଶ୍ରଦ୍ଧା ମୁଁ ଭଲ ପଢ଼େଁ ବୋଲି । ଦେହ ନୁଖୁରା, ମାଲପା ହାତ ଦ୍ଵଚନ୍ଦ୍ର ବାଜେ । ଲୁଗା ଯାହା ପିନ୍ଧେ—ଖଣ୍ଡ ଖଣ୍ଡେ ଯେ ଆଣ୍ଠୁ ଲୁଚେନାହିଁ । କାନ୍ଧରେ କଣିଆ ଗାମୁଛା ଖଣ୍ଡେ, କେତେବେଳେ ବା ଖାଲି ଦେହ, ଧୂସର ଦିଶେ । ପଣ୍ଡିତେ ନାଁ ଦେଇଥାନ୍ତି "ଧୂଳିଆ" ।

ଅଙ୍କ ପଚାରିପିବ, କେହି ନ କରି ପାରିଲେ ଧୂଳିଆ କରିବ । ସାହିତ୍ୟ ପଚାରିପିବ, ଧୂଳିଆ ଯାହା ବ୍ୟାଖ୍ୟା କରିବ ସବୁ ଠିକ୍ । 'ଧୂଳିଆ କେବେ ଭୁଲ କରିବ ନାହିଁ' ଏ ବିଶ୍ୱାସ ପଣ୍ଡିତଙ୍କର ପୂରା-ମାତ୍ରାରେ ଥାଏ । ବୃତ୍ତି ପରୀକ୍ଷାକୁ ଯିବାଲାଗି ଶିକ୍ଷକମାନେ ଲାଗିପଡ଼ି ମତେ ପ୍ରସ୍ତୁତ କରାଇଲେ । ଯେ ଯେ ପାଠ ପଢ଼ା ! କି ଭାବରେ ତାକୁ ପ୍ରକାଶ କରିବ ? ପରୀକ୍ଷା ଦେବାଲାଗି ମନୋନୀତ ହେଲି । ପଣ୍ଡିତଙ୍କର ପୂର୍ଣ୍ଣ ବିଶ୍ୱାସ ମୁଁ ନିଶ୍ଚୟ ବୃତ୍ତି ପାଇବ । ପରୀକ୍ଷା ଦିନ ଆସିଲା । କଟକ ଆସିଲି ପରୀକ୍ଷା ଦେବାକୁ । ପଣ୍ଡିତେ ସଙ୍ଗରେ ଥାନ୍ତି । ଦିନକୁ ଦିନ ପରୀକ୍ଷା ଚାଲିଲା । ମୁଁ ଭଲ ଉତ୍ତର କରୁଥାଏଁ । ପରୀକ୍ଷା ହଲରୁ ଆସିଲେ ପଣ୍ଡିତେ ପଚାରି ବୁଝନ୍ତି । ତାଙ୍କ ମନ ମାନେ । ଏହାପରେ ଗୋଟିକ ପରେ ଗୋଟିଏ ପରୀ ପରୀକ୍ଷା ସରି ଶେଷ ଦିନକୁ ଥାଏ Map Pointing ବା ମାନଚିତ୍ର ପ୍ରଦର୍ଶନ ।"

ଏଇଠି ମତେ ପଚାରିଲେ । "ତୁମ ବେଳକୁ ନିଶ୍ଚୟ Map Pointing ଥିବ ?" (ମୁଁ ବୁଦ୍ଧି ପରୀକ୍ଷା ଦେଇ ବୃତ୍ତି ପାଇଥିଲି ବୋଲି ସେ ଜାଣିଥାନ୍ତି ) ମୁଁ ହଁ କହିଲି । ପୁଣି କଥାର ସ୍ରୋତ ଚାଲିଲା । କେତେ ହସ, କେତେ କାନ୍ଦ ତା' ଭିତରେ ହୋଇ ଯାଉଥାଏ । ପଣ୍ଡିତଙ୍କର ସ୍ନେହ ଓ ପାଠରେ ନିଜର କୃତି ବର୍ଣ୍ଣନାରେ ହସ ଯେତିକେ ହେଉଥାଏ, ସେ ପଣ୍ଡିତେ ବର୍ତ୍ତମାନ ସ୍ୱର୍ଗରେ, ତାଙ୍କର ସେ ସ୍ନେହର ପରୀନ୍ତର କାହିଁ ବୋଲି କହି ଆଖିରୁ ଲୁହ ମଧ୍ୟ ବହି ଯାଉଥାଏ ।

ମୁଁ ନୀରବ ଶ୍ରୋତା, କଥା ଓ କାର୍ଯ୍ୟର ସମ୍ବନ୍ଧର ମାଧୁରୀ ଉପଭୋଗ କରୁଥାଏ ଯେପରି ।

ତା'ପରେ ଆସିଲା Map Pointing ପରୀକ୍ଷାର ବର୍ଣ୍ଣନା ।

"ଗୋଟିଏ ଘରେ ପୃଥିବୀଠାରୁ ଅମ୍ବର କରି ବିଭିନ୍ନ ମହାଦେଶମାନଙ୍କର ପ୍ରାକୃତିକ ଓ ରାଜନୈତିକ—ମାନଚିତ୍ରଗୁଡ଼ିକ ସହିତ ଭାରତବର୍ଷ ମାନଚିତ୍ର ଟଙ୍ଗା ହୋଇଥାଏ । ପରୀକ୍ଷକ ପରଦାର ବାହାରେ ବସିଥାନ୍ତି । ପରୀକ୍ଷାର୍ଥୀମାନଙ୍କୁ ଗୋଟି ଗୋଟି କରି ଡକା ଯାଉଥାଏ । ସ୍ଥାନ ତାଲିକା ପରୀକ୍ଷକଙ୍କ ପାଖରେ ଥାଏ । ସେ ପରୀକ୍ଷାର୍ଥୀକୁ ବାଡ଼ିଟି ଦେଇ ସବୁପାକ ମାନଚିତ୍ର ଥରେ ଭଲକରି ଦେଖି ଆସିବାଲାଗି କହନ୍ତି । ତା'ପରେ ଗୋଟିକ ପରେ ଗୋଟିଏ ସ୍ଥାନର ନାମ ଡାକନ୍ତି ଓ ପରୀକ୍ଷାର୍ଥୀ ବିଭିନ୍ନ ମାନଚିତ୍ରରୁ ସେହି ସେହି ସ୍ଥାନମାନ ଦେଖାଏ ।

ଏହିପରି ଜଣକର ସରିଲେ ତାକୁ ସେହି ଘରର ଗୋଟିଏ ପାଖରେ ସ୍ଥିର ହୋଇ ବସିବାକୁ ନିର୍ଦ୍ଦେଶ ଦେଇ ଅନ୍ୟ ପରୀକ୍ଷାର୍ଥୀକୁ ଡାକନ୍ତି । ସବୁ ପରୀକ୍ଷାର୍ଥୀ ପରୀକ୍ଷା ଦେଇ ନ ସାରିବା ପର୍ଯ୍ୟନ୍ତ କାହାରିକୁ ବାହାରକୁ ଛଡ଼ା ଯାଏ ନାହିଁ ।

ଶିକ୍ଷକମାନେ ଦୂରରେ ବସି ତାଙ୍କ ପିଲାଏ କଣ କରୁଛନ୍ତି ଲକ୍ଷ୍ୟ କରୁଥାନ୍ତି । ଦୁଇଟି ସ୍ଥାନ କେହି ଦେଖାଇ ପାରିଲେ ନାହିଁ । ହେବାଶେଷକୁ ଥାଏ ମୁଁ । ପଣ୍ଡିତ ମହାଶୟ ପରୀକ୍ଷା ହଲ ପିଣ୍ଡାରେ ବସି ଉତ୍କଣ୍ଠା ଭାବରେ ବିଫଳ କାମ-ପରୀକ୍ଷାର୍ଥୀମାନଙ୍କର-ଗୁରୁ ଅନ୍ୟ ପଣ୍ଡିତମାନଙ୍କୁ କହୁଥାନ୍ତି—"ରହ, ମୋ ଧୂଳିଆ ଆସୁ !"

ମୋ କାନରେ ସେ ସ୍ୱର ଦୂରରୁ ବାଜି ଯାଉଥାଏ । ମୋ ଛାତି ଖାଲି ପଡ଼ୁଥାଏ, ଉଠୁଥାଏ । କାଳେ ନ ପାରିବି ? ତେବେ, ଆତ୍ମବିଶ୍ୱାସ ହରାଇ ନ ଥାଏ ।

ମୋ ନାଁ ଡକରା ହେଲା । ମୁଁ ସନ୍ତର୍ପଣରେ ଭିତରକୁ ପ୍ରବେଶ କଲି । ଏ ପ୍ରକାର ପରୀକ୍ଷାରେ ସବଶେଷ ପରୀକ୍ଷାର୍ଥୀର ଅବସ୍ଥା ବଡ଼ କରୁଣ ମନେହୁଏ । ଅପେକ୍ଷା କରି କରି ଧୈର୍ଯ୍ୟ ରଖି ହୁଏ ନାହିଁ । ମୋର ସେ ଦିନର ସେ ଅବସ୍ଥା ଏବେ ବି ମନେ ପଡ଼ୁଛି ।

ପରୀକ୍ଷକ ମୋ ହାତକୁ ବାଡ଼ିଟି ବଢ଼େଇଦେଲେ । ମତେ ସବୁ ମାନଚିତ୍ରଟିକ ଦେଖି ଆସିବାକୁ ସମୟ ଦେଲେ । ମୁଁ କେଉଁ ମାନଚିତ୍ର କେଉଁଠି ଟଙ୍ଗା ହୋଇଛି ଦେଖି ହୁଁ ବୋଲି କହିଲାରୁ ପ୍ରଶ୍ନ ପଚରା ଆରମ୍ଭ କରାଗଲା । ପ୍ରଥମଟି କାନ୍ଥ ଏ ମୁଣ୍ଡରେ ଟଙ୍ଗା ହୋଇଥିବା ଅଷ୍ଟ୍ରେଲିଆ ମାନଚିତ୍ରରୁ ଓ ଦ୍ୱିତୀୟଟି କାନ୍ଥ ଅରମୁଣ୍ଡରେ ଟଙ୍ଗା ହୋଇଥିବା ଉତ୍ତର ଆମେରିକା ମାନଚିତ୍ରରୁ । ଏହାପରେ ସମସ୍ତ ଘରଟାଯାକ ଏ ପାଖ ସେ ପାଖ ବୁଲି ମାନଚିତ୍ରମାନଙ୍କରୁ ସ୍ଥାନଗୁଡ଼ିକ ଦେଖାଇବାକୁ ପଡ଼ୁଥାଏ । ଗୋଟିକ ପରେ ଗୋଟିଏ ଦେଖେଇ ଦେଖେଇକା ଯେତେବେଳେ ସବୁଯାକ ଠିକ୍ କରି ଦେଖାଇ ପାରିଲି, ପରୀକ୍ଷକ ସମ୍ଭାଳି ନ ପାରି 'ସାବସ୍' କହିଦେଲେ ।

ପଣ୍ଡିତେ ମୁଣ୍ଡରେ ଚଦର ଖଣ୍ଡେ ଘୋଡ଼େଇ ହୋଇ ପିଣ୍ଡାରେ ବସିଥିଲେ । ଯିମିତି ଦେଖିଲେ ମୁଁ ସବୁଟିକ ଠିକ୍ ଦେଖାଇ ପାରିଲି, ପିଣ୍ଡା ଉପରୁ ତଳକୁ ଡେଇଁପଡ଼ି ମୁଣ୍ଡରୁ ଚଦର କାଢ଼ି ଚୋକା ପରି ଘୂରେଇ ଘୂରେଇକା ସେ ପଡ଼ିଆଟାଯାକ ବହେ ନାଚିଗଲେ । ପାଟିରୁ ବାହାରୁଥାଏ—"ସାବାସ୍ ମୋ ଧୂଳିଆ", "ମୋ ଧୂଳିଆ ସାବାସ୍" ।

ତା ପରେ ମୁଁ ଓ ଅନ୍ୟ ପରୀକ୍ଷାର୍ଥୀମାନେ ପରୀକ୍ଷା ହଲରୁ ବାହାରକୁ ଆସିଲୁଁ । ମତେ କୋଳକରି ଧରି କେତେ ଆନନ୍ଦ ପଣ୍ଡିତଙ୍କର । ସେ ସ୍ନେହ, ସେ ଆନ୍ତରିକତା, ସେ ନିଷ୍ଠାର ପଟାନ୍ତର ନାହିଁ । "ନାହିଁ; ନାହିଁ ।"

ତା ପରେ ସ୍କୁଲ୍ ପରବର୍ତ୍ତୀ ପାଠ ପଢ଼ାର ବର୍ଣ୍ଣନା ଓ ଅନ୍ୟ କଥା—ପି. ଏମ୍. ଏକାଡ଼େମିରେ ପଢ଼ିବା—ସଂସ୍କୃତରେ ବ୍ୟୁତ୍ପତ୍ତି—ଶ୍ଳୋକ ଆବୃତ୍ତି ଓ ଆଲୋଚନା—ବୈକୁଣ୍ଠ ବାବୁଙ୍କର ସଂସ୍କୃତ ପଢ଼ିବା-ଲାଗି ପରାମର୍ଶ— ସ୍ୱଳ୍ପ ଦରମାରେ ହେଉ ପଛେ ଚାକିରି କରି କରଜ ସୁଝିବାର ଇଚ୍ଛା— ବୈକୁଣ୍ଠ ବାବୁଙ୍କ ସାହାଯ୍ୟ—କଲିକତାରେ ପାଠ ପଢ଼ା—ବିବାହ—ଉତ୍କଳମଣି ଗୋପବନ୍ଧୁଙ୍କୁ ଉତ୍ତର ଦେବାରେ ତାଙ୍କର କାନ୍ଦ ଓ ତାଙ୍କ କାନ୍ଦ ସହିତ ନିଜ କାନ୍ଦ ମିଶି ବିବାହରେ ସମ୍ମତି—ଜଗନ୍ନାଥ ମନ୍ଦିରରେ ଦେବ ଦେବୀଙ୍କ ଦର୍ଶନ ଲକ୍ଷ୍ମୀଙ୍କ ମନ୍ଦିରରେ ବସିବାର ପରମ୍ପରାରେ କ୍ଷୋଭ ଇତ୍ୟାଦି । ଜୀବନଗୋଟାକର ଇତିହାସ । ମୁଁ ମନ୍ତ୍ରମୁଗ୍ଧ ପରି ଶୁଣୁଥାଏ ।—

"ବୁଝିଲ, ନନ୍ଦକିଶୋର ! ଲକ୍ଷ୍ମୀ ହେଲେ ଧନ ଓ ପ୍ରାଚୁର୍ଯ୍ୟର ପ୍ରତୀକ । ପ୍ରାଚୁର୍ଯ୍ୟର ଆଳସ୍ୟ ସହିତ ଚିର ସମ୍ବନ୍ଧ । ସେଇଥିଲାଗି ବୋଧହୁଏ ଲକ୍ଷ୍ମୀଙ୍କ ଦର୍ଶନ ପରେ ତାଙ୍କ ଜଗମୋହନରେ ଟିକିଏ ବସିବାର ପରମ୍ପରା ଅଛି । ମନ୍ଦିର ଭିତରେ ଅନ୍ୟ କୌଣସିଠାରେ ବସିବା ରୀତି ପ୍ରଚଳିତ ନାହିଁ । ଲକ୍ଷ୍ମୀ ଦୟା କଲେ ଆଳସ୍ୟ ଆସିଲା ।"

ମୁଁ କହିଲି, "ହୁଏତ ଅନ୍ୟ ଅର୍ଥ ହୋଇପାରେ ଯେ—ଲକ୍ଷ୍ମୀଙ୍କ ପାଖରେ ଧନ ପ୍ରାର୍ଥନା କରି ଲାଭ କଲାପରେ କାଳେ ଲୋକ ଆଳସ୍ୟ-ପରବଶ ହେବ ସେଥିଲାଗି ଆଳସ୍ୟର ଗୋଟାଏ ଅଭିନୟ କରାଇ ଲକ୍ଷ୍ମୀ ଲୋକଙ୍କୁ ଚେତନା ଦିଅନ୍ତି ଯେ—ଏଠି ଆଳସ୍ୟର ସ୍ଥାନ ନାହିଁ, ଉଠ, ଆଗକୁ ଅନେକ କାର୍ଯ୍ୟ କରିବାର ଅଛି । ତେଣୁ ସେଠୁଁ ଉଠି ଆଗକୁ ଯାଇ ଜଗନ୍ନାଥ ଦର୍ଶନ ଶେଷରେ କରିବାକୁ ହୁଏ । ଜଗନ୍ନାଥ କର୍ମର ପ୍ରତୀକ । ଅବଶ୍ୟ ସ୍ଥବିର ହେବା ପର୍ଯ୍ୟନ୍ତ କର୍ମ କରିଯାଅ ବୋଲି ତ୍ରିମୂର୍ତ୍ତିଙ୍କର ବୋଧହୁଏ ସ୍ପଷ୍ଟ ପ୍ରେରଣା । ଭାବୁକ, ଦାର୍ଶନିକ ଓ ପଣ୍ଡିତମାନେ ବହୁ ଭାବରେ ଜଗନ୍ନାଥ ବିଗ୍ରହଙ୍କୁ ବ୍ୟାଖ୍ୟା କରି ପାରନ୍ତି । ମୁଁ ଗୋଟାଏ ସିଧା କଥା କହୁଛି ।"

ଗୋଟାଏ ହସର ଢେଉ ଖେଳିଗଲା । କିଛିଣାଟାଯାକ ଉପରେ ଦେହ ଓ ଅବସ୍ଥାମାନେ ଚର୍ଚ୍ଚା କଲେ ପରସ୍ପର ।

ସନ୍ଧ୍ୟା ହୋଇ ଆସିଲା । ମୁଁ ବିଦାୟ ନେବାକୁ ପ୍ରସ୍ତାବ କଲି ହଠାତ୍ କଥା ଜୁଆରରେ ଭଟ୍ଟା ପଡ଼ିଗଲା କି ? ତା ପରେ—

"ହଁ, ନନ୍ଦକିଶୋର ! ଆସ । ବହୁତ ସମୟ ଆଜି ତୁମର ନଷ୍ଟ କଲି । ମତେ କ୍ଷମା କରିବ ।"

କିଛି ମୁଁ କହିବି ଏ କଥାର ଉତ୍ତରରେ ! କେବଳ ଏତିକି କହିଲି—"ସମୟ ନଷ୍ଟ ହେଲନାହିଁ ଯେ, ବରଂ ଗୋଟିଏ ବୈଚିତ୍ର୍ୟମୟ ମହାଜୀବନର ପ୍ରବାହ ସହିତ ଆତ୍ମ ବିସ୍ମୃତ ହୋଇ ପ୍ରବାହିତ ହେବାର ସୁଯୋଗରୁ ବଞ୍ଚିତ ହେଲି । ଆଜି ଯାଉଛି, ପୁଣି ଆସିବି ।"

ଏତିକି କହି ବିଦାୟ ନେଲି । ତାର ୬।୭ ଦିନ ପରେ ଶୁଣିଲି ରତ୍ନାକର ବାବୁ ଅଧିକ ଅସୁସ୍ଥ ଓ ସଂଜ୍ଞାହୀନ । ପ୍ରବଳ ଝଞ୍ଜା ଆସିଗଲା ।

ଟାଆଁସା ବରଡ଼ାରେ ଖିଅ ଛୁଡ଼ଗଲା । ରତ୍ନାକର ବାବୁ ତାଙ୍କର ଆତ୍ମୀୟମାନଙ୍କୁ ଓ ମୋ ଭଳି ବହୁ ଲୋକଙ୍କୁ ଶୋକ ସାଗରରେ ଭସାଇ ଦେଇ ସ୍ୱର୍ଗତ ହେଲେ ।

ଉପରେ ଯାହା କୁହାଗଲା ସେ ସବୁ କେବଳ ତାଙ୍କ ଜୀବନଗାଥାର ଉପର ଧୂଳିଆ ପରସ୍ତର ଗୋଟାଏ ଝାପ୍‌ସା ଦୃଶ୍ୟ ମାତ୍ର । ରତ୍ନାକର ବାବୁଙ୍କୁ ମନେ ପକାଇବାକୁ ହେଲେ ତାଙ୍କ ନିଜସ୍ୱ ଭିତର ଗୁଣାବଳୀର ଆଲୋଚନା ଆବଶ୍ୟକ । ତାଙ୍କ ଜୀବନ ଗୋଟିଏ ମହନୀୟ ଆଦର୍ଶ ଜୀବନ ।

"ଶିଳାରେ ଘଷିଲେ ଚନ୍ଦନ, ସୁବାସ କରେ ବିତରଣ
କାଞ୍ଚନ ଅଗ୍ନି ପରୀକ୍ଷାରେ, ଝଟକେ ତେଜ ସେ ପ୍ରକାରେ—

ପୁଣ୍ୟଶ୍ଳୋକ, ଋଷି ପ୍ରାଣ ମଧୁସୂଦନଙ୍କର ଏ ଉକ୍ତି ମାନ ରତ୍ନାକର ବାବୁଙ୍କ ଭଳି ମହତ୍ ଗୁଣ ସମ୍ପନ୍ନ ବ୍ୟକ୍ତିଙ୍କଠାରେ ହିଁ ପ୍ରଯୋଜ୍ୟ । ତାଙ୍କ ଗୁଣାବଳୀ ଯେତେ ଚର୍ଚ୍ଚା କରିବ ତାହା ସେତେ ତେଜରେ ଝଟକିବ ।

ଗୋଟିଏ ଦିନର ଘଟଣା । ମୁଁ ରତ୍ନାକର ବାବୁଙ୍କ ସହିତ ଅଧିକ—ହୁଏତ ଆଦୌ—ପରିଚିତ ହୋଇ ନ ଥାଏ ସେତେବେଳେ ।

କଲେଜରେ I.A. ପ୍ରଥମ ବର୍ଷରେ ନାମ ଲେଖାଇ ମୋଟେ ଦୁଇଟି ଦିନ ମାତ୍ର ମୁଁ arts ପଢ଼ୁଛି । ସେଥି ମଧ୍ୟରେ ରତ୍ନାକରବାବୁଙ୍କର ଗୋଟିଏ ଲଜିକ୍ ଲେକ୍‌ଚର ଶୁଣିଥାଏ । ସଦ୍ୟ ଶାଣଦିଆ ସୁତୀକ୍ଷ୍ଣ-ଧାର ସ୍ୱରରେ—"Logic is the science of sciences and art of arts" ବର୍ତ୍ତମାନ ମଧ୍ୟ ମୋ କାନରେ ବାଜ ପାଉଛି । ତା ପରେ ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କର ସଂସ୍କୃତ କ୍ଲାସ ପଢ଼େ । କ'ଣ ଗୋଟାଏ ଧାତୁରୂପ କି ଶବ୍ଦରୂପ ପଚାରିଲେ ଯେ ମୋର ଟିକେ ଭୁଲ ହୋଇଗଲା । ହାତକୁ ଟେକି, ଅବଲମ୍ବ କରି, ବୋତଲରୁ ଢାଳାଢ଼ାଳି କରିବାର ଅଭିନୟ ସହ ଅତି ତାଚ୍ଛଲ୍ୟ ଭାବରେ କହିଲେ—"ତୁମ ଦେଇ ସଂସ୍କୃତ ପାଠ ହେବ ନାହିଁ ! ଢାଳାଢାଳି କରିବ ସେ ଡାକ୍ତରକୁ ଯାଅ ।" ହାତଟା ଆରପାଖ ଲାବୋରେଟରି ଆଡ଼କୁ ଦେଖା ହୋଇଥାଏ ।

ସଂସ୍କୃତ କ୍ଲାସ ସରିଲା । ପିଲାଏ କ୍ଲାସରୁ ବାହାରିଲେ । ଅଧ୍ୟାପକ ସେଠିଯାଏ ଠିଆ ହୋଇଥାନ୍ତି । ମୁଁ ଇଚ୍ଛା କରି ସବୁରି ପଛରେ ବାହାରିଲି । ଅଧ୍ୟାପକଙ୍କୁ ନମସ୍କାର କରି କହିଲି, "ସାର୍ ! ଆଜି ଠାରୁ ଏ କ୍ଲାସକୁ ଆସିବି ନାହିଁ କି ପୁଣି ଥରେ ନରଃ, ନରୌ, ନରାଃ କରିବି ନାହିଁ । ଆପଣଙ୍କ ଉପଦେଶ ଅନୁସାରେ ତଳାତଳକୁ ଚାଲିଲି ।"

ଆଉ ବାବୁଙ୍କ ଭ୍ରୂକୁଟୀ-କୁଟୀଳ-ଚକ୍ଷୁଦ୍ୱୟରୁ ଯେଉଁ ଅଗ୍ନି ସ୍ଫୁଲିଙ୍ଗମାନ ଉଦ୍‌ଗୀର୍ଣ୍ଣ ହେବାକୁ ଆରମ୍ଭ କଲା ସେତେବେଳେ, ସେ ଗୁଡ଼ିକ ମୋ ଦେହରେ ପତିତ ହେବା ବେଳକୁ ମୁଁ ସେ ସ୍ଥାନରେ ନଥିଲି । ତା ପରେ ମୁଁ ଆଉ arts ପଢ଼ି ନାହିଁ । ତେଣୁ ରତ୍ନାକର ବାବୁଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାର ସୁଯୋଗ ପ୍ରଥମ କଲେଜ ଜୀବନରେ ମୋର ଆଉ ନ ଥିଲା । କେବଳ ଲୋକମୁଖରୁ ପରୋକ୍ଷ ଭାବରେ ତାଙ୍କର ଗୁଣାବଳୀ ଶୁଣି ଗୋଟାଏ ଭୟମିଶା ଭକ୍ତି ତାଙ୍କ ପ୍ରତି ଥାଏ ।

ଗୋଟିଏ ମାସର ପହିଲା । ଅଧ୍ୟାପକମାନେ ଦରମା ପାଇ ଘରକୁ ଫେରୁଥାନ୍ତି । ମୋ' କଲେଜ ପଢ଼ାର ୨ୟ ବର୍ଷ ହେବ କି କଣ ! କେତେଜଣ ସହପାଠୀ ବନ୍ଧୁ ଏକତ୍ର ହୋଇ କଲେଜ ପଡ଼ିଆ ଭିତରେ ବୁଲୁଥାଉଁ । ଆମ ପାଖ ବାଟ ଦେଇ ରତ୍ନାକର ବାବୁ ଘରମୁହାଁ ଚାଲିଥାନ୍ତି । ଆମ ଭିତରୁ ଜଣେ ଯାଇ ତାଙ୍କୁ ଦଶୋଟି ଟଙ୍କା ଧାର ମାଗିଲା ଏବେ ମଧ୍ୟ ତାଙ୍କର ଉତ୍ତର ମୋ କର୍ଣ୍ଣ କୁହରରେ ପ୍ରତିଧ୍ୱନିତ ହେଉଛି । ଖଣ୍ଡିଏ ଦଶଟଙ୍କିଆ ନୋଟ୍ ପକେଟରୁ କାଢ଼ି ହାତରେ ଧରି "ଏଇ ଦଶଟି ଟଙ୍କା ମାତ୍ର ମୋ ପାଖରେ ଅଛି ।" ଏହା କହି ତାଙ୍କ ଫାଟକ ପାଖକୁ ଚାଲିଗଲେ ପରେ ହଠାତ୍ ସେଠି ଠିଆ ହୋଇ ପଛକୁ ଚାହିଁ ପ୍ରାର୍ଥୀ ଛାତ୍ରଟିକୁ ଡାକି କହିଲେ, "ଉଦୟନାଥ ! ଆସ, ତୁମେ ଏଇ ଦଶଟଙ୍କା ନିଅ । ମୁଁ ଯେକୌଣସିଠାରୁ ଟଙ୍କା ସଂଗ୍ରହ କରିପାରିବି, ତୁମେ କରୁ ପାରିବ ନାହିଁ । ନିଅ ।

ଉଦୟନାଥ ଯେତେ ମିନତି କରି ନାହିଁ କଲେହେଁ ସେ ନ ଶୁଣି ଦଶଟଙ୍କିଆ ନୋଟ୍‌ଖଣ୍ଡି ତା ହାତକୁ ଦେଇ ଭିତରକୁ ପ୍ରବେଶ କଲେ ।

ନିଜେ ଅକଥନୀୟ ଦାରିଦ୍ର୍ୟର କଶାଘାତ ସହିବା ଅଭାବରେ ପଡ଼ିଲେ ମନୁଷ୍ୟକୁ କି କଷ୍ଟ ସହିବାକୁ ହୁଏ ଅନେକେ ନିଭେଇଥିଲେ । ତେଣୁ ଅନ୍ୟକୁ ଅଭାବଗ୍ରସ୍ତ ଦେଖିଲେ ତାଙ୍କ ଆଖିରୁ ଲୁହ ବୋହି ପଡ଼ୁ ଥିଲା ।

—

# ରତ୍ନର ଆକର

ଶ୍ରୀ ବ୍ରଜବନ୍ଧୁ ଦାସ, ଆଡ୍‌ଭୋକେଟ

ସାମାଜିକ ଓ ବ୍ୟକ୍ତିଗତ ଜୀବନରେ ଯାହାସବୁ ସଦଗୁଣ ବୋଲି ମାତବାକ୍ୟ କହେ ତାହାକୁ ରତ୍ନ ବୋଲି ବିବେଚନା କଲେ, ଅଧ୍ୟାପକ ରତ୍ନାକର ପତି ପ୍ରକୃତରେ ସେ ରତ୍ନର ଆକର ଥିଲେ ।

ମୋର ତାଙ୍କ ସଙ୍ଗେ ପ୍ରଥମ ପରିଚୟ ୧୯୦୮ ମସିହା ନଭେମ୍ବର ମାସ ୨୫ ତାରିଖ । ଏଥି ପୂର୍ବରୁ ତାଙ୍କ ନାମ ମୋ ବଡ଼ଭାଇ (ଲୋକନାଥ ଦାସ, ଆଡ୍‌ଭୋକେଟ) ଯେ କି ତାଙ୍କର କଟକ ପ୍ୟାରୀମୋହନ ଏକାଡ଼େମୀର ସହପାଠୀ ଥିଲେ, ତାଙ୍କଠାରୁ ଶୁଣିଥିଲି । ମୁଁ ପଢ଼ିଆ ଉଚ୍ଚ ପ୍ରାଥମିକ ସ୍କୁଲରୁ ବୃତ୍ତି ପରୀକ୍ଷା ଦେବାପାଇଁ କଟକ ଆସି ମୋ ଭାଇଙ୍କ ମେସରେ ରହିଥିଲି । ରତ୍ନାକରବାବୁ ସେହି ମେସ୍‌କୁ ଆସି ମୋର ପରିଚୟ ପାଇ ମୋତେ ପାନଭାଇ ଭଳି କୁଣ୍ଢେଇ ପକାଇ ମୋ ମୁଣ୍ଡକୁ ଆଉଁସି ଦେଲେ । ସେହି ମୁହୂର୍ତ୍ତରୁ ମୋର ତାଙ୍କ ପ୍ରତି ଯେଉଁ ଭକ୍ତି, ଶ୍ରଦ୍ଧା ଓ ମାନ୍ୟଭାବ ଜନ୍ମିଲା, ତାହା ମୋର ଜୀବନ ବ୍ୟାପି ରହିଗଲା । ମୁଁ ବୃତ୍ତି ପାଇ କଟକରେ ଆସି ରହିବା ପରେ ତାଙ୍କ ସଙ୍ଗେ ମୋର ସମ୍ପର୍କ ଘନିଷ୍ଠ ହେଲା । ମୋର ଅଧିକାଂଶ ସମୟ ତାଙ୍କ ସଙ୍ଗେ ଦେଖା ହୁଏ ଓ ମୁଁ ତାଙ୍କୁ ବଡ଼ଭାଇ ଜ୍ଞାନରେ ଭକ୍ତି କରେ ।

୧୯୧୦ ମସିହା ଜାନୁୟାରୀ ମାସରେ ପ୍ୟାରୀମୋହନ ଏକାଡ଼େମିର ପୁରସ୍କାର ବିତରଣ ସଭା ହୋଇଥିଲା । ଓଡ଼ିଶାର କମିସନର ମିଷ୍ଟର ଇ. ଭି. ଲେଭିଞ୍ଜ ସଭାପତି ହୋଇଥିଲେ । ମଧୁବାବୁ (ଉତ୍କଳ ଗୌରବ ମଧୁସୂଦନ ଦାସ) ଏ ସଭାକୁ ବିଶିଷ୍ଟ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ମୁଁ କୌତୁହଳ ପ୍ରିୟ ଦର୍ଶକ ଭାବେ ଉତ୍ସବରେ ଉପସ୍ଥିତ ଥିଲି । ଉତ୍ସବ ଶେଷରେ ମଧୁବାବୁ ପ୍ରଧାନ ଶିକ୍ଷକ ନିମାଇ ଚୌପଟ୍ଟନାୟକଙ୍କୁ ଡାକି କହିଲେ, "ଯେଉଁ ପିଲାଟି ଅନେକ ବିଷୟରେ ଓ ସମସ୍ତଙ୍କଠାରୁ ବେଶି ପୁରସ୍କାର ପାଇ ଅଛି ତାକୁ ଡାକିଦିଅ" । ରତ୍ନାକର ତାଙ୍କ ପାଖକୁ ଯିବାରୁ

ମଧୁବାବୁ କହିଲେ, "ରତ୍ନାକର ! ତୁମ୍ଭେ ଯେଉଁ ନାମ ପାଇଛ ତାକୁ ଲକ୍ଷ୍ୟ ରଖି ପାଠ ପଢ଼ ଓ ସଦଗୁଣ ଅର୍ଜନ କର । ଏ ଦେଶରେ ତୁମ୍ଭ ପରି ମେଧାବୀ ଛାତ୍ରମାନେ ଗୋଟିଏ ଗୋଟିଏ ରତ୍ନ ହୋଇ ଶିକ୍ଷା କ୍ଷେତ୍ରରେ ଅଗ୍ରଗାମୀ ହେବେ ଓ ତଦ୍ୱାରା ଦେଶର ଗୌରବ ବୃଦ୍ଧି ପାଇବ ।" ସେହିଦିନୁ ରତ୍ନାକରଙ୍କର ମଧୁବାବୁଙ୍କ ପ୍ରତି ଅଚଳା ଭକ୍ତି ଜାଗ୍ରତ ହେଲା ଓ ତାହା ମଧୁବାବୁ ବଞ୍ଚିଥିବା ପର୍ଯ୍ୟନ୍ତ ଲାଗି ରହିଥିଲା । ମଧୁବାବୁ ଯେଉଁବେଳେ ପରଲୋକ ପ୍ରାପ୍ତ ହେଲେ, ସେତେବେଳେ ରତ୍ନାକରବାବୁ ବଙ୍ଗ କଲେଜରେ ଅଧ୍ୟାପକ ଥିଲେ । ସେହି ସମୟରେ ରତ୍ନାକର ମଧୁବାବୁଙ୍କ ମହାପ୍ରୟାଣ ଉପଲକ୍ଷେ ଏକ ସୁନ୍ଦର କବିତା ରଚନା କରି ପଠାଇ ଥିଲେ । ତାହା ଗତ ୪।୨।୧୯୭୦ ତାରିଖର 'ସମାଜ' ପତ୍ରିକାର ଦୈନିକ ସଂଖ୍ୟାରେ ପ୍ରକାଶିତ ହୋଇ ଅଛି। ରତ୍ନାକର ଯେଉଁବେଳେ ରେଭେନ୍ସା କଲେଜରେ ପଢ଼ୁଥିଲେ, ସେତେବେଳେ ମୁଁ ସ୍କୁଲ ଛାତ୍ର ଥାଇ ବିସ୍ମୃମିତ ଭାବରେ ତାଙ୍କୁ ଭେଟୁଥିଲି ।

୧୯୧୧ ମସିହାରେ କଟକ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ କଟକ ମ୍ୟୁନିସିପାଲିଟି ପ୍ରାଙ୍ଗଣରେ ବସିଥିଲା । ସେ ତହିଁରେ ସ୍ୱେଚ୍ଛା ସେବକ ବାହିନୀର ଜଣେ ନେତା ଥିଲେ । ସେ କଲେଜରେ ପଢ଼ୁଥିବା-ବେଳେ କଟକ ଛାତ୍ର ସମାଜର ଜଣେ ଆଦର୍ଶ ସ୍ଥାନୀୟ ବ୍ୟକ୍ତି ଥିଲେ । ସ୍କୁଲ ଛାତ୍ରମାନେ ତାଙ୍କୁ ଭକ୍ତି ଓ ଆଦର କରୁଥିଲେ । ସେ ସେକାଳର ସାଂସ୍କୃତିକ ସଭା ସମିତିମାନଙ୍କରେ ଛାତ୍ରନେତା ଭାବରେ ଯୋଗ ଦେଉଥିଲେ । ମଧୁବାବୁ ଉତ୍କଳ ଯୁବସଂସଦ ନାମରେ ଏ ଅନୁଷ୍ଠାନ ସ୍ଥାପନ କରିଥିଲେ । ତାହା "Utkal Young men's association" ସେହି ଅନୁଷ୍ଠାନ ମାଧ୍ୟମରେ ମଧୁବାବୁ ଛାତ୍ରମାନଙ୍କ ମଧ୍ୟରେ ଜାତି ପ୍ରୀତି ଓ ସମାଜ ସେବା ଭାବ ଜାଗ୍ରତ କରଉଥିଲେ । ସେହି ଅନୁଷ୍ଠାନ ପରବର୍ତ୍ତୀ କାଳରେ ରେଭେନ୍ସା କଲେଜର ଏକ ସାଂସ୍କୃତିକ ଶାଖାଭୁକ୍ତ ହୋଇ "Central Young Utkal association" ନାମରେ ଅଭିହିତ ହୋଇଥିଲା । ରତ୍ନାକର ଏ ଅନୁଷ୍ଠାନର ଅନ୍ୟତମ କର୍ତ୍ତା ଥାଇ ନାନାଦି ସମାଜ ସେବା କାର୍ଯ୍ୟରେ ନିଯୁକ୍ତ ରହୁଥିଲେ । ସେ କାଳରେ କଲେଜ ହଲ ଓ ଟାଉନ ହଲରେ ଯେତେ ସଭା ସମିତି ହୁଏ ରତ୍ନାକର ସେଥିରେ ଯୋଗ ଦେଉଥିଲେ ଓ ସମୟେ ସମୟେ ବକ୍ତା ମଧ୍ୟ ହେଉଥିଲେ । ଛାତ୍ର

ସମାଜରେ ଏକ ଉନ୍ମାଦନା ଅଣାଉଥିଲେ । ରାୟବାହାଦୁର ସୁଦାମଚରଣ ନାୟକଙ୍କ ସଭାପତିତ୍ୱରେ "ଯୌତୁକ ପ୍ରଥା ନିଷେଧ" ସମ୍ବନ୍ଧରେ ଯୁବକ ଛାତ୍ରମାନଙ୍କର ଏକ ସଭା ହୋଇଥିଲା । ରତ୍ନାକର ତହିଁରେ ଏକ ମର୍ମସ୍ପର୍ଶୀ ବକ୍ତୃତା ଦେଇ ଯୁବକ ଛାତ୍ରମାନଙ୍କର ଜଣେ ପଥ ପ୍ରଦର୍ଶକ ହୋଇଥିଲେ । ୧୯୧୧ ମସିହାର କାଠଯୋଡ଼ୀ ନଦୀ ବୃଦ୍ଧି ଫଳରେ ଯେଉଁ ଭୟାବହ ଅବସ୍ଥା ଘଟିଲା ତାହା ସମ୍ପର୍କରେ ମଧୁବାବୁ ଯେଉଁ ରିଲିଫ କମିଟି ବସାଇଥିଲେ, ରତ୍ନାକର ତହିଁରେ ଏକ ବିଶିଷ୍ଟ ଅଂଶ ଗ୍ରହଣ କରିଥିଲେ । କଟକ ଟାଉନହଲରେ ମଧୁବାବୁଙ୍କ ସଭାପତିତ୍ୱରେ ଅନେକ ସଭାସମିତି ସାଂସ୍କୃତିକ ବିଷୟରେ ହୁଏ । ଏଥିରେ ରତ୍ନାକରବାବୁ ବକ୍ତୃତା ଦିଅନ୍ତି ଓ ଛାତ୍ରସମାଜ ତଦ୍ୱାରା ବିଶେଷ ଅନୁପ୍ରାଣିତ ହୁଅନ୍ତି ।

ରତ୍ନାକରବାବୁ ୧୯୧୪ରେ ବି.ଏ. ପାସ କରି କଲିକତାରେ ଏମ୍. ଏ. ପଢ଼ିବାକୁ ଗଲେ । ୧୯୧୭-୧୯୧୮ ମଧ୍ୟରେ ସେ ହିନ୍ଦୁ ସତ୍ୟବାଦୀ ସ୍କୁଲରେ ଶିକ୍ଷକତା କରିଥିଲେ ଓ ଏମ୍ ଏ. ରେ ଉତ୍ତୀର୍ଣ୍ଣ ହୋଇ କଲେଜରେ ଦର୍ଶନଶାସ୍ତ୍ର ବିଭାଗର ଅଧ୍ୟାପକ ନିଯୁକ୍ତି ପାଇଲେ, ସେତେବେଳେ ମୁଁ ବି. ଏ. ଶ୍ରେଣୀରେ ପଢ଼ୁଥିଲି ଓ ମୋର ମଧ୍ୟ ଦର୍ଶନଶାସ୍ତ୍ର ଏକ ବିଷୟ ଥିଲା । କେତେ ଭାବରେ ମୁଁ କିଛି ମାସ ତାଙ୍କର ଛାତ୍ର ହୋଇଥିଲି । ସେ ଯେତେବେଳେ Ethics (ନୀତିଶାସ୍ତ୍ର) ପଢ଼ାନ୍ତି— ଆମ ଛାତ୍ରମାନେ ମୁଗ୍ଧ ହୋଇଯାଉ । ଛାତ୍ରମାନେ ଚରିତ୍ର ଗଠନ ଓ ନୀତି ସମ୍ବନ୍ଧୀୟ ଭାବନାରେ ମଜ୍ଜି ଯାଆନ୍ତି । ତାଙ୍କର ଗାମ୍ଭୀର୍ଯ୍ୟ ମଧ୍ୟରେ ମୃଦୁହାସ୍ୟ ଛାତ୍ରମାନଙ୍କ ମନକୁ ଅତି ଉଚ୍ଚ ସ୍ତରକୁ ଉଠାଇ ନେଉଥିଲା ।

ମୁଁ ଯେତେବେଳେ ତାଙ୍କ ଘରକୁ ଯାଏ, ସେ ମୋତେ କିଛି ଖାଇବାକୁ ଦିଅନ୍ତି । ସେ କୌଣସି ବ୍ୟକ୍ତିଗତ କଥା କହନ୍ତି ନାହିଁ । କେବଳ ଜାତି, ଧର୍ମ, ସମାଜ ସଂଗଠନ ବିଷୟକୁ ଚିନ୍ତା କରନ୍ତି ଏ ସେହି ସମସ୍ତରେ ସେ ଅନେକ ପ୍ରବନ୍ଧ ଲେଖିଥିଲେ । ମୋତେ ଡାକନ୍ତି ଓ ମୁଁ ଲେଖେ । ସେଥିରୁ ଅଧିକାଂଶ ଅପ୍ରକାଶିତ ହୋଇ ରହିଅଛି । ବେଳେ-ବେଳେ କହନ୍ତି, "ମୁଁ କଣ ବା ଲେଖିବି ? ମହା ମହା ମନୀଷିମାନେ କଣ ନ ଲେଖି ଯାଇଛନ୍ତି ଯେ ଆମେ ଆଉ ଲେଖିବା । କେବଳ ଚର୍ବିତ-ଚର୍ବଣ କରିବା ଛଡ଼ା ଅନ୍ୟ ପନ୍ଥା କଣ ଅଛି ?"

ଉତ୍କଳ ସମ୍ମିଳନୀର କାର୍ଯ୍ୟ ଜୋରସୋରରେ ଚାଲିଥାଏ । ରତ୍ନାକରବାବୁ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସ ଏମ୍., ଏଲ୍., ଏ. ('ମୁକୁର' ପତ୍ରିକା ସମ୍ପାଦକ) ଯେ କି ସମ୍ମିଳନୀର ସମ୍ପାଦକ ଥିଲେ, ତାଙ୍କ ଘରକୁ ଅନେକ ସମୟରେ ଆସି ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ଚର୍ଚ୍ଚା କରନ୍ତି । ସମ୍ମିଳନୀର ଦ୍ରୁତର କାର୍ଯ୍ୟପାଇଁ ଏକାଧିକ ଥର ଚାନ୍ଦା ଦେବାର ମୁଁ ଦେଖିଅଛି ।

କଟକର ରତ୍ନାକରବାବୁଙ୍କ ବାସଭବନ ବର୍ତ୍ତମାନ ଯେଉଁଠାରେ ଅଛି, ସେ ପଡ଼ାରେ ପ୍ରଫେସର ଭାବରେ ରତ୍ନାକରବାବୁ ରହିଲେ ପ୍ରଥମେ ସେହିଦିନୁ ସେ ପଡ଼ାର ନାମ ହେଲା ପ୍ରଫେସରପଡ଼ା ।

ସେ ଅନେକ ସମୟରେ ଚିନ୍ତାମଗ୍ନ ହୋଇ ପଡ଼ନ୍ତି ଓ ଧୀରସ୍ଥିର ଭାବରେ ତାଙ୍କର ସୁଚିନ୍ତିତ ମତ ବିଭିନ୍ନ ସମସ୍ୟା ଉପରେ ପ୍ରକାଶ କରନ୍ତି । ସେ ସକ୍ରିୟ ରାଜନୈତିକ ବ୍ୟକ୍ତି ନଥିଲେ, କିନ୍ତୁ ଦୁନିଆର ସମସ୍ତ ରାଜନୈତିକ ଘଟଣାମାନ ଅନୁଧ୍ୟାନ କରନ୍ତି । ସ୍ୱଜାତି ସମାଜର ଉନ୍ନତି କଳ୍ପେ ସେ ସର୍ବଦା ମନ ପ୍ରାଣ ନିୟୋଜିତ କରନ୍ତି ।

ରେଭେନ୍ସା କଲେଜର ଦର୍ଶନଶାସ୍ତ୍ରର ମୁଖ୍ୟ ଅଧ୍ୟାପକ ପଦରୁ ଅବସର ନେଇ ସେ ଦିନାକେତେ ମହିଳା କଲେଜରେ ପୁନର୍ନିଯୁକ୍ତି ପାଇଲେ । ତାଙ୍କର ପ୍ରଫେସରପଡ଼ା ବସାରେ ରହିଥିବାବେଳେ ମୁଁ ସେଠିକି ନିୟମିତଭାବେ ଯାଇ ତାଙ୍କୁ ଭେଟେ । ସେ ତାଙ୍କ କନ୍ୟା ପ୍ରଭାମୟୀ ଓ ଜାମାତା ନବକୁମାରଙ୍କୁ ଭେଟିବାକୁ ତେଲେଙ୍ଗାବଜାରକୁ ରିକ୍ସାରେ ଆସନ୍ତି । ସେ ଝିଅ ଜ୍ୱାଇଁଙ୍କ ସଙ୍ଗକୁ ଆସିବା ବାଟରେ ମୋତେ ବରାବର ସଙ୍ଗକୁ ନିଅନ୍ତି । ଅଧା କି ସ୍ନେହ ମୋର କି ଭାଗ୍ୟ ମୁଁ ସଦାସର୍ବଦା ତାଙ୍କର ସ୍ନେହର ପାତ୍ର ଥିଲି ଓ ତାଙ୍କ ଆଶୀର୍ବାଦ ପାଉଥିଲି ।

ତାଙ୍କ ଜୀବନର ଶେଷ ସଚେତ ମୁହୂର୍ତ୍ତ ମୋର ସାଙ୍ଗରେ ମୋ' ଘର ବାରଣ୍ଡାରେ କଟିଥିଲା । ୧୯୬୮ ମସିହା ଦୋଳପୂର୍ଣ୍ଣିମା ଦିନ ସେ ମୋତେ, ମୋ ଭାଇ ଲୋକନାଥ, ଅନ୍ୟ ଦୁଇଜଣ ବନ୍ଧୁଙ୍କୁ ଡାକାଇ ଦିନତମାମ ଘରେ ରଖି ପ୍ରଭାମୟୀଙ୍କ ସହାୟତାରେ ଚର୍ଚ୍ଚା କରାଇଥିଲେ ଓ ଆମ ସମସ୍ତଙ୍କର ଏକ ଫଟୋ ଉଠାଇବାପାଇଁ ତାଙ୍କ କନିଷ୍ଠ ପୁତ୍ର ହୃଦାନନ୍ଦ ଯୋଗାଡ଼ କରିଥିଲେ । ରତ୍ନାକରବାବୁ ଫଟୋଟି ନେଇ ମୋ ଘରକୁ ଯାଇ ସ୍ନେହପୂର୍ଣ୍ଣ ଭାବରେ ମୋତେ ଦେଇଥିଲେ ।

ଗତବର୍ଷ ୧୯୬୪ ମସିହା ଦୋଳ ପୂର୍ଣ୍ଣିମା ଦ୍ୱାଦଶରେ ତାଙ୍କ ଘରକୁ ଯିବାପାଇଁ ନିମନ୍ତ୍ରଣ କରିବାକୁ ଆସି ଆମ ଘରେ ମୋ ଭାଇଙ୍କ ସଙ୍ଗେ ତାଙ୍କର ବାଲ୍ୟ ଜୀବନ କଥାବାର୍ତ୍ତା କଲେ । ଏହା ପୂର୍ଣ୍ଣିମାର ଠିକ ବାର ଦିନ ଆଗରୁ, ଆମ ବାରଣ୍ଡାରେ ଖାଲି ତଳଟାରେ ବସି ଦୁନିଆର ଯାବତୀୟ ସମସ୍ୟା ସମ୍ପର୍କରେ କଥାବାର୍ତ୍ତା ହେଲୁ । ସଞ୍ଜ ହୋଇ ଆସିବାରୁ ମୁଁ କହିଲି, "ଅନେକ ପୂର୍ଣ୍ଣିମା ଦ୍ୱାଦଶ ଯିବୁ, ଆପଣ ବର୍ତ୍ତମାନ ଘରକୁ ଫେରନ୍ତୁ ।" ତହୁଁ ସେ ରିକ୍ସାରେ ବସି ଘରକୁ ଫେରିଲେ । ବଜ୍ରକବାଟିଠାରେ ରିକ୍ସାଟି ଗଡ଼ିବା ବେଳେ ତାଙ୍କର ରକ୍ତସ୍ରୋତ ଖୋଲିଗଲା । ସେ ଅଚେତନ ଅବସ୍ଥାରେ ଘରେ ପହଞ୍ଚିଲେ । ତା'ପରେ ସବୁ ଶେଷ । ଏ ଘଟଣାଟି ମୋ ସ୍ମୃତି ପଟରେ ରହିଅଛି ଓ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ରହିଥିବ । ମୋର ଷାଠିଏ ବର୍ଷର ଏକ ଯୋଗସୂତ୍ର ଛିଣ୍ଡିଗଲା । ତାଙ୍କୁ ଦେଖି କୌତୁକରେ ତାଙ୍କ ଡବାରୁ ମୁଁ ନାଶ (ନସ୍ୟ) ଶୁଙ୍ଘେ, ସେ ଯେଉଁ ନାଶ ଡବାଟି ମୋତେ ଦେଇଛନ୍ତି, ତାକୁ ଏକ ସ୍ମୃତି ଚିହ୍ନ ଭାବେ ମୁଁ ସାଇତି ରଖିଅଛି ।

ସେ ବରାବରି ହାଇସ୍କୁଲ ପ୍ରତିଷ୍ଠା ସମୟରେ ଯାହା ଯାହା କରନ୍ତି ମୋତେ କହନ୍ତି । ପରେ ସେ ଗଉଁଡ଼ପା ଗ୍ରାମ ପଞ୍ଚାୟତର ସରପଞ୍ଚ ହୋଇଥିଲେ । ମୁଁ କହିଲି, "ଆପଣଙ୍କୁ ଏ ଦୁର୍ବୁଦ୍ଧି ହେଲା କିଏ, ଆପଣ ଏଥିରେ ପଶିଲେ ?" ସେ ଉତ୍ତର ଦେଲେ—"ଯେତେବେଳେ ସରକାର ଗ୍ରାମ ଗହଳର ଉନ୍ନତି ପାଇଁ ଏ ଯୋଜନା କରିଛନ୍ତି, ଯେତେବେଳେ ଶିକ୍ଷିତ ଲୋକେ ତହିଁରୁ ଅଲଗା ହୋଇଗଲେ ଏ ଯୋଜନା ସଫଳ ହୋଇ ପାରିବନାହିଁ । ତେଣୁ ମୋ ଶେଷ ଜୀବନରେ ଗ୍ରାମବାସୀ ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତଙ୍କ ମେଳରେ ରହି ଯେବେ ସେମାନଙ୍କର ଯଥାସାଧ୍ୟ ଉପକାର କରି ପାରିବ ତେବେ ସେ ସୁଯୋଗ ଛାଡ଼ିବା କାହିଁକି ?" ସେ ଗ୍ରାମ ଗ୍ରାମ ମଧ୍ୟରେ ବିବାଦ ଲାଗିଲେ, ତାହା ସୁରୁଖୁରୁରେ ସମାଧାନ କରୁଥିଲେ ।

ସେ କାହାର ନିନ୍ଦା କରନ୍ତି ନାହିଁ । ଥରେ ମୁଁ ତାଙ୍କ ଆଗରେ ଅନ୍ୟ ଜଣେ ଅଧ୍ୟାପକଙ୍କୁ ମାମଲାବାଦ ବୋଲି ନିନ୍ଦା କରୁଥିଲି, ସେ ମୋତେ ନିବର୍ତ୍ତାଇ ଥିଲେ । ଧନୀ ଲୋକ, ଦରିଦ୍ର ଲୋକ ସମସ୍ତଙ୍କ ସଙ୍ଗେ ମୈତ୍ରୀ ହୋଇପାରୁଥିଲେ । ତାଙ୍କର ବହୁତ ଦାନ ପୁଣ୍ୟ ଥିଲା, କିନ୍ତୁ କେହି ଜାଣି ପାରୁ ନ ଥିଲେ ।

କଟକରେ ଖଣ୍ଡିଏ ଘର, ଏହାଛଡ଼ା ସେ ତ ବୈଷୟିକ ସମ୍ପତ୍ତି କିଛି କରି ନାହାନ୍ତି ।

ମୁଁ "ନନ୍ଦନ କାନନ" ନାମକ ଏକ କବିତା ପୁସ୍ତକ ରଚନା କରି ରତ୍ନାକରବାବୁଙ୍କୁ ଉପହାର ଦେଇଥିଲି । ମୁଁ ତାଙ୍କୁ ଦେବାମାତ୍ରେ ସେ କହିଲେ—"ମୋତେ ଆଉ ଦଶଖଣ୍ଡ ବହି ଦିଅ । ମୁଁ ତାହା ଦଶଜଣ ଛାତ୍ରଙ୍କୁ ବାଣ୍ଟିଦେବି ।" ପ୍ରତି ପୁସ୍ତକର ମୂଲ୍ୟ ଟ ୦ ୫ ଥିବାବେଳେ ସେ ମୋତେ ଦଶଖଣ୍ଡ ବହିର ମୂଲ୍ୟ ବାବଦକୁ ଟ ୧୦୯ ଦେଲେ । ମୁଁ ଯେତେ ମନା କଲି ଟଙ୍କା ନ ଦେବାକୁ, ସେ ମୋତେ ବାଧ୍ୟ କଲେ ନେବାକୁ ।

ରତ୍ନାକରବାବୁଙ୍କ ସମ୍ପର୍କରେ ଆସି ମୁଁ ଯାହା ଅଙ୍ଗେ ନିଭାଇଛି, ତାହାକୁ ପ୍ରକାଶ କରିବା ସ୍ୱର୍ଗତ ଆତ୍ମାଙ୍କ ପ୍ରତି ମୋର କର୍ତ୍ତବ୍ୟ । ତାଙ୍କର ମୋ ପ୍ରତି ଅନାବିଳ ସ୍ନେହ ଓ ଆଶୀର୍ବାଦ ମୋ ଜୀବନରେ ଏକ ପ୍ରଧାନ ବିଭବ ।

# କିଏ କହିଲା;
# "କଟକେଇ ଆଉ ନାହାନ୍ତି" ?

ଡକ୍ଟର ନିତ୍ୟାନନ୍ଦ ପଣ୍ଡା

[ ୟୁରୋପ ଓ ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଆମନ୍ତ୍ରିତ ହୋଇ ଭାଷଣ ଦେବାଲାଗି ଯାତ୍ରା ମଝିରେ ଟୋରୋଣ୍ଟୋସ୍ଥିତ ୟର୍କ ବିଶ୍ୱବିଦ୍ୟାଳୟର ଅତିଥି କକ୍ଷରେ ଲିଖିତ । ]

ନିର୍ଜନ ପ୍ରକୋଷ୍ଠର ବାତାୟନ ଆରପାଖେ ଖାଲି ଅନ୍ଧାର । ଆଲୋକର ରଶ୍ମି ଏଇ ପ୍ରକୋଷ୍ଠର ଚତୁଃପାର୍ଶ୍ୱରେ ଚତ୍ୱାଳ ଓ ଛାତରେ ଆବଦ୍ଧ । କ ସାମାନ୍ୟ ଏ ରଶ୍ମି, ଯାହା ନେଇ ମୁଁ ଲେଖିବି— କଟକେଇଙ୍କ କଥା । ତାଙ୍କର ଜୀବନ ଯେ ଏକ ଅଭୂତ, ଅନିର୍ବଚନୀୟ, ଜ୍ୟୋତିର୍ମୟ ଆଲୋକ ସ୍ତମ୍ଭ, ଯାହାର ଆଶ୍ରୟରେ ଖାଲି ମୁଁ କାହିଁକି, ସମଗ୍ର ମାନବ-ଜାତି ହେଉଥିବ ଉଦ୍‌ବୁଦ୍ଧ, ଉନ୍ନୀତ ଓ ଉଦ୍ଦୀପିତ । ଭାଷାରେ କଅଣ ସେ 'ଶାଶ୍ୱତ'ର ପରିକଳ୍ପନା ଓ ଅବଧାରଣା କରିହୁଏ ? ଲେଖନୀର ଛନ୍ଦରେ କଅଣ ସେ ଜୀବନକାବ୍ୟର ଟୀକା ଲେଖିହୁଏ ? ସାଧାରଣ ପାରିପାର୍ଶ୍ୱିକ ଓ ଆନୁସଙ୍ଗିକ ସାମଗ୍ରୀରୁ କଅଣ ସେ ତଥ୍ୟର ଗବେଷଣା ସମ୍ଭବ ? ଦେହ ଓ ମନର କଥାରେ କଅଣ ସେ ବିଦ୍ୟୁତ୍‌ଶକ୍ତିକୁ ପରିମାପିତ କରିହୁଏ ? ସତ୍ୟ ଓ ଅସତ୍ୟର ପାରସ୍ପରିକ ଦ୍ୱନ୍ଦ୍ୱର ପରିଧିରେ କଅଣ ସେ 'ଶାଶ୍ୱତ' ସୀମିତ ? ସ୍ଥାନ, କାଳ, ପାତ୍ର ଓ ତଦ୍ରୂପ ନିୟମାତ୍ମକ ବ୍ୟାପ୍ତି-ବିଶେଷରେ କଅଣ ସେ ମହାନ୍ ଆତ୍ମା ବିଶେଷିତ ?

'କଟକେଇ' ବୋଲି ଶଣୀଭାଇନା, ମୋର ପୂଜ୍ୟ ଦଦେଇଙ୍କର ଏକମାତ୍ର ପୁତ୍ର, ତାଙ୍କୁ ଡାକୁଥିବାରୁ ନାନୀ, ମୁଁ ଓ ସେଇ ନିୟମରେ ସାନଭାଇ ହୃଦାନନ୍ଦ ମଧ୍ୟ ତାଙ୍କୁ 'ବାପା' ପରିବର୍ତ୍ତେ 'କଟକେଇ' ବୋଲି ସମ୍ବୋଧନ କରି ଆସିଛୁଁ । ଆଜି ଦଦେଇଙ୍କୁ ସେଇ କାରଣରୁ 'ବାପା' ବୋଲି ।

ଅଗାଧ ସେ ବାତ୍ସଲ୍ୟର ଗମ୍ଭୀରତା, ଯାହାର ଝିନ୍ଦୁଏ ମାତ୍ର ଯେକୌଣସି ପୁତ୍ର ବା କନ୍ୟାକୁ ଧରାସ୍ୱର୍ଗର ଅନୁଭୂତି ଦେବ । ହଠାତ୍ କାହିଁକି ଲାଗିଲା—ଜେଜେଇଙ୍କ ଶବଦାହ, ଅନ୍ତ୍ୟେଷ୍ଟି ସଂସ୍କାର, ଶ୍ରାଦ୍ଧ-ଇତ୍ୟାଦି ସବୁ ତାଙ୍କ ନଶ୍ୱରଦେହର ଲାଗି; ତାଙ୍କ ଲାଗି ନୁହେଁ । ସେ ନିତ୍ୟ, ସନାତନ, ଅବିନାଶୀ, ଅଜ, ଅମର—ହଁ ଚିର ଅମର । ତାଙ୍କର ସ୍ମରଣୀକା ତାଙ୍କର ତିରୋହିତ ବ୍ୟକ୍ତିତ୍ୱର ପୁନରୁଦ୍ଧାର ଅଥବା ପୁନଃସ୍ମରଣ ନୁହେଁ, କାରଣ ସେ ବ୍ୟକ୍ତିତ୍ୱର ସତ୍ତା ଏଇ ଜଗତର ରନ୍ଧ୍ରେ ରନ୍ଧ୍ରେ, ଆକାଶ ପାତାଳର, ପର୍ବତ, ପ୍ରାଙ୍ଗଣ, ବିଦ୍ୟାଳୟ, ମନ୍ଦିର,—ଚତୁର୍ଦ୍ଦିଗରେ ସର୍ବଦା ଚିର ପ୍ରତିଷ୍ଠିତ ।

ତାଙ୍କର 'ସ୍ମରଣିକା' ହେଉ ଆମର ନିଜର ଆତ୍ମ ପରିବର୍ତ୍ତୀକରଣ, ଆମର ସଦ୍‌ଗତି—ବାଞ୍ଛା, ଆମର ଆରତି, ଆମର ଧୂପ-ଦୀପ-ନୈବେଦ୍ୟ-ପରିବେଷଣ । ଆଉ ପରଲୋକ, ପିତୃଲୋକ କଥା ସବୁ ମିଛ । ସେ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ, ଲକ୍ଷ ଲକ୍ଷ ମାନବର ଅନ୍ତରର ଗଭୀରତମ ସ୍ତରରେ ତୁମେ ତାଙ୍କୁ ପାଇବ । ମାଳଶ୍ରୀ ସୁଶୋଭିତ ଲେଖନ ଓ ପ୍ରବଚନରେ ତୁମେ ତାଙ୍କୁ ପାଇବ । ପ୍ରବନ୍ଧ-ପ୍ରକାଶର ପ୍ରକାଶ-ଜ୍ୟୋତିରେ ତୁମେ ତାଙ୍କୁ ପାଇବ । ସ୍ୱପ୍ନତତ୍ତ୍ୱ, ବିବର୍ତ୍ତନବାଦ ଆଦି ଦାର୍ଶ ପ୍ରବନ୍ଧ ନିଚୟରେ ତୁମେ ତାଙ୍କୁ ପାଇବ । ତୁମେ ପାଇବ ତାଙ୍କୁ ତାଙ୍କର ଗୀତିକବିତା ଓ ଶ୍ଳୋକ-ସଂଗ୍ରହରେ । ତୁମେ ତାଙ୍କୁ ଭେଟିବ ଦର୍ଶନର ଅଧ୍ୟାପନ-ନିରତ କେତେ ବିଚକ୍ଷଣ ସୁଶିକ୍ଷୀଙ୍କ ଜ୍ଞାନ—ଦ୍ୟୋତନାରେ । ତୁମେ ତାଙ୍କୁ ଚିହ୍ନିବ ଆଦର୍ଶ ଗ୍ରାମ୍ୟଜୀବନରେ, ବରିବାଟୀ, ଶିଦ୍ଧେଶ୍ୱରପୁର, ତେଲିଦଆ ଆଦି ସ୍ଥାନମାନଙ୍କରେ ସ୍ଥାପିତ ବିଦ୍ୟାଳୟ ମାନଙ୍କରେ, ପରମହଂସନାଥ, ପଥରମୁଣ୍ଡେଇ, ଚଉଁରପା ଜନ୍ମପୀଠର ନୀଳକଣ୍ଠେଶ୍ୱର, କଞ୍ଚନେଶ୍ୱରୀ ମନ୍ଦିରର ସନ୍ଧ୍ୟା ମାଜଣାରେ, ଚଞ୍ଚୁସ୍ମୃତିର ମୁକ୍ତିତର୍କରେ ପୁଣି ଇଂରାଜୀ ଭାଷାରେ ଲିଖିତ ବିଖ୍ୟାତ ଗ୍ରନ୍ଥ History of Modern European Philosophy, from Bacon to Kantରେ

ମୁଁ ଯେ ତାଙ୍କର ଜ୍ୟେଷ୍ଠପୁତ୍ର ବୋଲି ଏହି ଶ୍ରଦ୍ଧାଞ୍ଜଳି ଦେବାରେ ସାହସୀ ହୋଇଛି, ତା' ନୁହେଁ ମୋର ବିକ୍ଷିପ୍ତ ଜୀବନରେ ତାଙ୍କଠୁ ବା କଅଣ ଗ୍ରହଣ କରି ପାରିଥାଆନ୍ତି ? ପିତୃପୁରୁଷଙ୍କର ଶାସ୍ୱତିକ ଦାୟାଦ ରୂପେ ମୋ'ର କିଛି ଅଧିକାର ନାହିଁ ସ୍ୱତନ୍ତ୍ର ରୂପେ ତାଙ୍କର ସ୍ୱତ୍ତ୍ୱକୁ

ପ୍ରକାଶିତ କରିବାଲାଗି, କିନ୍ତୁ ସେ ମତେ ଅନେକ ସମୟରେ ଦେଖାଦିଅନ୍ତି, ସ୍ୱପ୍ନରେ, ଜାଗରଣରେ, ପ୍ରତ୍ୟକ୍ଷରେ, ପରୋକ୍ଷରେ । ଆଉ ସେ ମତେ ଆହ୍ୱାନ କରନ୍ତି ତାଙ୍କ ଆଡ଼କୁ। କହନ୍ତିନି କିଛି ବିଶେଷ କଥାରେ; ଖାଲି ଡାକନ୍ତି ପାଖକୁ, ଇଂଗିତରେ, ଆତ୍ମକଥନରେ ମୁଁ ତାଙ୍କୁ ପ୍ରତି ଜଣାଏ। ସେ ମୋ ଉପରେ ବିଶେଷ ସନ୍ତୋଷର ଆଭାସ ଦିଅନ୍ତିନି । କିନ୍ତୁ ତାଙ୍କ ବ୍ୟକ୍ତିତ୍ୱର ସୌମ୍ୟତା ମତେ ଭୟ ମୁକ୍ତ କରି ତାଙ୍କ ଆଡ଼କୁ ଆଗେଇ ଯିବାକୁ ପ୍ରେରିତ କରେ । ମୁଁ ନିଜକୁ ହଠାତ୍ ଅତି ସ୍ୱଚ୍ଛ ଓ ନିରୁଦ୍‌ବିଗ୍ନ ପାଏ ମୁଁ ଚମକି ପଡ଼େ । ବିସ୍ମୟ ଓ ଏକାନ୍ତ ପ୍ରାଣମୟତାରେ ।

ମୁଁ ଯାହା ଲେଖିଯାଉଛି, ତା ମୁଁ ଲେଖୁନାହିଁ ବୋଲି ଲାଗେ— ସତେ ଯେପରି ସେ ମତେ ଧୀର ମୃଦୁମଧୁର ଇଂଗିତରେ ସବୁକିଛି ଠାରିଯାଉଛନ୍ତି । ମୁଁ ଅବାକ୍ ହୋଇ ଲେଖିଚାଲିଛି । ଶୂନ୍ୟ ଏଇ ପ୍ରକୋଷ୍ଠରେ, ଗଭୀର ରାତିର ଅନ୍ଧକାର ବାତାୟନର ଆରପଟେ ଯେପରି ଆଉ ନାହିଁ । ଭରିଆଉ ଆଲୋକମୟ । ସେ ଆତ୍ମା ଭରିଅଛେ । କିଏ ବା ବ୍ୟାଖ୍ୟାନ ଦେବ ଏ ସବୁର, ଅଶିବ ମର୍ମମୟ, ଅତିଶୟ ବିଚିତ୍ର ଏ ସବୁ ।

କଳେଇ ବାଞ୍ଛି କଲେଜରେ ଅଧ୍ୟାପକ ଥାଆନ୍ତି । ୧୯୩୪-୩୫ କଥା । ମୋର ବୟସ ଚାରି-ପାଞ୍ଚ ବର୍ଷ । ମୁଁ ଦିନେ ତାଙ୍କ ସାଙ୍ଗେ, ଅନ୍ୟ ଦିନ ପରି, ବୁଲି ବାହାରିଲି—ସନ୍ଧ୍ୟାପୂର୍ବରୁ—ଘାଟପଥରେ ଆମେ ଦୁହେଁ କେବଳ । ଅନେକ ମାଣ୍ଡିଆଗଛ ଗୋଟିଏ କିଆରୀରେ ଲାଗିଥାଏ, ମାଣ୍ଡିଆ ଟେଣ୍ଟା ଟେଣ୍ଟା ହୋଇ ଝୁଲୁଥାଏ ମୁକ୍ତ ଆକାଶର ହାଓ୍ୱାରେ । କଳେଇ କହିଲେ—"ଏ ମାଣ୍ଡିଆକୁ ପୋଡ଼ି ଖାଆନ୍ତି, ନିବା ।" ମୁଁ କେବଳ ସେଇ ଥରକ ମାଣ୍ଡିଆ ପୋଡ଼ା ଖାଇଛି । ଭାରି ମନେପଡ଼େ । ବୋଉ ହୟେ, ଏମିତି ସବୁ କଳେଇ ବିବାଦ କରନ୍ତି, ପିଠାଶାଗପୋଡ଼ା, ସାରୁପତ୍ରରେ ବେସନ ଦେଇ ଭଜା, ନଡ଼ିଆକୋରା ଚଟଣୀ, କେତେ କୁଆଡ଼ୁ ତାଙ୍କୁ ଜଣାଥାଏ !

ସେମିତି ଦିନେ ସନ୍ଧ୍ୟାବେଳେ ବୁଲି ଯାଇ ରାସ୍ତାରେ ଗୋଟିଏ ଲଙ୍କା ବଗିଚାର ମାଳୀଠାରୁ ଖୁବ୍ ଛୋଟ କିନ୍ତୁ ଭାରି ରାଗ ଲଙ୍କା କିଣା ହେଲା । ମତେ କଳେଇ କହିଲେ—"ଏଇ ଯେ ପଣ୍ଡିତଜୀ ଧାନୁଆ ଲଙ୍କା ବଡ଼ ମଜା ହବ ଆଜି ।"

'ପଣ୍ଡିତ୍‌ଜୀ' ନାଆଁ ମୋର ଦିଆ ହେଲା ଗାଁରେ । ଦିନେ କଟକେଇଙ୍କର ଅନ୍ତରଙ୍ଗ ବନ୍ଧୁ ପଣ୍ଡିତ୍ ରମାଜ୍ଞା ପାଣ୍ଡେୟ ଜୀ, ଯେ ପୂର୍ବେ ପୁରୀ ସଂସ୍କୃତକଲେଜର ଅଧ୍ୟକ୍ଷ ଭାବରେ କାର୍ଯ୍ୟକରିଥିଲେ, ହଠାତ୍ ଆସି ପହଞ୍ଚିଲେ ଆମ ବସାରେ । କଟକେଇଙ୍କ ଆଦେଶରେ ମୁଁ ତାଙ୍କୁ କେତେକ ସଂସ୍କୃତ ଶ୍ଳୋକ ମୁଖସ୍ଥରୁ ଶୁଣାଇଲି । ପଣ୍ଡିତ ମହାଶୟ ହିନ୍ଦୀ ଭାଷୀ । ହିନ୍ଦୀରେ କହିପକାଇଲେ "ଇନ୍‌କା ନାମ୍ 'ପଣ୍ଡିତ୍‌ଜୀ' ରଖ୍‌ଖାଯାଏ ।" ସେଇ ଦିନଠୁ କଟକେଇ ମତେ 'ପଣ୍ଡିତ୍‌ଜୀ' ଡାକନ୍ତି । ତାଙ୍କଠୁ ଶିଖି ଆଜି ବି ଅନେକେ ।

କଟକେଇ ମତେ ପ୍ରଥମ ଶିକ୍ଷା ଦେଇଥିଲେ । ପ୍ରଥମେ ମୁଁ ତାଙ୍କଠୁ ଅ, ଆ, ଇ, ଈ, ଶିଖିଲି । ମତେ ସେ ଚକ୍‌ଖଡ଼ିରେ ଲେଖିବାକୁ ଗୋଟିଏ କଳାପଟା ଦେଇ ଥାଆନ୍ତି । ନାନୀ, ମୁଁ ସେଥିରେ ଲେଖୁଁ । ନାନୀ ଖୁବ୍ ଭଲ ଇଂରାଜୀ ଶିଖିଥାଆନ୍ତି ଓ ତାଙ୍କର ପଢ଼ିବାର ଓ ଉଚ୍ଚାରଣର ଦକ୍ଷତାରେ ସମସ୍ତେ ଆଶ୍ଚର୍ଯ୍ୟ ହୁଅନ୍ତି । ମୁଁ ଗୃହଆଡ଼େ ଯାହା ଦେଖେ ତାକୁ ସବୁ ଆଙ୍କି ଦେଖାଇବାକୁ ତତ୍ପର ହୁଏ । ପ୍ରଥମେ କଟକେଇ 'ବଙ୍କାବାଠ' ବୋଲି ମତେ ଅକ୍ଷର ସବୁ ମଡ଼ାଇ ଅଭ୍ୟାସ କରିବାକୁ କହିଲେ । ଦିନେ ମୁଁ ବାରଣ୍ଡାଯାକ ଅ, ଆ, ଇତ୍ୟାଦି ଲେଖି ଭର୍ତ୍ତି କରିଥିଲି । ସେ କଲେଜରୁ ଆସି ଖୁବ୍ ହସିଲେ । ବୋଉ ବି ହସିଲେ । ନାନୀକୁ ମୁଁ ଖୁବ୍ ମାନୁଥିଲି, କାହିଁକି ନା ସେ ସବୁ ପାଠ ଭଲକରି ପଢ଼ନ୍ତି । ନାନୀ ଖୁବ୍ ଭଲ ସଂସ୍କୃତ ଶ୍ଳୋକ ବୋଲନ୍ତି । ଆମେସବୁ ସନ୍ଧ୍ୟାବେଳେ ପ୍ରାର୍ଥନା କରୁ । ସୁଦର୍ଶନ ଭାଇନା ଦିନେ ପ୍ରାର୍ଥନା କଲେ । ସେ କଟକେଇଙ୍କର ଅତି ପ୍ରିୟଛାତ୍ର ଥିଲେ । ତାଙ୍କୁ ଅନୁସରଣ କରି ଆମେ ସବୁ ପ୍ରାର୍ଥନା କଲୁ—

"'ଧ୍ୟେୟ' ବଦନ୍ତି ଶିବମେବହି କେଚଦନ୍ୟେ" ଇତ୍ୟାଦି । ମୋର ଗାଁର ସେ ପ୍ରାର୍ଥନା ଅକ୍ଷୁର୍ଣ୍ଣ ମନେ ଅଛି । କଟକେଇ ବୋଉ ଓ ସୁଦର୍ଶନ-ଭାଇନା ଅଶ୍ରୁପୂର୍ଣ୍ଣ ନେତ୍ରରେ ପ୍ରାର୍ଥନା କରୁଥାଆନ୍ତି ।

କଟକେଇ ମତେ ଥରେ ବଷ୍ଟ-ହିଲ୍ (ଟେକ) ଉପରକୁ ଚଢ଼ାଇ ନେଲେ ବୁଲିବା ଛଳରେ । ମୁଁ ପ୍ରଥମେ ସେଇଠି ଛେଳି ସବୁ ପାହାଡ଼ ଉପରେ ଚରୁଥିବା ଦେଖିଲି ।

ମୋର ମନେ ଅଛି କକେଇଙ୍କ ନାସଦାମୀ ମୁଁ କୁଆଡ଼େ ନେଇ ରଖିଦେଇଥିଲି । ସେ କଥା ଶୁଣି ତାଙ୍କର ପରମ ବନ୍ଧୁ ଓ ବରେଣ୍ୟ ସାହିତ୍ୟସେବୀ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଖୁବ୍ ହସୁଥାଆନ୍ତି ।

କକେଇ ମତେ ରଙ୍ଗ ବାକ୍ସ ଆଣିଦେଲେ । ମୁଁ ପ୍ରଥମେ ଗୋଟିଏ ଶୁଆ ଆଉ ଗୋଟିଏ ପଡ଼ିଆରେ ଥିବା ନିର୍ଜନ ବୃକ୍ଷ ଆଙ୍କି ଦେଖାଇଲରୁ ସେ ଖୁବ୍ ଖୁସି ହୋଇ ସେଇ ଦୁଇଟି ଛବିକୁ ବନ୍ଧାଇଦେଲେ । ମୁଁ ଛବିକଳାରେ ବୋଉଙ୍କଠୁ ଶିକ୍ଷା ଓ ଉତ୍ସାହ ପାଇଲି, କକେଇଙ୍କଠାରୁ ଖୁବ୍ ରଙ୍ଗବାକ୍ସ । ମୋର କି ଉଲ୍ଲାସ ! ସମସ୍ତଙ୍କୁ ରଙ୍ଗବାକ୍ସ ଦେଖାଏ । ଖୁବ୍ ଛବି ବି କରେ ଆଉ ଉପହାର ରୂପେ ବାଣ୍ଟେ । କକେଇ ଘୋଡ଼ାଦୌଡ଼ ଦେଖାଇ ନିଅନ୍ତି ଆମକୁ । ଗୋଟିଏ ଘୋଡ଼ା ଥରେ ବିନା ଆରୋହୀରେ ପ୍ରଥମ ପୁରସ୍କାର ପାଇବା କଥା ମୋର ମନେ ଅଛି । ଆରୋହୀ ପଡ଼ିଯିବା ସତ୍ତ୍ୱେ ଘୋଡ଼ାଟି ତା'ର କର୍ତ୍ତବ୍ୟ କରି ପ୍ରଥମ ପୁରସ୍କାର ପାଇଲା । କକେଇ ଆମକୁ ଥରେ ଉଡ଼ାଜାହାଜ ଦେଖେଇ ନେଇଥିଲେ— ସେଇ ବମ୍ବେରେ ।

କକେଇ ଖୁବ୍ ପଢ଼ୁଥିବା କଥା ମୋ'ର ମନେଅଛି । ମୁଁ ସେଦିନରୁ ଦେଖି ଆସିଛି—କକେଇ ସବୁବେଳେ ବହି ଘାଣ୍ଟିବାରେ ଓ ବହି ପଢ଼ିବାରେ କିମ୍ବା ଲେଖିବାରେ ନିଜର ଅଧିକାଂଶ ସମୟ ଦେଇଛନ୍ତି । କିନ୍ତୁ ସେ କାହାକୁ ଆନାଦର କରୁ ନ ଥିଲେ । ରାତିରେ ବୋଉ ତାଙ୍କ ପାଖରେ ନାସଦାନୀ ଆଉ ଗୋଟିଏ ସୁନ୍ଦର ଗୁଇନା·ଲମ୍ପ୍ ରଖିଦେଇ ଆସନ୍ତି । ରାତି ଦୁଇଟାଯାଏ କକେଇ ପ୍ରାୟ ସବୁଦିନେ ପଢ଼ନ୍ତି । ସେ ସିଧା ବସି ପଢ଼ନ୍ତି, ଆଉ ଲେଖନ୍ତି । ଅନେକ ସମୟୁଧରି ସେମିତି ବସି ପଢ଼ୁଥାଆନ୍ତି ।

ଦିନେ ମତେ କହିଲେ—"ପଣ୍ଡିତ୍‌ଜୀ, ଟିକଏ ବଞ୍ଚ ଦେଲେ" ବଡ଼ ସ୍ନେହରେ । ରାତି ଖରା ଧେ ଦିନ । ମୁଁ ବଞ୍ଚିବାରେ ଯେ ଟିକଏ ଶୋଇପଡ଼ିଲେ । ପ୍ରାୟ ଅଧଘଣ୍ଟାକପରେ ଉଠି ଦେଖନ୍ତି ଯେ ମୁଁ ସେମିତି ବଞ୍ଚିବାରେ ଲଗିଛି । ସେ ହଠାତ୍ କହିଲେ, "ଆରେ ! ଆପଣ ବଞ୍ଚିବାରେ ଲାଗିଛନ୍ତି ! ହଉ ଯାଆନ୍ତୁ, ପଢ଼ିବେ ।" ମୋ ଉପରେ ସେଦିନ ସେ ସନ୍ତୁଷ୍ଟ ହେଲପରି ମୁଁ ଅନୁଭବ କଲି, ମୋର କର୍ତ୍ତବ୍ୟନିଷ୍ଠା ଦେଖି । ସ୍ନେହରେ ସେ ମତେ 'ଆପଣ' ବୋଲି ସମ୍ବୋଧନ କରୁଥିଲେ ଅନେକ ସମୟରେ ।

କକେଇ ସେବତୀ ନାମୀ, ଦୁଲେଇ ନାମୀ (ତାଙ୍କର ଝିଆଣୀ ଓ ଭଣିଜୀ) ଉଭୟଙ୍କୁ ଖୁବ୍ ଆଦରରେ ଘରକୁ ଡ଼ାକନ୍ତି । ସେମାନେ ମତେ ମୃତ୍ୟୁ ମୁଖରୁ ରକ୍ଷା କରିବାଲଗି କେତେ ସାହାଯ୍ୟ କରିଛନ୍ତି କକେଇ ଓ ବୋଉଙ୍କୁ, ତା' ମୁଁ କକେଇଙ୍କଠୁ ଶୁଣେ ।

କଟକ ଆସିବା ଆଗରୁ କକେଇ ସମ୍ବଲପୁରରେ ପ୍ରଧାନ ଶିକ୍ଷକ କାର୍ଯ୍ୟ କିଛି ସମୟ କରିଥିଲେ । ସେଇ ସମୟରେ ମତେ ମାରାତ୍ମକ ଟାଇଫଏଡ଼ ହେଲା । ମୋଟେ ୭ବର୍ଷର ମୁଁ । କକେଇ, ବୋଉ ଖାଲି ମହାଦେବଙ୍କୁ ପ୍ରାର୍ଥନା କରୁଥାଆନ୍ତି । ବୁଢ଼ାରଜା ପର୍ବତ ଉପରେ ମହାଦେବଙ୍କ ମନ୍ଦିରରେ ଅଭିଷେକ ହେଉଥାଏ । ମତେ କେତେ ଖେଳନା ଆଣି ଦେଇଥାଆନ୍ତି କକେଇ । ଦେବାର୍ଚ୍ଚନ ଫଳିଲା । ଜଣେ ବର୍ଷୀୟାନ୍ ଡାକ୍ତର—ସମ୍ବଲପୁରର ସେ ସମୟର ସିଭିଲ୍ ସର୍ଜନ କକେଇଙ୍କର ଗୋଟିଏ ମର୍ମସ୍ପର୍ଶୀ ବକ୍ତୃତା ଶୁଣିସାରି ହଠାତ୍ ପଚାରିଲେ—ଆପଣଙ୍କ ପୁଅ କଅଣ ଭଲ ଅଛନ୍ତି ଆଉ ? ମୁଁ ତାର ଅସୁସ୍ଥତାର ଖବର ପାଇଛି ମୋ ପୁଅ ମାଧ୍ୟମରେ, ଯେ କି ବିଦ୍ୟାଳୟର ଛାତ୍ର । ମୁଁ ଆପଣଙ୍କ ପିଲାକୁ ଦେଖିବାକୁ ଉତ୍ସୁକ ।" ତାଙ୍କରି ଦୟାରୁ ମୁଁ ବଞ୍ଚିଲି । କକେଇ ଓ ବୋଉ ଉଭୟଙ୍କର ପ୍ରଭୁଙ୍କଠି ଅଚଳା ଭକ୍ତି ।

ସମ୍ବଲପୁରରେ କକେଇ କେତେ ଲାଟସାହେବଙ୍କ ସମ୍ମାନରେ ହେଉଥିବା ଆୟୋଜନମାନଙ୍କରେ ଅଧ୍ୟକ୍ଷତା କରିଥିଲେ, ମୋର ମନେ ଅଛି । ତାଙ୍କର ସେଇ ଅମୃତମୟ ଶୁଭବାଣି, ତାଙ୍କର ସେ ଅମାୟିକସ୍ମିତ ଓ ସେ ଗୁରୁଗମ୍ଭୀର ବାଣୀ, ସବୁ ମୋର ମନେ ପଡ଼େ ।

କଟକ ରେଭେନ୍ସା କଲେଜର ଅଧ୍ୟାପକ ହୋଇ ଫେରି ଆସି—କକେଇ ଏକ ପ୍ରକାର ଶାନ୍ତିମୟ ଜୀବନରେ ପଦାର୍ପଣ କଲେ । ତାଙ୍କ ବିଭାଗର ବିଶିଷ୍ଟ ଅଧ୍ୟାପକ ଶ୍ରୀଯୁକ୍ତ ଶରତ୍ ଘୋଷାଲ୍ ଓ ଶ୍ରୀଯୁକ୍ତ ବିପିନବିହାରୀ ରାୟଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା, ଆଉ ସମୟ ସମୟରେ ବି ସେ ଶ୍ରୀଯୁକ୍ତ ମୋହିନୀମୋହନ ସେନାପତିଙ୍କ ସଙ୍ଗେ ପରାମର୍ଶ କରୁଥିଲେ । ସେପରି ଅଧ୍ୟାପକ-ମଣ୍ଡଳୀ ଆଜି ଆଉ କାହିଁ ?

ମୋର ମନେ ଅଛି କକେଇ କେତେ ରାଣୀହାଟ ସ୍କୁଲରେ ମତେ ନାଆଁ ଲେଖେଇବାକୁ ନେଇ ଯାଇଥିଲେ—ଅଧ୍ୟାପକ ହିସାବରେ ତାଙ୍କୁ ସମସ୍ତେ ଭକ୍ତି କରୁଥିଲେ, ତା'ର ପରିଣାମରେ ମତେ ସବୁବେଳେ

ଲଗେ—ଯଦି ମୁଁ ଭଲ ନ ପଢ଼େ, ତା'ହେଲେ ତାଙ୍କର ଓ ପରିବାରର ସମ୍ମାନରେ ଆଘାତ ହୋଇପାରି ହେବ । ମୁଁ ପଢ଼ିବାକୁ ଭଲପାଏ ବୋଲି କକେଇ ମତେ ଭଲ ପାଉଥିଲେ, ଆଉ ଅନେକ ସମୟରେ ମୋ ସଙ୍ଗେ ଘନିଷ୍ଠତାର ସ୍ତରରେ ବୌଦ୍ଧିକ ଚର୍ଚ୍ଚା କରୁଥିଲେ । ମୁଁ ତାଙ୍କ କଥାର ବ୍ୟତିକ୍ରମ କେବେହେଁ କରେନି, କାରଣ ସେ ମୋର ଶ୍ରେଷ୍ଠ ଗୁରୁ, କେବଳ ଜନ୍ମଦାତା ପିତା ନୁହନ୍ତି । ମୋର ପୁରସ୍କାର ସବୁ ଆଣି ମୁଁ ତାଙ୍କୁ ଆଗ ଦେଖାଏ । ସେ ମତେ କହନ୍ତି—''ପଣ୍ଡିତଜୀ, ଆମର କୌଣସି ଛାତ୍ର ସଙ୍ଗେ ସଂଘର୍ଷ ବା ପ୍ରତିଦ୍ୱନ୍ଦ୍ୱିତା କାହିଁକି ରହିବ ? ଆମର ପ୍ରତିଦ୍ୱନ୍ଦ୍ୱିତା କେବଳ ୧୦୦ % ସହିତ । ସବୁ ବିଷୟରେ ସବୁ ପ୍ରଶ୍ନର ଉତ୍ତର ଦେଇପାରିଲେ ତୁମେ ଆଦର୍ଶ ଛାତ୍ର ବୋଲି ଜଗତ ସ୍ୱୀକାର କରିବ ।'' ଏ ଆଦର୍ଶ ଆଜି ଛାତ୍ରସମାଜରେ ତିଳେମାତ୍ର ଅଛି କି ?

ମୁଁ ସର୍ବପ୍ରଥମ ସ୍ଥାନ ଅଧିକାର କରି ବୃତ୍ତିପାଇ ମିଡ଼ିଲ୍ ସ୍କୁଲ୍‌ରୁ ରେଭେନ୍‌ସା କଲେଜିଏଟ୍‌କୁ ଗଲି । ଆଉ ନିୟମିତ ପ୍ରଥମ ସ୍ଥାନ ପାଇ ମୁଁ ଅନେକ ପୁରସ୍କାର ଓ ଶେଷରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନର ଶ୍ରେଷ୍ଠ ବୃତ୍ତି ପାଇ ରେଭେନ୍‌ସା କଲେଜକୁ ଗଲି । ସେଇଠାରେ କକେଇ ନିଜେ ପଢ଼ାନ୍ତି । ସେ ମୋର ସେଇ ଅବସ୍ଥାରେ ଜୀବନର ମାର୍ଗଦର୍ଶନ କରିଛନ୍ତି । ଅନେକ ଉଚ୍ଚ ଆଦର୍ଶରେ ସେ ମତେ ମୋର ଉଚ୍ଚବିଦ୍ୟାଳୟ ଓ କଲେଜ ସ୍ତରରେ ଉଦ୍‌ବୁଦ୍ଧ କରିଥିଲେ । ମୋର ମନେ ଅଛି ଏଇ ଅବସ୍ଥାରେ ସେ ପଣ୍ଡିତ ବାସୁଦେବ ମହାପାତ୍ରଙ୍କ ସଙ୍ଗେ ମତେ ପାଠ୍ୟ ବିଷୟରେ ଆଲୋଚନା କରିବାକୁ ଦେଇଥିଲେ ଓ ପଣ୍ଡିତ କରୁଣାକର କର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ବାସୁଦେବ ଦାଶ ଶର୍ମା, ପଣ୍ଡିତ ବାସୁଦେବ ରଥ ଶର୍ମା ଇତ୍ୟାଦିଙ୍କ ସମ୍ପର୍କରେ ଆସିବାର ସୁଯୋଗ ମତେ ଏଇ ଆଦ୍ୟ ଯୌବନରେ ମିଳିଲା । ଏତଦ୍‌ବ୍ୟତୀତ ଅଧ୍ୟାପକ ପି. ଏସ୍. ସୁନ୍ଦରମ୍, ଅଧ୍ୟାପକ ଡ଼. ଭି. ଜନ୍ ଇତ୍ୟାଦିଙ୍କ ଇଂରାଜୀ ପଢ଼ାଇବାରେ ମୁଁ ଅନୁପ୍ରାଣିତ ହୋଇଥିଲି, ଏବଂ ଏଇ ଅଧ୍ୟାପକମାନେ କକେଇଙ୍କର ସହକର୍ମୀ ହିସାବରେ ବେଳେ ବେଳେ ରାସ୍ତାରେ ବୁଲିଯାଉଥିବା ବେଳେ ମତେ ପଚାରନ୍ତି କିପରି ପଢ଼ାପଢ଼ି ହେଉଛି ବୋଲି । ପ୍ରାଣ୍ଟମାନଙ୍କ ଭିତରୁ ଡକ୍‌ଟର୍ ପ୍ରାଣକୃଷ୍ଣ ପରିଜା, ଡକ୍‌ଟର୍ ବଳଭଦ୍ର ପ୍ରସାଦ ଓ

ଶ୍ରୀଯୁକ୍ତ ମହେଶ ପ୍ରଧାନ କଲେଜଙ୍କୁ ଖୁବ୍ ଭଲ ପାଉଥିଲେ । ଏହାଛଡ଼ା ଗଣିତର ବଶିଷ୍ଟ ଅଧ୍ୟାପକ—ଶ୍ରୀଯୁକ୍ତ ବାମାଚରଣ ଦାସ, ଶ୍ରୀଯୁକ୍ତ ହରେନ୍ଦ୍ର ଗାଙ୍ଗୁଲି, ଡକ୍ଟର ରମାନାଥ ମହାନ୍ତି ଓ ଶ୍ରୀଯୁକ୍ତ ବ୍ରଜବନ୍ଧୁ ମିଶ୍ର ଇତ୍ୟାଦି ମୋ ଜୀବନକୁ ଅନେକ ପ୍ରଭାବିତ କରିଛନ୍ତି—କଲେଜ ସେମାନଙ୍କୁ ଖୁବ୍ ସମ୍ମାନ ଦେଇଥିଲେ ଓ ସେମାନେ ବି ତାଙ୍କୁ ଆଦର ଓ ସ୍ନେହରେ ଦେଖୁଥିଲେ । କଲେଜ ମୋର ନ୍ୟାୟ (Logic) କ୍ଲାସ୍ ନେବେନି ବୋଲି ସ୍ଥିର କରିବାରୁ ମୁଁ ଦର୍ଶନ ଓ ନ୍ୟାୟର ବଶିଷ୍ଟ ଅଧ୍ୟାପକ ଡକ୍ଟର ଦାମୋଦର ମିଶ୍ର, ଡକ୍ଟର ଗଣେଶ୍ୱର ମିଶ୍ର ଓ ଡକ୍ଟର ବଧାନାଥ ରଥ-ଏମାନଙ୍କ ସେକ୍ସନ୍‌ରେ ରହୁଥାଏ । କିନ୍ତୁ ମୁଁ ସୁବିଧା ପାଇଲେ କଲେଜଙ୍କୁ ଘରେ ବେଳବେଳେ ପ୍ରଶ୍ନ ପଚାରେ । ସେ ତ ଅତ୍ୟନ୍ତ ଉଚ୍ଚକୋଟିର ବିଦ୍ୱାନ ଥିଲେ । ହଠାତ୍ ଉତ୍ତର ଦେଇ ମତେ ବୁଝାଇ ଦିଅନ୍ତି । ଏହାଛଡ଼ା ତାଙ୍କର ଅନେକ ଛାତ୍ର ଓ ଛାତ୍ରୋପମ ଖ୍ୟାତନାମା ଅଧ୍ୟାପକ ମତେ ଖୁବ୍ ଉତ୍ସାହ ଓ ପ୍ରେରଣା ଦେଇଛନ୍ତି—ଯେପରି ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଡକ୍ଟର କୁଞ୍ଜବିହାରୀ ଦାଶ, ଡକ୍ଟର ବିଧୂଭୂଷଣ ଦାସ ଇତ୍ୟାଦି ।

ମୋର କେତୋଟି କଥା ମନେପଡ଼େ । ଥରେ ଯେତେବେଳେ ଡକ୍ଟର ପରିଜାଙ୍କର ଅବସର ପ୍ରାପ୍ତିର ସମୟ ହେଲା, ତାଙ୍କୁ ବିଦାୟ ଦେବାକୁ ରେଭେନ୍ସା କଲେଜର ଅଧ୍ୟାପକ ଓ ଛାତ୍ରମଣ୍ଡଳୀ ରୁଣ୍ଡ ହେଲେ ଆସେମ୍ବ୍ଲି ହଲ୍‌ରେ । କଲେଜଙ୍କ ପାଳି ଆସିଲା—ଦର୍ଶନର ପ୍ରଧାନ ଅଧ୍ୟାପକ ହିସାବରେ—ସେ କହିଲେ ତାଙ୍କର ଚିରାଚରିତ ଇଂରାଜୀ ଭାଷାରେ—Now that Professor Parija is going to be the Director of Agriculture for the state of Orissa, the immense potentialities of agriculture will be transformed into actualities" ଏ ବାକ୍ୟର ସମାପ୍ତି ସଙ୍ଗେ ସଙ୍ଗେ କରତାଳି ଧ୍ୱନିରେ ହଲ୍ ପ୍ରତିଧ୍ୱନିତ ହେଲା । ଆଜି ମନେପଡ଼େ, ମୋହିନୀବାବୁଙ୍କର ପରଲୋକଗମନରେ ଏକ ଶୋକସଭାରେ କଲେଜ ତାଙ୍କର ଗୁଣଗାନ କରିଥିଲେ ଓ ସେ ବକ୍ତୃତା ଏପରି ମର୍ମସ୍ପର୍ଶୀ ହୋଇଥିଲା ଯେ, ସମସ୍ତଙ୍କ ଆଖି ଛଳଛଳ ହୋଇ ଆସିଲା । ମୋର ମନେ ଅଛି—ଦିନେ ହଠାତ୍ ମୋହିନୀବାବୁ ଗୋଟିଏ ବଡ଼ କୁକୁରକୁ ସଙ୍ଗେ ନେଇ ରିକ୍ସା ଯୋଗେ ଆମର ଶଗଡ଼ଆସାହିରେ ଥିବା

ବାସଭବନରେ ପହଞ୍ଚିଲେ । ତାଙ୍କର ପହଞ୍ଚିଲା ମାତ୍ରକେ ମୁଁ କକେଇଙ୍କୁ ଖବର ଦେଲି, କକେଇ ଆସି ତାଙ୍କୁ ପ୍ରଣାମ କଲେ ଆଉ ଅତି ଗମ୍ଭୀର ଭକ୍ତିର ସହିତ ବସିବାପାଇଁ ଆମନ୍ତ୍ରଣ କଲେ । ସେ କିନ୍ତୁ ଗୋଟିଏ ସଦା କୁର୍ସିରେ ବସି ପଡ଼ିଲେ, ଆଉ ଘୁଞ୍ଚିଲେନି । ତା'ପରେ ସେ ହଠାତ୍ କହିଲେ—"ଦେଖ ରତ୍ନାକର, ଏଇ ଯେଉଁ ବହିଟି ମୁଁ ଆଣିଛି, ବଡ଼ ଉପାଦେୟ ବହି—ଯାର ନାଆଁ ହେଲା— "Existence of God" କିନ୍ତୁ ଏଥିରେ ମାକ୍‌କାବ (ଗ୍ରନ୍ଥକାର) ପ୍ରମାଣିତ କରିଛନ୍ତି ଯେ ଈଶ୍ୱର ନାହାନ୍ତି ! ବୁଝିଲ, ଏଇ ଯେ ଅପଲ ବହି, ଯାକୁ ତୁମେ ଦର୍ଶନର ପାଠ୍ୟପୁସ୍ତକ ତାଲିକାର ଅନ୍ତର୍ଭୁକ୍ତ କରିଦିଅ, ଖୁବ୍ ଭଲ ହବ । ଯଦି ତୁମେ ନପାର, ମତେ ପାଠ୍ୟକ୍ରମ ରଚନା ସମିତିର ସଦସ୍ୟ କରାଇ ଯାକୁ ପାଠ୍ୟପୁସ୍ତକ କରି ସ୍ୱୀକାର କରାଇବାରେ ମୋର ସାହଚର୍ଯ୍ୟର ମାର୍ଗ ପ୍ରଶସ୍ତ କର ।" ମୁଁ ସେଇଠି ଠିଆ ହୋଇ ସବୁ ଶୁଣି ଆଶ୍ଚର୍ଯ୍ୟ ହେଲି, ଏଡ଼େ ବଡ଼ ଦାର୍ଶନିକ ଯେ, ଯାଙ୍କର ଭଗବାନ୍‌ଙ୍କଠାରେ ବିଶ୍ୱାସ ନାହିଁ । ମୁଁ ତ ମାଟ୍ରିକୁଲେସନ୍ ସ୍ତରରେ ପଢ଼ୁଥିଲି ବେଳେ କକେଇଙ୍କ ପ୍ରେରଣାରେ ଶ୍ରୀ ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ ଇତ୍ୟାଦିଙ୍କ ସମଗ୍ର ଲେଖା ଓ ଶ୍ରୀମଦ୍‌ଭଗବଦ୍‌ଗୀତା, ଉପନିଷଦ୍ ଇତ୍ୟାଦି ପଢ଼ି ସାରିଥିଲି । ଯା ଛଡ଼ା କଲେଜରେ ପଢ଼ିବା ସଙ୍ଗେ ସଙ୍ଗେ ଆମ ଘର ପୁସ୍ତକାଗାର (କକେଇ ସବୁବେଳେ ବହି କିଣିବାରେ ତତ୍ପର ଥାଆନ୍ତି)ରୁ ମୁଁ ଦର୍ଶନର ପୁସ୍ତକ ସବୁ ପଢ଼ୁଥାଏ । ମୋର ମନରେ ମୋହିନୀବାବୁଙ୍କ କଥାରେ ଖୁବ୍ ଆଶ୍ଚର୍ଯ୍ୟ ଉପୁଜିଲା । କକେଇ କିଛି କହିଲେନି, କେବଳ ସ୍ମିତହାସ୍ୟରେ ତାଙ୍କୁ ନମସ୍କାରରେ ଗୁହାଁଳେ । ସେ କିଛି ସମୟ ଏହିପରି ଗୁହାଁବାରୁ ବୋଧହୁଏ ମୋହିନୀବାବୁଙ୍କୁ ଟିକିଏ ଅଡୁଆ ଲାଗିଲା—"ହିଁ, ଏ ବହିରେ ଅବଶ୍ୟ ଗୋଟିଏ ଦୃଷ୍ଟିକୋଣ ଦିଆଯାଇଛି ! ତେବେ ତୁମେ ତ ମାନିବନି !" ଯା କହି ସେ ବି ସ୍ମିତହାସ୍ୟରେ ବିଦାୟ ନେଲେ । ସେଇ ସମୟରେ କକେଇ ପଚାରିଲେ—"ଏ କୁକୁରଟି ଆପଣଙ୍କ ସଙ୍ଗେ ଆସିଥିଲା କି ?" ମୋହିନୀବାବୁ କହିଲେ—"ହିଁ, ଯେ ହେଲା dog, ଆଉ ଈଶ୍ୱରଙ୍କୁ ଇଂରାଜୀରେ କହନ୍ତି God କିନ୍ତୁ ଗୋଟିକୁ ଓଲଟାଇଲେ ଆରଟି । ଦେଖ ଭାଇ, ଅକ୍ଷର ସମାନ, ମୁଁ Godଙ୍କୁ ବିଶ୍ୱାସ କରେନାହିଁ, ତେଣୁ dogକୁ ବିଶ୍ୱାସ କରେ !" ଏ କଥାରେ ଦୁହେଁ ହସିଲେ । ଆଇ.ଏ. ପାଇଲି କକେଇ ମତେ ଓ ବି. ଏ. ଅନର୍ସରେ ମୁଁ ବିଶ୍ୱବିଦ୍ୟାଳୟରେ

ବୃତ୍ତି ପାଇଲି । କକେଇ ମତେ କେତେ ଉତ୍ସାହ ଦେଇ ମଣିଷ କଲେ — ମୁଁ ପ୍ରୟାଗ ବିଶ୍ୱବିଦ୍ୟାଳରେ ବୃତ୍ତିପାଇ ଏମ୍. ଏ. ପଢ଼ିଲି, ଆଉ ସେଠି ଏମ୍. ଏ.ରେ ଗଣିତରେ ପ୍ରଥମ ସ୍ଥାନ ଓ ପରେ (୧୯୫୩ ଓ ୧୯୫୭ରେ) ଡି. ଏ.ଏଚ୍.ଡ.ଓ.ଡ.ଏସ୍.ସି. ଉପାଧି ପାଇଲି ମୋର ଗବେଷଣା କାର୍ଯ୍ୟଲାଗି ମତେ ବିଶ୍ୱବିଖ୍ୟାତ ଗଣିତଜ୍ଞ ଟିଚମାର୍ଶ ଓ ଦାମନ୍ଜ୍ୱା (ଇଂରାଜୀ ଓ ଫରାସୀ) ପରୀକ୍ଷାକର ଖୁବ୍ ପ୍ରଶଂସା କରିଥିଲେ ମୋର ଗବେଷଣାର—ସେଥିରେ କକେଇ ଆନନ୍ଦିତ ହୋଇଥିଲେ ଓ ମତେ ଅଧିକ ଗବେଷଣା କାର୍ଯ୍ୟ କରିବାକୁ ଆଶୀର୍ବାଦ ଦେଇଥିଲେ ।

ମୋଠୁ ସଂସ୍କୃତର ଶ୍ଲୋକ ଇତ୍ୟାଦି ଶୁଣିବାକୁ ସେ ସବୁଦିନ ଭଲ ପାଉଥିଲେ । ମୁଁ ପ୍ରୟାଗରେ ଅଧ୍ୟାପକ ହେବାର ପୂର୍ବରୁ ଅତି କମ୍ ଦିନ ପାଇଁ ହରିକୁଦରେ ଥିବା ଇଂଜିନିୟରିଂ କଲେଜରେ ଗଣିତର ଅଧ୍ୟକ୍ଷ ରୂପେ ଯୋଗଦାନ କରିଥିଲି । କକେଇ ସେଇ ସମୟରେ ନାନାଙ୍କ ସଙ୍ଗେ ଆସିଥିଲେ, ଆଉ ମୋର ସଂସ୍କୃତ ଶ୍ଲୋକର ଆବୃତ୍ତି ଶୁଣି ଖୁବ୍ ଖୁସି ହେଲେ । ବିଶେଷକରି ସେ ଭଲ ପାଆନ୍ତି ପଣ୍ଡିତ ସଦାଶିବ ଦାଶ ଶର୍ମାଙ୍କ ଭାରତଜନନୀଙ୍କ ବନ୍ଦନା ରୂପେ ରଚିତ "ମତ୍ତମାତଙ୍ଗଲୀଳାପ୍ଳୁତଂ" ନାମକ ଦଣ୍ଡକ । ମୁଁ ତାକୁ ପୂର୍ଣ୍ଣରୂପେ ଆବୃତ୍ତି କରି ଶୁଣାଇଲେ ସେ ଖୁବ୍ ଆନନ୍ଦିତ ହୁଅନ୍ତି ।

କକେଇ ଖାଲି ମତେ ଯେ ମଣିଷ କଲେ ତା ନୁହେଁ, ସେ ମୋର ଚରିତ୍ରର ଉନ୍ନତି ଲାଗି ଶ୍ରୀଯୁକ୍ତ ବାସୁଦେବ ଦାସଙ୍କ ସଙ୍ଗେ ମୋର ପରିଚୟ କରାଇ ଦେଇଥିଲେ । ମୁଁ ତାଙ୍କୁ ଗୁରୁସ୍ଥାନୀୟ ବୋଲି ମାନେ । କକେଇ ତାଙ୍କୁ ଭଲକରି ଜାଣିଥିଲେ ଓ ବୁଝି ପାରିଥିଲେ ଯେ ସେ ମତେ ନୀତିଶିକ୍ଷା ଠିକ୍ ଦେଇ ପାରିବେ । ମୁଁ କଅଣ ସେ ସବୁ ନୀତିଶିକ୍ଷା ଠିକ୍ ଗ୍ରହଣ କରି ପାରିଲି ? ତେବେ କକେଇଙ୍କ ପ୍ରବନ୍ଧ-ପ୍ରକାଶରେ ସେ ସବୁ ନୀତିଶିକ୍ଷା ଦେଇଯାଇଛନ୍ତି । ଆଜି ଯେତେବେଳେ ତାଙ୍କର ସ୍ମୃତିରେ ମନପ୍ରାଣ ମୋର ଅଭିଭୂତ ହୋଇଯାଉଛି, ମନକୁ ମୋର ପାପ ଛୁଉଁଅଛି । ସତେ ମୁଁ କେତେଦୂର ନିଜକୁ ବଞ୍ଚିତ କଲି ! ତାଙ୍କଠୁ ସବୁକଥା ବୁଝିନେଇଥିଲେ ପ୍ରବନ୍ଧ-ପ୍ରକାଶ ମୋ ଲାଗି କେତେ ସରଳ ଓ ଉପାଦେୟ ହୋଇ ଥାଆନ୍ତା ।

କେତେଇ ଯେ ମତେ କେତେ ପ୍ରଭାବିତ କରିଥିଲେ, ତା'ର ମୁଁ କପରି କଳନା ଓ ବର୍ଣ୍ଣନା କରିବି ? ସବୁଠୁ ବଡ଼କଥା, ସେ ମୋର ଜୀବନର ସହଧର୍ମିଣୀ ପ୍ରାଣାଧିକା ପତ୍ନୀ କ୍ଷମା ଦେବୀଙ୍କର ଅତିଶୟ ଉପାସ୍ୟ ଥିଲେ, କେବଳ ମୋର ପିତାରୂପେ ନୁହେଁ, ଗୁରୁ ଓ ମନ୍ତ୍ରଦାତା ରୂପେ । କ୍ଷମାଦେବୀ ତାଙ୍କ ପାଖରେ ପଢ଼ିଥିଲେ, ଅନେକ କିଛି ଶିକ୍ଷା ପାଇଥିଲେ । ସେଇ ଶିକ୍ଷାର ଫଳରେ ଆଜ ଆମେ ଦୁହେଁ ତାଙ୍କର ବଂଶରେ ନିଜକୁ ଦାୟାଦରୂପେ ପାଇ, କର୍ତ୍ତବ୍ୟ ପରାୟଣ ହୋଇ ଦେଶର ଓ ବଂଶର ସେବାରେ ବ୍ରତୀ ହେବାଲାଗି ଦୃଢ଼ ପ୍ରତିଜ୍ଞ । କେତେଇଙ୍କୁ ମୋର ପୂଜ୍ୟ ଶ୍ୱଶୁର ଓ ଶାଶୁ ଖୁବ୍ ଭକ୍ତି ଓ ସ୍ନେହ ଦୃଷ୍ଟିରେ ଦେଖୁଥିଲେ । ସେମାନେ ବେଳେବେଳେ ତାଙ୍କୁ ସ୍ୱାସ୍ଥ୍ୟ ବିଷୟରେ ପଚାରନ୍ତି ଓ ମୋର ପୂଜ୍ୟ ଶ୍ୱଶୁର ଡକ୍ଟର ରାମଚନ୍ଦ୍ର ମହାପାତ୍ର ତାଙ୍କୁ ଔଷଧ ମଧ୍ୟ ଦିଅନ୍ତି । ସେ ଔଷଧ ଖାଇବାକୁ ଭଲ ପାଆନ୍ତିନି । ତାଙ୍କର ସମୟ ଉପରେ ଜୋର୍ । ଡକ୍ଟର ଭଗବତି ଆଚାର୍ଯ୍ୟ ମହାଶୟ ଓ ଡକ୍ଟର ଭାଗିରଥୀ ମିଶ୍ର ମଧ୍ୟ ତାଙ୍କୁ ବୁଝାନ୍ତି । ସେ ମାନନ୍ତିନି । ମୋ ଦେହ କିଛି ସାମାନ୍ୟ ଖରାପ ହେଲେ ହଠାତ୍ ଡାକ୍ତର ଡ଼ାକାଇବେ । ଖୁବ୍ ଔଷଧ-ପଥ୍ୟ କରାଇବେ । ମୋର ଡ଼େରିରେ ଶୋଇ ଡ଼େରିରେ ଉଠିବାକୁ ସେ ଚିଡ଼ୁଥିଲେ ବେଳେ-ବେଳେ । କହନ୍ତି—ଠିକ୍‌ସମୟକୁ ଖାଇଦେଇ ଶୋଇପାଅ । ଠିକ୍ ସମୟରେ ସବୁ କର ।"

ମୋର ପତ୍ନୀ କ୍ଷମାଦେବୀଙ୍କୁ ସେ ଯେମିତି ଆଶୀର୍ବାଦ କରୁଥିଲେ ଓ ସ୍ନେହ ଦେଇଥିଲେ, ସେମିତି ମୋର ପୁଅକୁ 'ଶିଶ୍ୱମ୍ବର' ଓ କନ୍ୟାକୁ 'କୁମୁଦିନୀ'—ନାମରେ ନିଜେ ବିଭୂଷିତ କରିଥିଲେ । ସେଇ ନାଆଁ ତାଙ୍କର ସ୍କୁଲରେ ଲେଖା ହେଲା ।

ହତଭାଗ୍ୟ ଆମେ, କେହି ତାଙ୍କର ଶେଷ କଥା, ଶେଷ ଆଶୀର୍ବାଦ ପାଇଲୁନି—ଶେଷ ଦେଖା ହୋଇଥିଲା ଯେତେବେଳେ ଆମେ ସମସ୍ତେ, କ୍ଷମାଦେବୀ, ମୁଁ, ପିଲାଏ ଯାଇଥିଲୁ ତାଙ୍କର ପରଲୋକ ଗମନର କିଛିଦିନ ଆଗରୁ । ସେ ଓ ମୁଁ ସାଙ୍ଗହୋଇ ପ୍ରାର୍ଥନା କରିଥିଲୁ, ତାଙ୍କ ନିଜଲେଖା ମନ୍ତ୍ରସବୁ ପଢ଼ିଥିଲି ମୁଁ । କେତେଇ ମୋର ଜବଲ୍‌ପୁର ଗ୍ରକଥା କଥାରେ ସନ୍ତୁଷ୍ଟ ଥିଲେ ଯେତେବେଳେ ତାଙ୍କୁ ମୁଁ ଜଣାଇଲି, ମୁଁ ପ୍ରଧାନ ଅଧ୍ୟାପକ ହେଲି ବୋଲି, ସେ ମତେ ଅଶେଷ ଆଶୀର୍ବାଦ ଦେଲେ ଏକ

ଘର୍ଷ ପଥରେ । ମୋର ଉତ୍କଳ ବିଶ୍ୱବିଦ୍ୟାଳୟକୁ ଯିବା କଥା ପ୍ରଧାନାଧ୍ୟାପକ ହୋଇ, ସେ ବିଶେଷ ଭାବ ନାହାନ୍ତି । ଅନ୍ୟଲୋକେ ମୋ'ର ବିଦେଶ ରହଣୀ ବିରୁଦ୍ଧରେ ତାଙ୍କୁ କହନ୍ତି ଓ ତାଙ୍କ ମନକୁ ଆନ୍ଦୋଳିତ କରନ୍ତି । ମତେ ସେ ପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି ସବୁକାଳେ—ସେ ଖାଲି କୁହାନ୍ତି—ମଣିଷ ହୁଅ; ଜ୍ଞାନ ଆହରଣରେ ବ୍ରତୀ ହୁଅ, ନମ୍ର ହୁଅ ସରଳ ହୁଅ । ଅଧୀର ନ ହୋଇ କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅ ।" ଏ ଗୁରୁମନ୍ତ୍ର ଯାହାଙ୍କଠୁ ପାଇଥିଲି, ସେଇ ମୋର ପରମାରାଧ୍ୟ ଦେବୋପମ ଅମର ଆତ୍ମାଙ୍କୁ ଆତ୍ମଜରୂପେ ଏଇ ମୋର ଅର୍ଘ୍ୟ, ପ୍ରଣତି ଓ ନୈବେଦ୍ୟ ।

---

# ସ୍ୱର୍ଗୀୟ ପତି ମହାଶୟ—

**ଶ୍ରୀ ଭିକାରୀଚରଣ ମୁଦୁଲି**
ପ୍ରଧାନ ଶିକ୍ଷକ, ରତ୍ନାକରବିଦ୍ୟାମନ୍ଦିର

ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତି ଜଣେ ଶିକ୍ଷାପ୍ରେମୀ ବ୍ୟକ୍ତି ଥିଲେ । ଶିକ୍ଷାର ବିକାଶପୂର୍ବକ ଉଚ୍ଚ ନୈତିକବୋଧର ଜାଗରଣ କରି ଜାତିକୁ ଉଚ୍ଚ ମାନବିକତାର ସ୍ତରକୁ ଉନ୍ନୀତ କରିବା ତାଙ୍କର ଏକାନ୍ତ ଲକ୍ଷ୍ୟ ଥିଲା । ଉକ୍ତ ଲକ୍ଷ୍ୟ ସାଧନ ନିମିତ୍ତ ସେ କଲେଜରେ ଛାତ୍ର ଥିବା-ବେଳେ କଟକ ଜିଲ୍ଲାର ଭେଲିଦିଆ ମି.ଇ. ସ୍କୁଲର ପରିଚାଳନା ସହ ସମ୍ପୃକ୍ତ ଥିଲେ । ଶିଦ୍ଧେଶ୍ୱରପୁରର ଗୋପାଳସ୍ମୃତି ବିଦ୍ୟାପୀଠ ଓ ବରିବାଟିର ମି. ଇ. ସ୍କୁଲ ତଥା ହାଇସ୍କୁଲ ଉକ୍ତ ଲକ୍ଷ୍ୟରେ ସ୍ଥାପନ କରିଥିଲେ । ୧୯୫୮ ମସିହାରେ ବରିବାଟି ହାଇସ୍କୁଲରେ ମୋର କର୍ମମୟ ଜୀବନର ସୂତ୍ରପାତ ହେଲା । ସେତେବେଳେ ସ୍ୱର୍ଗୀୟ ପତି ମହାଶୟ ସ୍କୁଲ ପରିଚାଳନା କମିଟିର ସ୍ଥାୟୀ ସଭାପତି ଥିଲେ । ଅନୁଷ୍ଠାନରେ ଶିକ୍ଷକତା କରିବା ଦିନଠାରୁ ବହୁବାର ମୁଁ ତାଙ୍କ ସମ୍ପର୍କରେ ଆସିଛି ଓ ଅନେକ କଥା ଶିକ୍ଷା କରିଛି । ତନ୍ମଧ୍ୟରୁ ନିମ୍ନରେ କେତୋଟିର ଆଭାସ ଦିଆଗଲା ।

ଗୋଟିଏ ଦିନର କଥା । ସେତେବେଳେ ମୁଁ ସ୍କୁଲରୁ ଛୁଟି ନେଇ ରାଧାନାଥ ଟ୍ରେନିଂ କଲେଜରେ ଅଧ୍ୟୟନ କରୁଥାଏ । ମୋ ପାଖକୁ ହଠାତ୍ ଜଣେ ଲୋକ ହାତରେ ତାଙ୍କୁ ଦେଖା କରିବା ନିମିତ୍ତ ଖବର ପଠାଇଲେ । ମୁଁ ଯାଇଁ ସନ୍ଧ୍ୟାସୁଦ୍ଧା ଉପସ୍ଥିତ ହେଲି । ପତି ମହାଶୟ ଅଗଣାରେ ଏକ ଚୌକି ଉପରେ ବସିଥା'ନ୍ତି । ମୁଁ ପହଞ୍ଚିବା ମାତ୍ରେ ସ୍କୁଲର ଜଣେ କର୍ମଚାରୀ ନିଯୁକ୍ତିରେ ନିୟମର ବ୍ୟତିକ୍ରମ କରାଯାଇ ଥିବା ଦର୍ଶାଇ ମୋତେ ତିରସ୍କାର କଲେ ଏବଂ ସ୍କୁଲ ପରିଚାଳନା ସହ ସମସ୍ତ ସମ୍ପର୍କ ତୁଟାଇ ଦେବେ ବୋଲି କହି ଗଭୀର ଦୁଃଖ ପ୍ରକାଶ କଲେ । କେବଳ ସେତିକି ନୁହେଁ; ତାଙ୍କର କେଉଁ ଦୁର୍ଭାଗ୍ୟକୁ ସେ କାହିଁକି ସ୍କୁଲର ପରିଚାଳନା ସହ ନିଜକୁ ସମ୍ପୃକ୍ତ ରଖିଲେ—ଏହା କହି ନିଜର ଦୁଇ

ହାତରେ ଅତି ଜୋରରେ ଗୁସ୍ତୁଡ଼ା ମାରିଦେଲେ । ମୁଁ ସେତେବେଳେ ଭୟରେ କାଷ୍ଠପିତୁଳାପରି ଦଣ୍ଡାୟମାନ ହୋଇ ଗୃହଁ ରହିଥିଲି । କ'ଣ କହିବି, କପରି ଶୀଘ୍ର ସେଠାରୁ ଚାଲିଯିବି—ଏଇ କଥା ଚିନ୍ତା କରୁଥିଲି । ଅନନ୍ୟୋପାୟ ହୋଇ କର୍ମଶୃଙ୍ଖଳା ନିୟୁକ୍ତିରେ ଅନିୟମିତ ଢେଇଷ୍ୟକୁ ଦୂର କରିବା ନିମିତ୍ତ କହି ଅସ୍ମମାନଙ୍କର ତାଦୃଶ ଅନିୟମିତ କାର୍ଯ୍ୟ ନିମିତ୍ତ କ୍ଷମା ଭିକ୍ଷା କଲି । ମୋତେ ଦୁଇଦିନ ପରେ, ଏ ସମ୍ବନ୍ଧରେ କ'ଣ କଲି ଝବର ଦେବାକୁ କହିଲେ । ମୁଁ ତା' ପରଦିନ ଆସି ଏ ସମ୍ପର୍କରେ ଥିବା ନିୟମ ବିରୁଦ୍ଧ କଥା ଦୂରକରି ତାଙ୍କୁ ଏ ଖବର ଦେବାରୁ ଆଶ୍ୱସ୍ତ ହୋଇଥିଲେ । ସ୍କୁଲ ପରିଚାଳନା ସମ୍ପୂର୍ଣ୍ଣରୂପେ ଶିକ୍ଷାନୀତି ଉପରେ ପର୍ଯ୍ୟବସିତ ହେବା ଉଚିତ ବୋଲି ମୋତେ ବୁଝାଇଥିଲେ । ଗୋଟିଏ ଦୃଷ୍ଟାନ୍ତରୁ ସେ କେତେ ନୀତିବାନ୍ ଥିଲେ ତାହାର ପ୍ରମାଣ ମିଳେ ।

ପଣ୍ଡିତ ମହାଶୟଙ୍କର କଠୋର ଅଧ୍ୟବସାୟ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥାଏ । ବାର୍ଦ୍ଧକ୍ୟାବସ୍ଥାରେ ଦୃଷ୍ଟି ଶକ୍ତି ହ୍ରାସହେବା ଫଳରେ ପ୍ରଚକ୍ଷୁ ଓ ଶକ୍ତିଶାଳୀ ଯବକାଚ ବ୍ୟବହାର କରି ସମ୍ବାଦ ପତ୍ର ପଠନ, ପ୍ରବନ୍ଧ ଲେଖନ ଆଦି କର୍ମ ଅତି କଷ୍ଟରେ ସମାପନ କରନ୍ତି । ଥରେ ଗୋଟିଏ ପ୍ରବନ୍ଧକୁ ଉତ୍ତମରୂପେ ନକଲ କରିବା ନିମିତ୍ତ ମୋ ପାଖକୁ ଖବର ପଠାଇଲେ । ଖବରୁ ପାଇ ମୁଁ ଯଥା ସମୟରେ ଉପସ୍ଥିତ ହେଲି । କିନ୍ତୁ ସେ ଦିନ ପ୍ରବନ୍ଧଟିର ଲେଖା ଶେଷ ହୋଇ ପାରି ନାହିଁ । ତେଣୁ ଦୁଇଦିନ ପରେ ଆସି ଶେଷ କରିଦେବାକୁ କହି ଫେରି ଆସିଲି । କିନ୍ତୁ ସ୍କୁଲ କର୍ମରେ ବ୍ୟସ୍ତ ଥିବାରୁ ନିର୍ଦ୍ଦିଷ୍ଟ ଦିନ ନ ଯାଇ ଚାରି ପାଞ୍ଚ, ଛ'ଦିନ ପରେ ଯାଇଁ ଉପସ୍ଥିତ ହେଲି । ଦେଖିଲି ପଣ୍ଡିତ ମହାଶୟ ମୋତେ ଅପେକ୍ଷା ନ ରଖି ଅନ୍ୟ କାହାଦ୍ୱାରା ପ୍ରବନ୍ଧଟିର ଲେଖା କାର୍ଯ୍ୟ ଶେଷ କରି ଦେଇଛନ୍ତି । ମୁଁ ଯଥା ସମୟରେ ନ ଯାଇ ଥିବାରୁ ଦୁଃଖିତ ହେଲି । ଏଥିରୁ ଜାଣିଲି—କୌଣସି କର୍ମ ଶେଷ କରିବା ନିମିତ୍ତ ସେ କାହାରି ଉପରେ ଅପେକ୍ଷା ନ ରଖି, ତାହା ଯେପରି ତୁରନ୍ତ ଶେଷହୁଏ, ସେଥିପ୍ରତି ସେ ସଜାଗ ଥିଲେ ।

ସଭା, ସମିତିରେ ଯୋଗ ଦେବା ସମୟ ପ୍ରତି ସେ ବିଶେଷ ଧ୍ୟାନ ଦେଉଥିଲେ । ମୋର ସ୍କୁଲରେ ଦଶବର୍ଷର କାର୍ଯ୍ୟକାଳ ମଧ୍ୟରେ ପରିଚାଳନା କମିଟିର କୌଣସି ବୈଠକ ଦିନ ଦୁଇ, ତିନି ମିନିଟ୍

ଜୀବନରେ ମୁଁ ତାଙ୍କୁ ଉପସ୍ଥିତ ହେବାର ଦେଖିନାହିଁ ! ସେ ସର୍ବଦା କର୍ତ୍ତବ୍ୟ ପରାୟଣ ଥିଲେ ଓ ଅନ୍ୟକୁ ସେହି ବ୍ରତରେ ଦୀକ୍ଷିତ କରାଇବା ନିମିତ୍ତ ସମୟ ଓ ସୁଯୋଗ ଅନୁସାରେ ଉପଦେଶ ପ୍ରଦାନ କରୁଥିଲେ । କଥା ପ୍ରସଙ୍ଗରେ ଉପଦେଶ ଦେବାକୁ ଯାଇଁ ମୋତେ ଥରେ କହିଥିଲେ "ତୁମେ ନିଜିକର କର୍ତ୍ତବ୍ୟ କରିଯାଅ । ତୁମର କିଛି ଅସୁବିଧା ହେବନାହିଁ ।" ଏ କଥା ଅଦ୍ୟାବଧି ମୋର ସ୍ମରଣ ରହିଛି ।

ବାର୍ଦ୍ଧକ୍ୟ ଅବସ୍ଥାରେ ଶାରୀରିକ ଦୁର୍ବଳତା ସତ୍ତ୍ୱେ ସେ ତାଙ୍କର ପ୍ରିୟକର୍ମ ଅଧ୍ୟୟନ, ଲିଖନ ଆଦିରୁ ବିରତ ହୋଇ ନ ଥିଲେ । ଏ ସମ୍ବନ୍ଧରେ ପ୍ରଶ୍ନ କରିବାରେ ସେ ଏକ ସରଳ ଉତ୍ତର ଦେଇଥା'ନ୍ତି— 'କେବଳ ମନବଳ ଦେଇ ମୁଁ ଯାହା କିଛି କରୁଛି ।' ଏ ପ୍ରସଙ୍ଗରେ ଅନ୍ୟ ଏକ କଥାର ଉଲ୍ଲେଖ କରାଯାଇ ପାରେ । ମାଛ, ମାଂସ, ଦୁଗ୍ଧ, ଘୃତ ଆଦି ପୁଷ୍ଟିକାରକ ଖାଦ୍ୟ ଶାରୀରିକ ଶକ୍ତି ନିମନ୍ତେ ଆହାର କରାଯାଇ ଥାଏ । କିନ୍ତୁ ପଣ୍ଡିତ ମହାଶୟ ଏ ସବୁ ଖାଦ୍ୟର ଧା'ର ଧାରନ୍ତି ନାହିଁ । ତାଙ୍କର ପ୍ରିୟ ଖାଦ୍ୟ ଭିତରେ ପଖାଳଭାତ, ନିମ୍ବପିତା, ପଣସକଟା, କଞ୍ଚାଲଙ୍କା, ପିତାଶାଗ, ଖଟା ଆଦି ପ୍ରଧାନ । ଏ ସାଧାରଣ ଆହାରଣ କରି ସେ ପ୍ରଫୁଲ୍ଲ ମନରେ ନିଜକୁ ଯେପରି କର୍ମନିରତ ରଖିପାରୁଥିଲେ ତାହା ଚିନ୍ତାକଲେ ଭାରି ଆଶ୍ଚର୍ଯ୍ୟ ଲାଗେ । ତେବେ ଏହା ପଛରେ ତାଙ୍କର ଅପୂର୍ବ ମନବଳ କାର୍ଯ୍ୟ କରିଥାଏ । ମନବଳ ଯେ କେବଳ ଖାଦ୍ୟ ଉପରେ ନିର୍ଭର କରେ ତାହା ନୁହେଁ, ଏହା ବ୍ୟକ୍ତିର ଚରିତ୍ରବଳ ତଥା ସାତ୍ତ୍ୱିକତା ଉପରେ ନିର୍ଭର କରିଥାଏ । ସ୍ୱର୍ଗତଃ ପଣ୍ଡିତ ମହାଶୟ ଏହା ପ୍ରମାଣ କରି ଯାଇଛନ୍ତି ।

ତାଙ୍କ ସମ୍ବନ୍ଧ କୌଣସି କଥା ଆଲୋଚନା କରିବାବେଳେ ଅନେକ ଶିକ୍ଷା ମିଳିଥାଏ । ଏହା ବ୍ୟକ୍ତିତ ତାଙ୍କର ଆଚରଣ, ଚାଲିଚଳନ ଆଦି ବହୁ ଉଚ୍ଚ ଆଦର୍ଶରେ ପରିକଳ୍ପିତ । ସେଗୁଡ଼ିକର ଗୋଟି ଗୋଟି କରି ସୂଚନା ଦେବା ଏଠାରେ ସମ୍ଭବ ନୁହେଁ । ମୋଟ ଉପରେ କହିବାକୁ ଗଲେ ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପଣ୍ଡିତ ବିବିଧ ରତ୍ନର ଆକର ଥିଲେ । ତାଙ୍କର ସୁଦୀର୍ଘ ଜୀବନର ପରିସର ମଧ୍ୟରେ ସେ ଜଣେ ବିଶିଷ୍ଟ ଦାର୍ଶନିକ, ଲେଖକ, ବକ୍ତା, ଶିକ୍ଷାବିତ୍, ସମାଜସଂଗଠକ ତଥା ସଂସ୍କାରକ ଭୂମିକାରେ ଏହାକୁ ଅକ୍ଷରେ ଅକ୍ଷରେ ପ୍ରତିପାଦନ କରିଅଛନ୍ତି ।

ସ୍ୱର୍ଗୀୟ ପଣ୍ଡିତମହାଶୟଙ୍କର ଗୀତା ତତ୍ତ୍ୱ ପ୍ରତି ପରମ ଶ୍ରଦ୍ଧା ଥିଲା । ଫଳରେ ତାଙ୍କର ଗ୍ରନ୍ଥ ସମାଜରେ ସୁପରିଚିତ 'ଗ୍ରାମ୍ୟ ଜୀବନ' ପ୍ରବନ୍ଧରେ ଗୀତା ଶ୍ଳୋକର ଗୋଟିଏ ପଂକ୍ତି—କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ—ପ୍ରତିଧ୍ୱନିତ ହୋଇଛି । ଅନାସକ୍ତ ଭାବରେ କର୍ମ କରିବାକୁ ସେ ନିଜ ଜୀବନରେ ଏକ ବ୍ରତ ବୋଲି ଧରି ନେଇଥିଲେ ।

---

# ସ୍ୱର୍ଗୀୟ ପତିଙ୍କୁ ମୋର ପତ୍ର

ଅଡ଼ଂଶ ଶାସନ,
ଜି: କଟକ

ହେ ମୋର ପ୍ରିୟ ସାଥୀ ପତି ମହାଶୟ,

ଆଜି ପୁଣି ତମ କଥା ମନେ ପଡ଼ିଗଲା, ମନେ ପଡ଼ିଗଲା ତୁମର କେତେକ ଆଶ୍ୱାସନା ବାଣୀ । ତମେ ପରା ହୋଲି ପୂର୍ଣ୍ଣିମୀରେ ବନ୍ଧୁ ମିଳନର ଆୟୋଜନ କରିଥିଲ ତୁମ ଘର ପ୍ରଫେସର ପଡ଼ାରେ ? ତୁମେ ଇହ ସଂସାରରୁ ବିଦାୟ ନେବାର ପୂର୍ବ ବର୍ତ୍ତୀ ପୂର୍ଣ୍ଣିମୀରେ ଆମ୍ଭେମାନେ ଯେ କେତେଜଣ ଏକତ୍ରିତ ହୋଇଥିଲୁ, ସେମାନଙ୍କ ମଧ୍ୟରୁ ମୋର ସଂସାରିକ ଜୀବନ ଯାତ୍ରା ବିଷୟ ଶୁଣି ମୋତେ କହି ନ ଥିଲକି—ତୁମେତ କର୍ମଠ ଅଛ, ଏତେ ଭାବନା କାହିଁକି ?—ଏହି ଆଶ୍ୱାସନା ବାଣୀ ମୋର ହୃଦୟରେ ଆଜି ଜାଗ୍ରତ ହୋଇ ରହିଛି ।

ମନେ ପଡ଼େ—ଆଜି ତମର ପୂର୍ବସ୍ମୃତି । ତମେ ଓ ଆମେ କେତେଜଣ ମାଇନର ପରୀକ୍ଷାରେ ଭିନ୍ନ ଭିନ୍ନ ଶିକ୍ଷାଳୟରୁ ଉତ୍ତୀର୍ଣ୍ଣ ହୋଇ କଟକ ପ୍ୟାରିମୋହନ ଏକାଡ଼େମୀର ୪ର୍ଥ ଶ୍ରେଣୀରେ (ବର୍ତ୍ତମାନ ୮ମ) ନାମ ଲେଖାଇଲୁ । ଆମ୍ଭମାନଂକ ମଧ୍ୟରେ ଖୁବ୍ ପ୍ରତିଯୋଗିତା ଚାଲିଲା । କିନ୍ତୁ ତମକୁ କେହି ହଟାଇ ପାରିଲୁ ନାହିଁ । ଆମ୍ଭେମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ବିଷୟରେ ୧ମ ସ୍ଥାନ ଅଧିକାର କଲେ ମଧ୍ୟ ମୋଟଉପରେ ତମେ ହିଁ ସବୁ ବିଷୟର ନମ୍ବର ସମିଶ୍ରଣରେ ପ୍ରଥମ ହେଉଥିଲ ।

ଏହିପରି ଭାବେ ପ୍ରଥମ ଶ୍ରେଣୀ (ବର୍ତ୍ତମାନ ୧୧ଶ) ପର୍ଯ୍ୟନ୍ତ ଚାଲିଲା । ୧ମ ଶ୍ରେଣୀରେ ଥାଇ ଆମ୍ଭେମାନେ ସେହି ବର୍ଷଠାରୁ ପ୍ୟାରିମୋହନଙ୍କ ଶ୍ରାଦ୍ଧ ଦିବସ ପାଳନ କରିବାକୁ ଆରମ୍ଭ କଲୁ । ସେତେବେଳେ ସେ ବିଦ୍ୟାଳୟରେ ସ୍ୱର୍ଗୀୟ ନିମାଇଚରଣ ପଟ୍ଟନାୟକ ଥିଲେ ପ୍ରଧାନ ଶିକ୍ଷକ । ତାଙ୍କୁ ସରକାରଙ୍କ ପକ୍ଷରୁ ଡେପୁଟୀ କଲେକ୍ଟର ହେବାପାଇଁ ଡାକରା ଆସିଲା । ସେଥିରେ

ଛାତ୍ରମାନେ ବିଶେଷତଃ ୧୨ ଶ୍ରେଣୀର ଛାତ୍ରମାନେ ବିବ୍ରତ ହୋଇ ପଡ଼ିଲେ । ଶୁଭକ୍ଷଣରେ ତା ପେନ୍ଦି ବର୍ଷ ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ଆଦର୍ଶ ଶ୍ରୀଯୁକ୍ତ ପ୍ୟାରିମୋହନଙ୍କ ସଂପର୍କରେ ଉତ୍କଳମଣି ଗୋପବନ୍ଧୁଙ୍କର ହୃଦୟସ୍ପର୍ଶୀ ବକ୍ତୃତାରେ ଅଭିଭୂତ ହୋଇ ନମାଇଁବାବୁ ସରକାରଙ୍କ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କଲେ ଏବଂ ଆଜୀବନ ଉକ୍ତ ସ୍କୁଲରେ ରହିବା-ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସେହି ବକ୍ତୃତାରେ ଆମ୍ଭେମାନେ ଉତ୍ସାହିତ ହୋଇ ପ୍ୟାରିମୋହନଙ୍କ ଶ୍ରାଦ୍ଧବାର୍ଷିକ ପାଳନ କରିବାକୁ ଉଦ୍ୟତ ହେଲୁ । ଏଥିରେ ତମେ ଯେଉଁ ସକ୍ରିୟ ସହଯୋଗ କରିଥିଲ, ତାହା ତମର ମନେ ଅଛି କି ?

ଗ୍ରୀଷ୍ମ ସମୟରେ ସ୍କୁଲ ହେଉଥିଲା ସକାଳୁଆ । ତମେ କେତେ ରାତିରୁ ଉଠ କେଜାଣି ? ତମ ଗାଁ ବରିବାଟୀ ନିକଟ ନଈ ଉପାରୁ ଚାଲି ଚାଲି ଆସ ଏବଂ ଠିକ୍ ବେଳେ ସ୍କୁଲରେ ହେଉଅ । ଛୁଟି ପରେ ଉଦୁକୁଣ୍ଡିଆ ଦ୍ୱିପ୍ରହର ଖରାରେ ଘରକୁ ଫେରି ଯାହାକ କଟକଠାରୁ ପ୍ରାୟ ୫.୦ ମାଇଲ ହେବ । ଅର୍ଥାଭାବ ହେତୁ ପୋଷାକ ମଧ୍ୟରେ ପିନ୍ଧିଥିବା ଖଣ୍ଡିଏ ଧୋତି ଓ କାନ୍ଧରେ ପଡ଼ିଥିବା ଗୋଟିଏ ଶାର୍ଟ ବା କୁର୍ତ୍ତା ପତଳା ଚଦର ଏବଂ ଅଣ୍ଟାରେ ଗୁଡ଼ାହୋଇ ଥିବା ଖଣ୍ଡିଏ ଝହାଣ୍ଡି ଦେଶୀ ଗାମୁଛା ଏବଂ ହାତରେ ବହି ଓ ଖାତାଗୁଡ଼ିକ । ବାଟରେ ଗାଧୋଇ ଓଦା ଗାମୁଛା ମୁଣ୍ଡରେ ପକାଇ ଘରେ ପହଞ୍ଚ ପ୍ରାୟ ଅପରାହ୍ଣ ଗୋଟିକ ପରେ । ଖାଦ୍ୟ ପଖାଳ ଓ ଆମ୍ବ ଚଟଣୀ, ଯେଉଁ ଆମ୍ବ ସଡ଼କରୁ ଗୋଟେଇ ନେଇଥାଅ । ଏ ପ୍ରକାର କଷ୍ଟ ସହି ମଧ୍ୟ ସ୍କୁଲରେ ଯେଉଁ ପ୍ରଥମ ସ୍ଥାନ ଅଧିକାର କରିଥାଅ ତାହାହିଁ ବଜାୟ ରହେ । ତୁମର ଏ ସବୁ କଥା ଯେତେବେଳେ ମୁଁ ମନେ ପକାଏ ସେତେବେଳେ 'ଗୀତା'ର 'ଦୁଃଖେଷ୍ୱନୁଦ୍ୱିଗ୍ନମନା'ର ତୁମେ ଛାତ୍ରାବାସରେ ଥିଲ ଜ୍ୱଳନ୍ତ ଆଦର୍ଶ ବୋଲି ଅନୁଭବ କରେ ।

ଛାତ୍ରଜୀବନରେ ତୁମର ଓ ମୋର ଘନିଷ୍ଠତା ଥିଲା ୭ବର୍ଷ । ସ୍କୁଲରେ ୪ବର୍ଷ ଓ କଲେଜରେ ତିନିବର୍ଷ । ଏହି ଛ'ବର୍ଷ ମଧ୍ୟରେ ଆମ୍ଭମାନଙ୍କ, ମଧ୍ୟରେଯେଉଁ ସ୍ନେହ, ପ୍ରୀତି ଓ ଅନୁରାଗ ଥିଲା, ତାହା କିଏ ଭୁଲି ପାରିବ ତୁମେ ଭୁଲି ନ ଥିଲ ଓ ମୁଁ ମଧ୍ୟ ଭୁଲି ନାହିଁ । ଦୋଳ ପୂର୍ଣ୍ଣିମୀରେତମହାଘ ତମ ଘରେ ସାଥିମିଳନ ଉତ୍ସବ ହିଁ ତାର ନିଦର୍ଶନ ।

ମନେ ଅଛି କି ତମର ବିବାହୋତ୍ସବ ? ତମେ ନଈ ଉପାରୁ

ଆସି ସତ୍ୟବାଦୀରେ ପହଞ୍ଚିଲି । ମୁଁ ସେତେବେଳେ ସତ୍ୟବାଦୀ ଆଦର୍ଶ ବିଦ୍ୟାଳୟରେ ଜଣେ ଶିକ୍ଷକ । ସେଠାରୁ ଛାତ୍ର ଓ ଶିକ୍ଷକମାନଂକ ସମ୍ମତି ବ୍ୟାହାରରେ ଉତ୍କଳମଣି ଗୋପବନ୍ଧୁଙ୍କ ଘର ଷୁଆଣ୍ଡୋକୁ ଯାତ୍ରା କଲୁ । ବିବାହ ଉତ୍ସବ ଅନୁଷ୍ଠିତ ହେଲା । ତୁମେ ଜଣେ ଦର୍ଶନ ଶାସ୍ତ୍ରବିତ୍ ଏବଂ ପଣ୍ଡିତ ନୀଳକଣ୍ଠ ମଧ୍ୟ ଜଣେ ଦର୍ଶନଶାସ୍ତ୍ରବେତ୍ତା । ବିବାହ କର୍ମରେ କୁକର୍ମ ବେଦୀରେ ଯାହା ଘଟିଗଲା ସେ କଥା ତମର ମନେ ଅଛି କି ? ଦାସେ ଆପଣେ ବିପତ୍ନୀକ । ତେଣୁ ତାଙ୍କର ଜ୍ୟେଷ୍ଠଭାଇ ଶ୍ରୀଯୁକ୍ତ ନାରାୟଣ ଦାଶ ଓ ତାଙ୍କର ପତ୍ନୀ ହୋଇଥିଲେ କନ୍ୟାକର୍ତ୍ତା ଓ କନ୍ୟାକର୍ତ୍ତ୍ରୀ । ଯେତେବେଳେ ତମର ଦେଠେଇଶାଶୁ ପଇଡ଼ ଜଳରେ ତମର ପାଦ ଧୋଇ ଦେବାକୁ ଚାହିଁଲେ ସେତେବେଳେ ତମେ ପ୍ରତିବାଦ କରି ନ ଥିଲ କି ? କିନ୍ତୁ ନୀଳକଣ୍ଠଙ୍କ ଯୁକ୍ତିରେ ଆଶ୍ୱାସିତ ହୋଇ ଉକ୍ତ କାର୍ଯ୍ୟ ସଂପାଦନ କରିବାକୁ ଅନୁମତି ଦେଇ ନ ଥିଲ କି ?

ପତ୍ରଟି ଦୀର୍ଘ ହୋଇ ପଡ଼ିବ ବୋଲି ଭାବି ଆଉ ବିଶେଷ କିଛି ଲେଖୁନାହିଁ । ବାସ୍ତବରେ ଯଦି ସମୟ ଓ ସୁବିଧା ମିଳେ ତେବେ ଅନ୍ୟାନ୍ୟ ପ୍ରସଙ୍ଗ ତୁମର ମନେ ପକେଇ ଦେବି । ନଚେତ୍ ସେହି ଅମର ଧାମକୁ ଗଲେ ତମକୁ ସାକ୍ଷାତ୍ କରି ସବୁ କଥା ମନନ ପକେଇ ଦେବି ।

। ଇତି ।

ତମର ଶ୍ରଦ୍ଧେୟ ସାଥି

**ଶ୍ରୀ ଅଚ୍ୟୁତାନନ୍ଦ ମିଶ୍ର ।**

# ମୋର ପଡ଼ୋଶୀ

ଡାକ୍ତର ମୋହିଉଦ୍ଦିନ୍ ଖାଁ ପରମହଂସ,

ସ୍ୱର୍ଗୀୟ ପଣ୍ଡିତ ମହାଶୟଙ୍କ ଜନ୍ମ ମୋର ପଡ଼ୋଶୀ ଗ୍ରାମରେ । ମାନବିକତାର ଶୀର୍ଷ ସ୍ଥାନ ଅଧିକାର କରି ସେ ସଂସାର ତ୍ୟାଗ କରିଛନ୍ତି । ମୋର ପ୍ରତିବେଶୀ ହିସାବରେ ସେ ଚିର ପରିଚିତ ।

ସେ ଶିକ୍ଷାର ଆଗ୍ରହୀ ଏପରି ଥିଲେ ଯେ ତାଙ୍କ ଶିକ୍ଷା ଜୀବନ ଘଟଣା ଶୁଣିଲେ ମନେ ହୁଏ ଅନ୍ୟ କେହି ଶିକ୍ଷାର୍ଥୀ ଏପରି ଦୁଃଖ କଷ୍ଟ ସହ୍ୟ କରି କେବେହେଁ ଶିକ୍ଷା କ୍ଷେତ୍ରରେ ଆଗେଇ ପାରି ନ ଥାନ୍ତା । କପରି ଦୁଃଖ କଷ୍ଟ ସହି ବିଦ୍ୟାର୍ଜନ କରି ମନୁଷ୍ୟ ଭବିଷ୍ୟତ ଜୀବନକୁ ସୁଖମୟ କରିପାରେ ଓ ସୁନାମର ପାତ୍ର ହୋଇପାରେ ସେ ବିଷୟରେ ସେ ଜନସାଧାରଣଙ୍କର ଆଖି ଖୋଲି ଦେଇଛନ୍ତି ।

ବିଦ୍ୟାର୍ଜନ ସଙ୍ଗେ ସଙ୍ଗେ ନିଜର ବ୍ୟକ୍ତିତ୍ୱ ବଜାଏ ରଖିଥିଲେ । ଓ ସୁଆଚରଣ, ଆତ୍ମନିର୍ଭରଶୀଳତା, ସ୍ୱାବଲମ୍ବନ ମୀତି ଇତ୍ୟାଦି ସଦ୍‌ଗୁଣାବଳୀର ଅନୁସରଣ କରୁଥିଲେ ।

ସେ ଆଡ଼ମ୍ବର ପ୍ରିୟ ନ ଥିଲେ । ତାଙ୍କ ପାଖରେ ଗର୍ବ ନଥିଲା । ଉଚ୍ଚ ଆସନର କର୍ମକ୍ଷମ ହୋଇ ମଧ ସେ ସବୁବେଳେ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟକୁ ପଛରେ ପକାଇ ଜନସାଧାରଣଙ୍କ ମଙ୍ଗଳ ଓ ଦେଶ ବାସୀଙ୍କ ଉପକାରକୁ ନିଜ ଜୀବନର ବ୍ରତ କରିଥିଲେ ।

ତାଙ୍କର ନୈତିକତା ଓ ନିଷ୍ଠାପରତାର ପଟାନ୍ତର ନାହିଁ । ତାଙ୍କର ଉପଦେଶ ଏଡ଼ିବାକୁ କାହାରି କ୍ଷମତା ନଥିଲା । ସେ ପ୍ରକୃତରେ ସାଧୁ ଥିଲେ । ପଣ୍ଡିତବାବୁଙ୍କର ଆକର୍ଷଣ ଶକ୍ତି ଏପରି ଥିଲା ଯେ ସେ ଲୋକମାନଙ୍କ ହୃଦୟକୁ ଜୟ କରି ନିଜର କରି ପାରୁଥିଲେ । କେବଳ ସେତିକି ନୁହେଁ, ସତ୍ୟ, ଶାନ୍ତି, ଦୟା, କ୍ଷମା ଆଦି ସଦ୍‌ଗୁଣରେ ସେ ପରିପୂର୍ଣ୍ଣ ଥିଲେ ।

ସେ ଥିଲେ ଆମ ଦେଶର ଆଲୋକ ସଦୃଶ୍ୟ ଏଣୁ ଆଲୋକ ପାଇବାକୁ ହେଲେ ଗ୍ରାମ ସମାଜ ତଥା ଜନସାଧାରଣ ମନୁଷ୍ୟ ଆଜୀବନ ସେହି ଅମର ଆତ୍ମାର ଆଦର୍ଶ ଉପଦେଶାବଳୀର ଅନୁଗାମୀ ହେବା ଉଚିତ୍ର ସର୍ବୋପରି ତାଙ୍କର ଜୀବନୀ ଆଦର୍ଶପୂର୍ଣ୍ଣ ସେହି ମହାମନୀଷୀଙ୍କ ଅମରାତ୍ମା ପ୍ରତି ମୁଁ କୃତାଞ୍ଜଳୀ ଅର୍ପଣ କରୁଛି ।

# ମହାନିର୍ବାଣ

ଶ୍ରୀ ଦୁର୍ଗାମାଧବ ମିଶ୍ର

ଦେବ ଶକର୍ଣ୍ଣନ ସମ ତୁମ ରଶ୍ମି କୋମଳ ପାଟଳ
ମୋ' ଜୀବନେ ସୃଜିଥିଲା କେତେ ଆଶା କେତେ କଳରୋଳ ।
ମୋ' ମନ ବିହଙ୍ଗ ଉଡ଼ି ବୁଲୁଥିଲା ଲକ୍ଷ୍ୟ ରଖି ସ୍ଥିର
ମଧ୍ୟେ ମଧ୍ୟେ ପାଶେ ବସି ଶୁଣୁଥିଲି ସେ ଅମୃତ ଗିର ।
ବଞ୍ଚିବାର ଦିଗ୍‌ଦର୍ଶନ କାମନାର ସମୃଦ୍ଧ ବିନାଶ
ପ୍ରଶାନ୍ତ ପ୍ରଲେପ ଭରା ବୁଦ୍ଧି-ଯନ୍ତ୍ର ଅମାନ୍ତ୍ରିକ ହ୍ରାସ ।
ବାହାରିଲା ଧଉତ ତନୁ ରୌଦ୍ରତାପେ ଜର୍ଜରିତ ଆଙ୍କ
ମହାବୃକ୍ଷ ଉତ୍ପାଟିତ ସଙ୍ଗେ ନେଇ ଘନ ଗୁମ୍ଫାବାଙ୍କ ।
ସଙ୍ଗେ ନେଇ ଜିଇଁବାର ଲଢ଼ିବାର ସକଳ କୌଶଳ
ସଙ୍ଗେ ନେଇ ଯେତେ ସ୍ନେହ ମମତାର ସ୍ରୋତ ଛଳଛଳ ।
ଦିନେ କେବେ ଦେଖି ନାହିଁ ପକ୍ଷପାତ ତୁମ ନେତ୍ର କୋଣେ
ଆମେ ସବୁ ତୁମ ପାଶେ "ନି ବହମ" ସମ ଜଣେ ଜଣେ ।
ନିଷ୍କପଟ ସେବା ସ୍ପର୍ଶ ଅନୁଭୂତ କରେ ଅଦ୍ୟାବଧି
କେଉଁ ଦିନ କେତେ ବନ୍ଧ ଜଟିଳ ନାହିଁ ଅନନ୍ତ ଜଳ୍ପା ।
"ଆସିଲ କି ? ଏତେ ଦିନେ ?"
କୁନ୍ଦ ଚୁ'କୁ ତା'ପରେ ଡାକରା ।
"କାଟିବୁ ଅମୃତଭଣ୍ଡା' ଚାହାଁଛଡ଼ା କଦଳୀ କାଜନ୍ଦା ।
ପେଟ ପୂର ଖାଉ ଖାଉ—ଶୁଣିଲିଣି ପଶିଥିଲା ଗୈର
ଏତଲା ତ ଦେଇନାହିଁ" କ୍ଷୀଣ ଓଷ୍ଠ ହାସ୍ୟ ଜରଜର ।
ଖୋଲିଲ ସେ ଆଲମାରି ଖୋଲିଗଲା ଟ୍ରଙ୍କ ଯେତେ ଯହିଁ
କେଇଟା ଛିଦ୍ର ଧୋତି ଆଉ ସବୁ ବସ୍ତ୍ର···ଖାଲି···ବସ୍ତ୍ର ।
କାହାକୁ ସାଥିରେ ନେବ ? ଶକ୍ତ ହସ୍ତେ ଫେଣିଲ ବାହୁରା
ଯେମିତି ସମସ୍ତେ ଯିବା ମୁକ୍ତ ଦେହ ଯେ ଦିନ ଏ କଥା ।"
ନିର୍ବାଣ ଲଭିଲ ତୁମେ ମହାଯୋଗୀ ତୁମ ଦଣ୍ଡ ଧରି
ଧାଇଁବୁ ତୁମରି ପଥେ ସିଞ୍ଚିଦିଅ ଆଶୀର୍ବାଦ ବାରି ।

— · —

# ମୋର ସହକର୍ମୀ

ଅବସରପ୍ରାପ୍ତ, ବିପିନବିହାରୀ ରାୟ

ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତିଙ୍କ ବାର୍ଷିକ ଶ୍ରାଦ୍ଧ ଦିବସରେ ଗୋଟିଏ ସ୍ମରଣୀକା ପ୍ରକାଶ କରା ଯାଉଛି, ସେଥିପ୍ରତି ଗୋଟିଏ ଲେଖା ପଠାଇବା ମୋର କର୍ତ୍ତବ୍ୟ ।

ରତ୍ନାକରବାବୁ ଓ ମୁଁ ପ୍ରାୟ ବର୍ଷ ୨୦ ବର୍ଷ ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଦର୍ଶନ ବିଭାଗରେ ଅଧ୍ୟାପକ ଭାବରେ ଏକତ୍ର କାର୍ଯ୍ୟ କରିଥିଲୁ । ଦୀର୍ଘକାଳ ବନ୍ଧୁତା ସମ୍ପର୍କ ଘଟି କାଳକ୍ରମେ ତାହା ଭାତୃତ୍ୱ ବନ୍ଧନରେ ପରିଣତ ହୋଇଥିଲା । ଯଦ୍ୟପି ସେ ମୋତେ ବଡ଼ ଭାଇ ବୋଲି ଶ୍ରଦ୍ଧା ଓ ଆଦର କରିଥିଲେ, ଉଭୟଙ୍କ ମଧ୍ୟରେ ସାନ-ବଡ଼ ଭେଦ ନ ଥିଲା । ନିର୍ମଳ ସହଯୋଗ, ପାରସ୍ପରିକ ଶ୍ରଦ୍ଧା ଭକ୍ତି ଉଭୟଙ୍କୁ ବାନ୍ଧି ରଖିଥିଲା । ରତ୍ନାକରବାବୁଙ୍କ ସମ୍ପର୍କରେ ଆସିବା ପୂର୍ବରୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ସହିତ ମୋର ସମ୍ପର୍କ ଘଟିଥିଲା । ମୁଁ ଉତ୍କଳମଣିଙ୍କ ଆକର୍ଷଣ ଶକ୍ତିରେ ପ୍ରଭାବିତ ହୋଇଥିଲି । ଏ ପ୍ରଭାବ ମୋ ଜୀବନରେ ଓ ରତ୍ନାକରବାବୁଙ୍କ ଜୀବନରେ ପ୍ରତିଫଳିତ ହୋଇଥିଲା ।

ରେଭେନ୍ସା କଲେଜରେ ପ୍ରାୟ ଦଶବର୍ଷ କାର୍ଯ୍ୟ କରିବା ପରେ ରତ୍ନାକରବାବୁ ଏଠାରୁ ରାଞ୍ଚି ଇଣ୍ଟରମିଡ଼ିଏଟ୍ କଲେଜକୁ ବଦଳି ହୋଇଗଲେ । ସେଠାରେ କେତେବର୍ଷ (୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ସମୟରେ) କାର୍ଯ୍ୟ କରିଥିଲେ । ତା ପରେ ମୁଁ ରତ୍ନାକରବାବୁଙ୍କୁ କଟକ ଫେରାଇ ଆଣିବା ପାଇଁ ଚେଷ୍ଟାକଲି ।

ରେଭେନ୍ସା କଲେଜରେ ସ୍ଥାନ ନ ଥିବାରୁ ସେ ଅଳ୍ପ ଦିନ ପାଇଁ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ କାର୍ଯ୍ୟରେ ନିଯୁକ୍ତି ପାଇଲେ । ତାପରେ ରେଭେନ୍ସା କଲେଜକୁ ପୁନଶ୍ଚ ଫେରି ଆସିଲେ । ସୁଖ୍ୟାତି ସହିତ ଅଧ୍ୟାପନା କାର୍ଯ୍ୟ ସମ୍ପାଦନ କରି ବିଜ୍ଞ, ଚରିତ୍ରବାନ ଓ ଛାତ୍ରବତ୍ସଳ ଶିକ୍ଷକ ସ୍ଥାନରେ ପ୍ରତିଷ୍ଠିତ ରହି, ଶେଷରେ ରେଭେନ୍ସା କଲେଜରୁ ସେ ବିଦାୟ ନେଲେ ।

ରତ୍ନାକର ବାବୁଙ୍କ ଜୀବନ କର୍ମମୟ । ରେଭେନ୍‌ସା କଲେଜରୁ ବିଦାୟ ନେଇ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ କଣ୍ଟିନ୍ୟୁଶନ ପୋଷ୍ଟ-ଗ୍ରାଜୁଏଟ୍ ଦର୍ଶନ ବିଭାଗରେ ଶିକ୍ଷକତା କରିଥିଲେ ଓ ପରେ ମହିଳା କଲେଜରେ ମଧ୍ୟ ଅଧ୍ୟାପକ ଭାବେ ନିଯୁକ୍ତି ପାଇଥିଲେ । ତାପରେ ଓଡ଼ିଆ ଭାଷାର ପରିଭାଷା ସଙ୍କଳନରେ ସହଯୋଗୀ ଭାବରେ କାର୍ଯ୍ୟ କରିଥିଲେ । ଏହାଛଡ଼ା ପୁଣି ଶିକ୍ଷାନୁଷ୍ଠାନ ଗଢ଼ିବାରେ, ପ୍ରବନ୍ଧ ଲେଖିବାରେ ଓ ଅନ୍ୟାନ୍ୟ ସାମାଜିକ ଉନ୍ନୟନ କାର୍ଯ୍ୟରେ ସାରାଜୀବନ ବିତାଇ ଦେଲେ । 'ପ୍ରବନ୍ଧ-ପ୍ରକାଶ' ନାମରେ ପ୍ରକାଶିତ ପୁସ୍ତକ (୧ମ ଓ ୨ୟ ଖଣ୍ଡ)ରେ ତାଙ୍କର ଅନେକଗୁଡ଼ିଏ ପ୍ରବନ୍ଧ ପ୍ରକାଶ ପାଇଛି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ କର୍ତ୍ତବ୍ୟନିଷ୍ଠାର ଏକ ଜ୍ୱଳନ୍ତ ନିଦର୍ଶନ ରୂପେ ସର୍ବସାଧାରଣଙ୍କ ସମ୍ମୁଖରେ ରହିଅଛି ।

ରତ୍ନାକରବାବୁଙ୍କ ଜୀବନ ଯେପରି କର୍ମନିଷ୍ଠ, ସେହିପରି ନୀତିନିଷ୍ଠ । ସ୍ୱର୍ଗୀୟ ଗୋଦାବରୀଶ ମିଶ୍ର 'ଅର୍ଦ୍ଧଶତାବ୍ଦୀର ଇତିହାସ ଓ ସେଥିରେ ମୋର ସ୍ଥାନ' ଗ୍ରନ୍ଥ ଲେଖି, ଏକ ସ୍ଥାନରେ ଲେଖିଛନ୍ତି, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଚେଷ୍ଟାକାଳରେ ରତ୍ନାକରବାବୁ ଦର୍ଶନଶାସ୍ତ୍ରର ଅଧ୍ୟାପକ ନିଯୁକ୍ତି ପାଇବାରେ ସମର୍ଥ ହୋଇ-ଥିଲେ । ସେ ଥିଲେ ପଣ୍ଡିତ ଗୋପବନ୍ଧୁଙ୍କର ଜାମାତା । ପଣ୍ଡିତ ଗୋପବନ୍ଧୁ ରତ୍ନାକରବାବୁଙ୍କ ନିଯୁକ୍ତି ପାଇଁ ଚେଷ୍ଟା କରିବା କଥା କେବେହେଲେ ମୋ ଅନୁଭୂତିକୁ ଆସିନାହିଁ । ତେବେ ମୁଁ ଏତିକି କହିବି,—ଅଧ୍ୟାପକ ହେବାର ଉପଯୁକ୍ତ ଯୋଗ୍ୟତା ତାଙ୍କର ଥିଲା । ଅଯୋଗ୍ୟ ହୋଇ ସେ ଯୋଗ୍ୟ ଆସନର ଅଧିକାରୀ ହୋଇ ନ ଥିଲେ ।

---

# କ'ଣ ବା ଲେଖିବି ?

ରବୀନ୍ଦ୍ରନାଥ ସିଂହ

ଖାନନଗର ଶ୍ମଶାନଭୂମିରେ ଭୋରର ଘନକୁହୁଡ଼ି ଭିତରେ ତାଙ୍କର ଚିତାଗ୍ନି ଯେତେବେଳେ ନିଭି ଆସୁଥିଲା, ମୁଁ ସେତେବେଳେ ଏକ ରୁଦ୍ଧ ବେଦନାରେ ଘରକୁ ଫେରିଥିଲି ।

ମୃତ୍ୟୁ—ଜୀବନର ଚରମ ସଫଳତା । ସେଥିରେ ଅନୁଶୋଚନା କଲେ ସ୍ୱର୍ଗତ ଆତ୍ମାପ୍ରତି ଅନ୍ୟାୟ କରା ହେବ । ଅଧ୍ୟାପକ ପତିଙ୍କ ସହିତ ମୋର ସମ୍ପର୍କ ବର୍ଣ୍ଣନାତୀତ । ଯେତେବେଳେ ମୋର ବୟସ ୮।୧୦ ବର୍ଷ, ସେତିକିବେଳୁ ତାଙ୍କର ଆଶୀର୍ବାଦ, ପ୍ରେରଣା ମୋତେ ନାନାଭାବରେ କେବଳ ଉଦ୍‌ବୁଦ୍ଧ କରିନାହିଁ, ମୃତ୍ୟୁର କିଛିଦିନ ପୂର୍ବରୁ ମଧ୍ୟ ମୁଁ ତାଙ୍କର ଶେଷ ଆଶୀର୍ବାଦ ଲାଭ କରିଛି ।

ଜାତୀୟ ଆନ୍ଦୋଳନର ଅଗ୍ନିସ୍ଫୁଲିଂଗରେ ଦେଶ ଯେତେବେଳେ ପ୍ରଖର, ସେତିକିବେଳେ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ, ସେତେ-ବେଳେ ମୁଁ ଅଖ୍ୟାତ, ଅସହାୟ, ଅଶିକ୍ଷିତ । କଟକ ପ୍ରଫେସରପଡ଼ାର ତାଙ୍କର ସେହି ବାସ ଭବନର ପ୍ରତିଟି କୋଠରୀ, ତାର ପରିବେଶ, ସେ ଘରର କାନ୍ଥମାନଂକର ଯଦି ହୃତ୍‌ପିଣ୍ଡ ଥାନ୍ତା, ତାହେଲେ ସେମାନେ ସ୍ପନ୍ଦିତ ହୋଇ ଉଠି ବିଗତର ସ୍ମୃତିମିଶା କାହାଣୀଗୁଡ଼ିକୁ ଅଜି କହନ୍ତେ, ମୋର ୰ପିତା ଶ୍ରୀ ରାମଚନ୍ଦ୍ର ସିଂହଙ୍କ ସହିତ ତାଙ୍କର ଥିଲା ଯଥେଷ୍ଟ ଘନିଷ୍ଠତା । ସ୍ୱାଧୀନତା ଆନ୍ଦୋଳନର ପଞ୍ଚଶିଖାରେ ଆମର ପାରିବାରିକ ନିରାପତ୍ତା ନ ଲୋପ ପାଇଥିଲା, ବାପାଙ୍କ ରଚିତ ଜାତୀୟବାଣୀ ସଙ୍ଗୀତର ମୁଁ ଥିଲି ଗାୟକ । ଏଇ ଅବସ୍ଥାରେ ମୋତେ ମୋର ସ୍ୱର୍ଗତ ପିତା ସ୍ୱର୍ଗତ ପତିଙ୍କର ବାସଭବନରେ ସର୍ବପ୍ରଥମେ ପହଞ୍ଚିଥିବା ଦିନଟି ମୋର ସ୍ମୃତିପଟରେ ନିଖୁଣ ଭାବରେ ଅଂକିତ ହୋଇ ରହିଛି ।

୧୯୪୭ ସାଲରେ ଯେତେବେଳେ ମୁଁ ସମ୍ପୂର୍ଣ୍ଣ ଅନାଥ ହୋଇପଡ଼େ; ପିତା, ମାତା, ପରିବାରର ଅଧିକାଂଶ ସଭ୍ୟଙ୍କୁ ଚିରଦିନ-ପାଇଁ ହରାଇ ଯେତେବେଳେ ମୁଁ କଟକ ମାଟିରେ ଟାଉଁଟାଉଁ, ସ୍ୱର୍ଗୀୟ

ପଣ୍ଡିତଙ୍କର ବାସଭବନ ଓ ତାଙ୍କର ସମବେଦନା ଓ ଦରଦ ସେଦିନ ଥିଲା ମୋର ମହାର୍ଘ ସାନ୍ତ୍ୱନା । କ୍ରମାଗତ ଆର୍ଥିକ ସାହାଯ୍ୟଠାରୁ ଆରମ୍ଭ କରି ବୌଦ୍ଧିକ ସାହାଯ୍ୟ, ପ୍ରେରଣା ମୁଁ ସ୍ୱର୍ଗୀୟ ପଣ୍ଡିତଙ୍କଠାରୁ ଯାହା ପାଇଛି, ତାହା ପାଇ ନ ଥିଲେ ମୋର ଆଜର କବି ଜୀବନର ସଫଳତା ଯଥେଷ୍ଟ ପଛେଇ ଯାଇଥାନ୍ତା । ମୋ'ର ଆଖି ଦେଖିଛି ଏହି ଅମାୟିକ ଦାର୍ଶନିକ ପରିବାରର ବହୁ ଯନ୍ତ୍ରଣା, ଦେଖିଛି, ସ୍ୱର୍ଗତ ପଣ୍ଡିତଙ୍କର ସ୍ୱର୍ଗୀୟା ସହଧର୍ମିଣୀଙ୍କ ରୁଗ୍ଣ ଜୀବନ୍ତ ମୂର୍ତ୍ତି, ଦେଖିଛି ତାଙ୍କ ଦେହାନ୍ତର ଶୋକପୂର୍ଣ୍ଣ ଦିବସ, ମୋର ବନ୍ଧୁ ଡଃ ଜିତେନ୍ଦ୍ରମ ପଣ୍ଡିତଙ୍କର ଅଂକକଷା ବାଲ୍ୟକାଳ ଏହିପରି ନାନା ଘଟଣା ।

ରାଜନୈତିକ ଘୂର୍ଣ୍ଣିଝଡ଼ରେ ମୁଁ ଜୀବନର ଦୀର୍ଘ କେତୋଟି ବର୍ଷ ଯାଇ ଉଡ଼ି ପଡ଼ିଥିଲି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ । ତା'ର ଭିତରେ ମୋର ସାହିତ୍ୟିକ ଜୀବନର ଅଂକୁର ଦୁରନ୍ତ କଳରବରେ ଆତ୍ମପ୍ରକାଶର ପଥ ଖୋଜୁଥିଲା । ସେହି କେତେ ବର୍ଷ ମୋର ଆଉ ପୂଜ୍ୟ ରତ୍ନାକର ପଣ୍ଡିତଙ୍କ ସହିତ ଦେଖା-ସାକ୍ଷାତ ସମ୍ଭବ ହୋଇ ପାରି ନଥିଲା । ୧୯୫୫ ସାଲରେ ଗୋଆମୁକ୍ତି ଆନ୍ଦୋଳନରେ ଯୋଗ ଦେଇ ଫେରିବା ପରେ ମୋର ଯେତେବେଳେ ତାଙ୍କ ସହିତ ସାକ୍ଷାତ ହେଲା, ସେଦିନ ସେ ମୋତେ ଅସୀମ ସ୍ନେହରେ କୁଣ୍ଢାଇ ପକାଇ ମୋ ମୁଣ୍ଡରେ ହାତ ବୁଲାଇ କହିଲେ—"ତୁ ବଡ଼ ଦୁଃସାହସୀ । ଭଗବାନଙ୍କ ଆଶୀର୍ବାଦ ନଥିଲେ ତୋର ଏ ବିକାଶ ସମ୍ଭବ ହୋଇ ନଥାନ୍ତା । ଦିନଟାଏ ମାତ୍ର ସ୍କୁଲକୁ ଯାଇ ତୁ ଏତେ ବିଦ୍ୟା ହାସଲ କଲୁ କୋଉଠୁ ? କ ଭାବରେ ତୁ ବଞ୍ଚିଛୁ ତା ତ ମୋର ଆଖି ଦେଖା !" ତା ପରେ ଗୋଟାଏ ଦୀର୍ଘଶ୍ୱାସ ତାଙ୍କର ସେଇ ଅସ୍ଥି-କଂକାଳସାର ଦେହକୁ ଦୋହଲାଇ ବାହାରି ଆସିଥିଲା ।

ବହୁ ପଥ, ବହୁ ମତ, ବହୁତ ମଣିଷ ମେଳରେ ବୁଲି ବୁଲି କ୍ଲାନ୍ତ, ଅବଶ ହୋଇ ଯେତେବେଳେ ମୁଁ ସାହିତ୍ୟକୁ ଜୀବନର ଏକମାତ୍ର ବ୍ରତ ବୋଲି ଗ୍ରହଣ କରି ସେହି ପଥରେ ଅଗ୍ରସର ହୁଏ, ସ୍ୱର୍ଗତ ପଣ୍ଡିତ ଥିଲେ ମୋର ଏକ ସୁସ୍ପଷ୍ଟ ହିତବାଦୀରେଣୀ । ସେ ଜାଣିଥିଲେ ମୁଁ ମାର୍କ୍ସୀୟ ଦର୍ଶନ ପ୍ରତି ଆକୃଷ୍ଟ । ଶ୍ରେଣୀ-ସଂଗ୍ରାମର ବିଶ୍ୱାସୀ । ସେ ଦିନେ ମୋତେ କହିପକେଇଲେ,—"ତୋ ପରି ଲୋକର ମାର୍କ୍ସୀୟ ଦର୍ଶନ

ବ୍ୟତୀତ ଅନ୍ୟ କୌଣସି କାମନା ନାହିଁ ! ମୁଁ ଅତି-ପ୍ରାକୃତ ଶକ୍ତିର ବିଶ୍ୱାସୀ । ତୋ' ମୋ ଭିତରେ ଏ ସମ୍ବନ୍ଧରେ ଯେତେ ମତ-ବିରୋଧ ଥିଲେ ମଧ୍ୟ ମୁଁ ତୋର ଅଧ୍ୟୟନ, ଆହରଣରେ ଅତ୍ୟନ୍ତ ମୁଗ୍ଧ ।"

ମୋର ସମସ୍ତ ପ୍ରକାଶିତ ପୁସ୍ତକର ସେ ଥିଲେ ଗୁଣଗ୍ରାହୀ ପାଠକ । ମୋର କବିତାଗୁଡ଼ିକର ସେ ଥିଲେ ଉରସା ଶ୍ରୋତା । ତାଙ୍କ ପାଖକୁ ଥରେ ଗଲେ ଖୁବ୍ କମ୍‌ରେ ୨।୩ ଘଣ୍ଟା କଟାଇ ମୋତେ ଆସିବାକୁ ପଡ଼େ । ବେଳେ ବେଳେ ମୋର ଜୀବନ କାହାଣୀକୁ ମନେ ପକାଇ ସେ ତାଙ୍କର ବାଲ୍ୟ ଜୀବନ କଥା କହି ବସନ୍ତି ଓ ପରିଶେଷରେ କହନ୍ତି—"ତୁ ଏ ସବୁ ବାହାରେ କୋଉଠି କିଛି କହିବୁ ନାହିଁ ।"

ତାଙ୍କ ସଭାପତିତ୍ୱରେ ଅନୁଷ୍ଠିତ କଟକ ସହରରେ ଏକାଧିକ ସାଧାରଣ ସାଂସ୍କୃତିକ ସଭାରେ ଭାଷଣ ଦେବାର ସୌଭାଗ୍ୟ ମୋର ହୋଇଛି । ମୋର ସାହିତ୍ୟିକ ସଫଳତାରେ ଯଦି କାହା ଆଖିରେ ମୁଁ ଆନନ୍ଦାଶ୍ରୁ—ଦେଖିଥାଏ, ତାହାହେଲେ ସେ ହେଉଛନ୍ତି ସେହି ମହାନ ପୁରୁଷ ଦାର୍ଶନିକ ସ୍ୱର୍ଗତ ରତ୍ନାକର ପତି । ୧୯୭୫ ମସିହାରେ ମୋର "ଚରମପତ୍ର" ଗ୍ରନ୍ଥ ପାଇଁ ମୁଁ ଯେତେବେଳେ ସାହିତ୍ୟ ଏକାଡ଼େମୀ ପୁରସ୍କାର ଗ୍ରହଣ କରି ଫେରୁଥାଏ, ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପର ସୋପାନ ପାଖରେ ସେ ଠିଆ ହୋଇଥିଲେ, ଆଜି ମୋତେ କୁଣ୍ଢାଇ ପକାଇ ପ୍ରାଣଖୋଲା ଆଶୀର୍ବାଦ କରିଥିଲେ—ଆଖି ତାଙ୍କର ଛଳଛଳ ହୋଇ ଯାଇଥିଲା ।

ସ୍ୱର୍ଗତ ପତି ଓଡ଼ିଶାରେ ବହୁ ବ୍ୟକ୍ତିଙ୍କୁ ଅତି ଗୋପନରେ କେବଳ ସାହାଯ୍ୟ କରି ନାହାନ୍ତି, ପୁଅପରି ସେମାନଙ୍କୁ ନିଜ ହାତରେ ଗଢ଼ିଛନ୍ତି । ସେପରି ଅନେକ ଘଟଣା ମୋ'ରି ଆଖି ଦେଖିଛି । ତାଙ୍କ ପରିବାର ସହିତ ମୁଁ ଅବିଚ୍ଛିନ୍ନ ବୋଲି ମୋର ଆଜି ମଧ୍ୟ ଧାରଣା । ତାଙ୍କର ଦେହାନ୍ତ, ତାଙ୍କର ଏ "ପଳାୟନ" ଓଡ଼ିଶାର ଶିକ୍ଷା, ସଂସ୍କୃତି, ମାନବତାର ଅଗ୍ରଗତି ପଥରେ ଏକ ଦାରୁଣ ବଜ୍ରପାତ ।

---

# ଆଦର୍ଶବାଦୀ ରତ୍ନାକର ପତି

ଡକ୍‌ଟର, ପ୍ରାଣକୃଷ୍ଣ ପରିଜା

ଆଦର୍ଶବାଦର ଅର୍ଥ ଉଚ୍ଚ ଆଦର୍ଶକୁ ସମ୍ମୁଖରେ ରଖି ନିଜର ଜୀବନ ପନ୍ଥା ଅନୁସରଣ କରିବା । ସେ ଯେଉଁ ପରିସ୍ଥିତିରେ ରହୁ ନା କାହିଁକି ଦୈନନ୍ଦିନ ଆଚରଣ ଏପରି ହେବା ଉଚିତ ଯାହାଦ୍ୱାରା ନିଜର ନୈତିକ ଉନ୍ନତି, ନିଜର କର୍ତ୍ତବ୍ୟ ପାଳନ ଏବଂ ନିଜେ ଯେଉଁ ସମାଜରେ ଥିବ ସେ ସମାଜର ବିରୋଧ ନ କରି ତାର ଉନ୍ନତି ସାଧିତ ହେବ । ସମସ୍ତେ ଯେ ଆଦର୍ଶର ପୂର୍ଣ୍ଣ ସାଧନା କରିପାରିବେ ଏହା ସମ୍ଭବ ନୁହେଁ । କିନ୍ତୁ ନିଜ ନିଜ ପରିସ୍ଥିତି ଭିତରେ ସେ ଦିଗରେ ଚେଷ୍ଟା କରିବା ହିଁ ଆଦର୍ଶବାଦର ଲକ୍ଷଣ ।

ଏହି ମାନଦଣ୍ଡ ଦ୍ୱାରା ବିଚାର କଲେ ସ୍ୱର୍ଗତ ରତ୍ନାକରବାବୁ ଜଣେ ବିଶିଷ୍ଟ ଆଦର୍ଶବାଦୀ ଥିଲେ । ସେ ପିଲାଦିନେ କଷ୍ଟ ସହି ବିଦ୍ୟା ଅର୍ଜନ କରିଥିଲେ ସେ ମୋର ବର୍ଷକ ପରେ ୧୯୧୦ ସାଲରେ ମାଟ୍ରିକୁଲେଶନ ପାସ୍ କଲେ । ସେତେବେଳେ ଆଜିକାଲିପରି ବସ୍ ଚାଲୁ ନ ଥିଲା, ଆମେ ଯିବୁ ଚାଲିକରି କଟକ ଆସୁଥିଲୁ । ସେଥିରେ ଆମର ଦୁଃଖ ନଥିଲା । ଯାହାହେଉ ରତ୍ନାକରବାବୁ କଲେଜ ପଢ଼ା ଶେଷ କରି ଶିକ୍ଷା ବିଭାଗରେ ପ୍ରବେଶ କଲେ । ସେ ଆଦର୍ଶବାଦୀ ଥିବାରୁ ଆଦର୍ଶ ଶିକ୍ଷକ ଥିଲେ, ଆଦର୍ଶ ଶିକ୍ଷକର ମାନଦଣ୍ଡ କ'ଣ ? ମନେହୁଏ ଆଦର୍ଶ ଶିକ୍ଷକ ନିଜର ସରଳ ନିରାଡ଼ମ୍ବର ଜୀବନ, ଜ୍ଞାନ ଅର୍ଜ୍ଜନ, ଜ୍ଞାନ ପରିବେଷଣ ଏବଂ ଯେଉଁ ପରିସ୍ଥିତିରେ ରହିଲେ ମଧ୍ୟ କର୍ତ୍ତବ୍ୟନିଷ୍ଠା ଦ୍ୱାରା ଛାତ୍ରମାନଙ୍କ ମନରେ ଜ୍ଞାନାର୍ଜନର ପ୍ରବୃତ୍ତି ସୃଷ୍ଟି କରିବାରେ ସଚେଷ୍ଟ ହେବେ । ଏ ସବୁ ଦୃଷ୍ଟିକୋଣରୁ ଦେଖିଲେ ରତ୍ନାକରବାବୁ ଆଦର୍ଶ ଶିକ୍ଷକ ଥିଲେ । ଯେଉଁମାନେ ତାଙ୍କ ସଂସର୍ଗରେ ଆସି ଅଛନ୍ତି ସେମାନେ ଜାଣନ୍ତି ସେ କିପରି ନିରାଡ଼ମ୍ବର ବ୍ୟକ୍ତି ଥିଲେ ଆଜିକାଲି ଯଦି ଜଣେ ଶିକ୍ଷକ ଗୋଟିଏ କଲେଜରୁ ଅନ୍ୟ କଲେଜକୁ ବଦଳି ହେଉଛି, ସେ ବିଷୟରେ ସମୟେ ସମୟେ ତୁମୂଳ କାଣ୍ଡ ଘଟୁଅଛି । ରତ୍ନାକରବାବୁ କଲେଜରେ ଶିକ୍ଷକ ଥିବାବେଳେ ତାଙ୍କୁ ଗୋଟିଏ ସ୍କୁଲର ହେଡ୍‌ମାଷ୍ଟର ପଦକୁ ବଦଳି କରାଗଲା । ସେ ତ କେବେହେଲେ ସେଥିରେ ଅସନ୍ତୋଷ ପ୍ରକାଶ କରି ନାହାନ୍ତି । ସେ ଆଜୀବନ ଅଧ୍ୟୟନ ଓ ଅଧ୍ୟାପନା କରି ଛାତ୍ରଜଗତରେ ଏବଂ ଦେଶରେ ପ୍ରିୟ ହୋଇଥିଲେ । ତାଙ୍କର ଉଦାହରଣ ଯୁବସମାଜକୁ ଅନୁପ୍ରାଣିତ କରୁ ଏହା ହିଁ ପ୍ରାର୍ଥନା ।

—୦—

# ଜ୍ଞାନଗୁରୁ ରତ୍ନାକର

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

ତାଙ୍କ ସଙ୍ଗେ ମୋର ପ୍ରଥମ ସାକ୍ଷାତ୍‌କାର ସୁଯୋଗ ଘଟେ ବୋଧହୁଏ ଥରେ ରେଳଗାଡ଼ିରେ । ସେତେବେଳେ ସେ ରାଞ୍ଚିରୁ ଫେରୁଥାନ୍ତି କିମ୍ବା ସେଠାକୁ ଯାଉଥାନ୍ତି । ଯାହାହେଉ, ସେହିଠାରେ ସେ ଅଧ୍ୟାପନା କରୁଥିଲେ । କ'ଣ ସେଦିନ କଥାବାର୍ତ୍ତା ହୁଏ ଠିକ୍ ସେସବୁ ମନେ ନାହିଁ । କିନ୍ତୁ ବିଷୟଟି ଥିଲା ସାହିତ୍ୟ ।

ସାହିତ୍ୟ କହିଲେ ତ ତହିଁରୁ କୌଣସି ବିଦ୍ୟା ବା କୌଣସି ବିଷୟକୁ ବାଦ୍ ଦେଇହେବ ନାହିଁ । ମାତ୍ର ସାହିତ୍ୟର ମୌଳିକତତ୍ତ୍ୱ ଯେ ଦର୍ଶନ, ତାହାର ଉପରେ ଯୁକ୍ତି କରି ସେଦିନ ରେଳଗାଡି ଭିତରେ ସେ ପ୍ରମାଣ ବାଢ଼ୁଥାନ୍ତି । କଥାର ସ୍ୱର କଂସା ଭଳି ଠାଇଁ ଠାଇଁ ବାଜେ, ମଝିରେ ମଝିରେ ସେହି ସ୍ୱରଟି ଖୁବ୍ ତୀବ୍ର ଓ ତୀକ୍ଷ୍ଣ ଜଣା ପଡ଼ୁଥାଏ । କଥାଗୁଡ଼ିକ ପୁଣି ଏମିତି ସଯତ ଓ ଶୃଙ୍ଖଳିତ ଯେ ତାହା ଭିତରୁ ଅବାନ୍ତର ଟିଏ ବାଛି ବାହାର କରିବା ସମ୍ଭବପର ନୁହେଁ ।

ଯେପରି ଅବା ମୁଁ ତାଙ୍କର ଜଣେ ଛାତ୍ର ! ଅଥଚ ମୁଁ ରେଭେନ୍ସା କଲେଜର ଛାତ୍ର ଆଉ ସେ ଥାନ୍ତି ରାଞ୍ଚିରେ ଅଧ୍ୟାପକ । ତଥାପି ତାହାହିଁ ତାଙ୍କର ସହଜାତ ସ୍ୱଭାବ—ସହଜମ୍ କର୍ମକୌନ୍ତେୟ ! ସଦୋଷମପି ନ ତ୍ୟଜେତ୍ । ସେ ଯେପରି ଜଣେ ଜନ୍ମ ଶିକ୍ଷକ । ସହଜ ସରଳ, କଥାବାର୍ତ୍ତା ଭିତରେ ସବୁବେଳେ ଉଚ୍ଚ ଚିନ୍ତା ଓ ଉଦାର ଚରିତ୍ରର ପରିଚୟ ମିଳେ । ସାଧାରଣ ଜୀବନ ନିର୍ବାହ ସଙ୍ଗେ ଉଚ୍ଚଚିନ୍ତାହିଁ ତାଙ୍କ ମହାନ ବ୍ୟକ୍ତିତ୍ୱକୁ ଗଠନ କରିଥିଲା ।

ଭାବରାଜ୍ୟରେ ସେ ଯଥାର୍ଥରେ ତାଙ୍କ ନାମ ଅନୁଯାୟୀ ରତ୍ନାକର । ତାଙ୍କର ଦାର୍ଶନିକ ପ୍ରବନ୍ଧଗୁଡ଼ିକ ଓଡ଼ିଆ ସାହିତ୍ୟରେ ଅମୂଲ୍ୟ ରତ୍ନ । ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କ ବହୁରଧାରା ତଦନୁରୂପ । ତାହାଙ୍କ କବିତା କିମ୍ବା ପ୍ରବନ୍ଧରେ ଆମେ ନିଷ୍ଠା, ନୈତିକତା ଓ ଐକାନ୍ତିକତାର

ଗଣ୍ଠିର ପରିଚୟ ପାଇଥାଉଁ । ସାହିତ୍ୟରେ ସୁରୁଚିର କୁତ୍ରାପି ବ୍ୟତିକ୍ରମ ହେଲେ ସେ ବିବ୍ରତ ହୋଇ ପଡ଼ୁଥିଲେ । ଆଧୁନିକ ସାହିତ୍ୟରେ ବ୍ୟତିକ୍ରମ ତାଙ୍କୁ ବ୍ୟଥିତ କରି ପକାଉଥିଲା ।

"ଉତ୍କଳ ସାହିତ୍ୟ ସମାଜ"ର ସେ ସଭାପତି ଥିବା ସମୟରେ ମୁଁ ଉକ୍ତ ଅନୁଷ୍ଠାନର ସମ୍ପାଦକ ଥିଲି । ମୋତେ ମୋର ସମ୍ପାଦକୀୟ ଦାୟିତ୍ୱ ସମ୍ପର୍କରେ ସେ ବାରମ୍ବାର ଚେତାଇ ଦିଅନ୍ତି । ଠିକ୍ ଜଣେ ଗୁରୁ ତାଙ୍କର ଶିଷ୍ୟକୁ ଚେତାଇ ଦେଲାଭଳି । ପ୍ରଥମେ ମୋତେ ତାହା ଅଡ଼ୁଆ ବୋଧ ହୁଏ ତାଙ୍କର ଗୁରୁ-ଶିଷ୍ୟ ସମ୍ପର୍କ ସେ ଏଠାରେ ସୁଧା ପ୍ରତିଷ୍ଠା କରିବାକୁ ଯାଉଛନ୍ତି ବୋଲି । କିନ୍ତୁ ତାଙ୍କ କଠୋର କର୍ତ୍ତବ୍ୟନିଷ୍ଠା ପାଖରେ କୌଣସି ପ୍ରଶ୍ନ କରିବାର ଅବକାଶ ନ ଥିଲା । ସେହି ସମୟରେ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ "ସାହିତ୍ୟ ସପ୍ତାହ" ଉତ୍ସବ ଅନୁଷ୍ଠିତ ହୁଏ ତାହାର ପ୍ରାଙ୍ଗଣରେ ନିର୍ମିତ ଏକ ସ୍ୱତନ୍ତ୍ର ରଙ୍ଗମଞ୍ଚରେ । "ଓଡ଼ିଶା ଥିଏଟରସ୍"ର ଶୁଭ ଅନୁକୂଳ ହୁଏ ସେହିଠାରେ । ଓଡ଼ିଶାର ନାଟ୍ୟାଭିନୟ ଇତିହାସରେ ପ୍ରଥମ ଥରପାଇଁ ନାରୀ ଅଭିନେତ୍ରୀମାନେ ଅବତୀର୍ଣ୍ଣା ହୁଅନ୍ତି । ରତ୍ନାକରବାବୁ ତାହାର ପକ୍ଷପାତି ନ ଥିଲେ । କିନ୍ତୁ ବହୁ ମତରେ ତାହାର ସମର୍ଥନ କରିବାରୁ ରତ୍ନାକରବାବୁ ଅପସରି ଗଲେ ।

ଯାହା ସେ ଠିକ୍ ବୋଲି ବିଶ୍ୱାସ କରୁଥିଲେ, ତାହା ସବୁବେଳେ ପାଳନ କରିବା କଲ୍ପନାତୀତ । ଜଣେ ଆଦର୍ଶ ଶିକ୍ଷକରୂପେ, ଭାବୁକ ଓ ସାହିତ୍ୟିକ ରୂପେ ବିଜ୍ଞ ଦାର୍ଶନିକ ରୂପେ ଏକ ମହନୀୟ ଚରିତ୍ରର ଆଦର୍ଶ ସେ ଆମ ସମକ୍ଷରେ ରଖିଯାଇଛନ୍ତି । ସେ ଆଦର୍ଶ ଆମର ଚିର ପୂଜନୀୟ ନମସ୍ୟ ।

# "ସବୁର ତୀର୍ଥ ତୁମେ !"

ଶ୍ରୀମତୀ ତାରଣୀଦେବୀ ଶର୍ମା, ବି. ଏ. ବି. ଏଡ୍ ।

ସବୁ ବେଳେ
କଥା ଛଳେ
ବସା ଉଠାରେ
ଖିଆ ପିଆରେ
ପଡ଼େ ଆମର
କଥା ତୁମର !
ସବୁଠି ଭଜୁଁ ଆମେ—
ଆମଠି ଥିଲା ତୁମ ଆଶୀଷ
ଆମଠି ଥିଲ ତୁମେ ।
ତୁମ ଆଦର୍ଶ
ତୁମ ପୌରୁଷ
ତୁମର ବେଶ
ତୁମର ତପ
ତୁମର ମନ୍ତ
ତୁମ ଭାରତ
ସବୁଠି କହୁଁ ଆମେ—
ସଭଙ୍କୁ ଥିଲା ତୁମ ଆଶୀଷ
ସବୁଠି ଅଛ ତୁମେ ।

ଯେବେ ସେଦିନ
ଛୁଇଁ ଚରଣ—
ଧୂଳି ଦେଇଲି ତବ,
ସସ୍ନେହେ ମୋତେ
ଉଠାଇ ହାତେ
କହିଲ ତୁମେ—
"ଆୟୁଷ୍ମାନଭବ" !—
ପଡ଼ୁଛି ଆଜ ମନେ—
ଅମିତ ଥିଲା ତୁମ ଆଶିଷ
ଅମିତ ଥିଲ ତୁମେ ।

ଶିଷ୍ୟ ବତ୍ସଳ
ଗର୍ବ ଶୃଙ୍ଖଳ
ଚିନ୍ତା ନିର୍ମଳ
କଥା ସରଳ
ପରୋପକାରୀ
ନିଃସ୍ୱାର୍ଥକାରୀ
ଥିଲ ବିଜ୍ଞ
ସ୍ଥିତ ପ୍ରଜ୍ଞ,
କିସ ବା ନୁହଁ ତୁମେ—??
ସଭିଙ୍କୁ ଥିଲା ତୁମ ଆଶିଷ
ସବୁଠି ଅଛ ତୁମେ ।

ଧନ୍ୟ ତୁମେ
ପୂଜ୍ୟ ତୁମେ ।
ଶକ୍ତି ତୁମେ
ମୁକ୍ତି ତୁମେ ।
ଅମର ତୁମେ
ଅଜର ତୁମେ ।
ଅଜସ୍ର ତୁମେ
ଅଭସ୍ର ତୁମେ ।
ସବୁର ତୀର୍ଥ ତୁମେ—
ସଭିଙ୍କୁ ତୁମ ଆଶିଷ ଥିଲା
ସବୁଠି ଅଛ ତୁମେ ।

—x—

# ଅଧ୍ୟାପକ ରତ୍ନାକର ପତି

ଡକ୍ଟର କୁଞ୍ଜବିହାରୀ ଦାଶ

ଅଧ୍ୟାପକ ପତି କେବଳ ଦର୍ଶନର ବିଶାରଦ ଭାବରେ ନୁହନ୍ତି ସ୍ୱଭାବତଃ ଦାର୍ଶନିକ, ଦର୍ଶନ ତାଙ୍କ ଜୀବନ ଦୋସର; ସାହିତ୍ୟ ବିନୋଦନ ତା ତୁଳନାରେ ହୁଏତ ସାମୟିକ, କିନ୍ତୁ ଉଦ୍ୟାନ ବିହାର ପରି ପ୍ରୀତିପ୍ରଦ । ଗଙ୍ଗା ଯମୁନା ପରି ତାଙ୍କ ବିଦଗ୍ଧ ଜୀବନର ଏଇ ଦୁଇଟି ଧାରା—ଦର୍ଶନ ଓ ସାହିତ୍ୟ—ପ୍ରାଣପ୍ରାଚୁର୍ଯ୍ୟ ଦାୟୀ । ଏ ଦୁଇ ମଧ୍ୟରୁ କାହାକୁ ସେ ଛାଡ଼ି ନାହାନ୍ତି, ଛାଡ଼ି ପାରି ନାହାନ୍ତି ବୋଲି ।

ଛାତ୍ର ଜୀବନରେ ସେ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ, ପ୍ରାବନ୍ଧିକ ଭାବରେ ସେ ଶିକ୍ଷକ ଓ ଛାତ୍ର ମହଲରେ ପ୍ରଚୁର ପ୍ରତିଷ୍ଠା ଅର୍ଜନ କରିଥିଲେ । କବିତା ସେ ଲେଖନ୍ତି ବୋଲି ଅନେକ ହୁଏତ ଜାଣିଲେ ନାହିଁ କିନ୍ତୁ ମୃତ୍ୟୁର ଏକ ମାସ ପୂର୍ବରୁ କବିତା ରଚନା କରି ସେ ତାଙ୍କର ତରୁଣ ଜୀବନର ସଙ୍ଗୀ ଓ ଛାତ୍ର ସୁହୃଦ୍‌ମାନଙ୍କୁ ଶୁଣାଇ ଆତ୍ମ ପ୍ରସାଦ ଅନୁଭବ କରୁଥିଲେ—କୈଶୋରର ଛନ୍ଦସୃହା ବାର୍ଦ୍ଧକ୍ୟରେ ଗ୍ରଥିତ ହେଲା ବୋଲି । ତରୁଣ ଜୀବନର "ତାରିଟିଏ" କବିତା, ସମ୍ବଲପୁରର ବୁଢ଼ା ରଜା ପାହାଡ଼, ଦେବ ଦେବୀଙ୍କ ସ୍ତୁତି ଓ ଆଉ ଅନେକ କବିତା ଓ ଶ୍ଳୋକ ରଚନା କରି ସେ ପ୍ରୀତିପୂର୍ଣ୍ଣ ସ୍ୱରରେ ଆବୃତ୍ତି କରନ୍ତି । ସାହିତ୍ୟ ପ୍ରତି ତାଙ୍କର ଅକୃତ୍ରିମ ପ୍ରୀତି ଦେଖି ମୋ ଆଖିରେ ଲୁହ ରହି ନାହିଁ, ଚପଳ ଆବେଗରେ ଦିନେ କହି ପକାଇଲି, ସାର୍, ମୁଁ ଆପଣଙ୍କୁ ଦକ୍ଷିଣା ଦେବି, ଧ୍ରୁ ଗୁରୁଦକ୍ଷିଣା ।

ତାଙ୍କ ସ୍ୱାଭାବିକ ଗାମ୍ଭୀର୍ଯ୍ୟରେ ସଂସାରର ବହୁ ଚପଳତା ପରି ମୋର ଚପଳୋକ୍ତି ହୁଏତ ମିଳାଇ ଯାଇଥିବ । କିନ୍ତୁ ଏଇ ଅଯାଚିତ ଦକ୍ଷିଣା ଦାନ ଆସ୍ପର୍ଦ୍ଧାରେ ମୁଁ ବିଶେଷ ଅନୁତପ୍ତ ହୋଇଛି । ଜୀବନରେ କାହାର ଋଣ ଶୁଝି ପାରିଛି ? ପିତାମାତା ବନ୍ଧୁବାନ୍ଧବ ବା କେଉଁ ଗୁରୁଜନଙ୍କର ? ପୁଣି ଏ ଗୁରୁଙ୍କ ମଧ୍ୟରେ ପରମ ଗୁରୁ; ସେ କାହାଠାରୁ କେବେ ଦକ୍ଷିଣା ଗ୍ରହଣ କରିଛନ୍ତି ? ସେ କେବଳ ଦେଇଛନ୍ତି । ଯେପରି ବାରିଦ ବୃଷ୍ଟି ଦିଏ । ନେଇ ପାରିବାର ଆଶା ଜୀବନରେ ସେ କେବେ ପୋଷଣ କରି ନାହାନ୍ତି ।

ମୁଁ କିନ୍ତୁ ଧନମାନ ବା କିଛି ଦ୍ରବ୍ୟ ସମ୍ଭାର ଦେବାର ଅଭିଳାଷ ପୋଷଣ କରି ନ ଥିଲି । ତାଙ୍କ ଗ୍ରନ୍ଥାବଳୀ ଛପାଇ ତାଙ୍କ ହାତରେ ଦେବି ବୋଲି ଥିଲା ମୋର ସଂକଳ୍ପ—, ଗଙ୍ଗା ହ୍ରଦରେ ଗଙ୍ଗାଙ୍କୁ ଅର୍ଘ୍ୟ ଦେଲା ପରି । ସେତିକ ବି ସମ୍ଭବ ହୋଇ ପାରିଲା ନାହିଁ, ମୃତ୍ୟୁର ଚକ୍ରାନ୍ତରେ । 'କର୍ମଣ୍ୟେବାଧିକାରସ୍ତେ'—କାନେ କାନେ ସେ ମୋତେ ଶିଖାଇଲେ, ଶେଷ ନିଶ୍ୱାସ ଗଲାବେଳେ କାହାଁକି କେଉଁ ଫଳ ଗ୍ରହଣ କରନ୍ତେ ସେ ।

ସେ ହିନ ଜୀବନୀ ଲେଖକ ମୋର ଗୁରୁ ବେଣୀଧର ତାଙ୍କୁ ଶଯ୍ୟା ଉପରେ ହଠାତ୍ ମୂର୍ଚ୍ଛିତ ହୋଇ ପଡ଼ିବାର ଦେଖିଥିଲେ । ମୂର୍ଚ୍ଛାରୁ ମୃତ୍ୟୁବେଦନଭରା ପରିବେଶରେ ତାଙ୍କର ଶେଷ ଦର୍ଶନ ପାଇଲି । ଜୀବନ ଓ ମୃତ୍ୟୁ ପରସ୍ପରର କେତେ ନିକଟବର୍ତ୍ତୀ । ହାସ୍ୟରୁ ଅଶ୍ରୁର ଦୂରତା ମଧ୍ୟ ଠିକ୍ ସେତିକ, ମୁଦ୍ରିତ ଚକ୍ଷୁ, ପ୍ରସନ୍ନ ମୁଖ କିଛି ହରାଇ ନାହାନ୍ତି । ପୃଥିବୀକୁ ଛାଡ଼ି ଚାଲି ଯିବାରେ ଜଳ୍ପାର୍ଦ୍ଧ ଦୁଃଖ ନାହିଁ ତାଙ୍କର । ବ୍ୟଙ୍ଗ ତ କାହାକୁ କେବେ ସେ କରନ୍ତି ନାହିଁ । କିନ୍ତୁ ଟିକିଏ ବ୍ୟଙ୍ଗ ଫୁଟିଲା ପରି ଲାଗିଲା ସେଇ ଶ୍ରଦ୍ଧାସ୍ପଦ ମୁଖରେ । ଶୂନ୍ୟହସ୍ତ ଦେଖାଇ ସେ ଯେପରି କି ମୋତେ ପଚାରୁଛନ୍ତି, ଦକ୍ଷିଣା କାହିଁ ? ଗୁରୁ ଦକ୍ଷିଣା ? ନିଜକୁ ଧିକ୍କାର କରି ପ୍ରାଣରେ ବେଦନା ଭରି ଫେରି ଆସିଲି ।

ରତ୍ନାକର । ତାଙ୍କ ଜୀବନ ଚିରସ୍ମରଣୀୟ ବହୁ ଉତ୍କଳବାସୀଙ୍କ ପକ୍ଷରେ । ଅଭାବ ସ୍ୱଭାବ ଯାହାଙ୍କର ହିନେ ହେଲେ ମଳିନ ହୋଇ-ନାହିଁ । ବିପଦ ଯାହାଙ୍କର ମଜ୍ଜାହାଡ଼ ଶକ୍ତ କରି ଦେଇଥିଲା, ଦାରିଦ୍ର୍ୟ ଯାହାଙ୍କୁ ଶଙ୍କିତ ଅବନତ କରି ପାରି ନ ଥିଲା—"ନ୍ୟାଯ୍ୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ" ଯାହାଙ୍କ ପକ୍ଷରେ ଠିକ୍ ପ୍ରଯୁଜ୍ୟ—ଶିଷ୍ଟ ଶାନ୍ତ ସୁଜନ ସ୍ନେହବତ୍ସଳ—ତାଙ୍କ ଜୀବନର ପ୍ରତ୍ୟେକ ଘଟଣା ଜାଣିବାକୁ ଲୋଭ ହୁଏ, କିନ୍ତୁ ସମ୍ଭବ ହେଉ ନାଇଛି—ସ୍ମୃତିଲତାର କେତୋଟି ଫୁଲ ମାତ୍ର ତୋଳି ସେ ଆମ ଆଗରେ ଥୋଇ ଦେଇ ଯାଇଛନ୍ତି ।

ଗୁରୁମାନଙ୍କ ପୂଜା ଦେବା ଲାଗି ମାଣେ ଚାଉଳ ନ ଥିଲା । ସାଥୀ ପିଲା ତାଙ୍କ ଦାରିଦ୍ର୍ୟକୁ ଉପହାସ କରିବେ ବୋଲି ସେ ଉଧାର ସେରକ ଗୁଣି ଦେଇଥିଲେ । ଗୁରୁ ଲୁବ୍ଧଲୋଭୀ ହେଲେ ବି ତାଙ୍କର ମମତା ସେ ତ୍ୟାଗ କରି ପାରି ନ ଥିଲେ । ସେ ଗୁରୁଙ୍କଠାରୁ ସେ କାଳର ପାଠ ଓଡ଼ାଙ୍କ, ଫେଡ଼ାଙ୍କ, ଶୋଧ, ହର, ଗୁଣି, ନଳକୂଟ ଶିକ୍ଷା କରିଥିଲେ ।

ଋଢ଼ାଳୀର ବଡ଼ ଝୁଣ୍ଟ ହୋଇ ହାକର ପକେଇବାଠାରୁ ପାଠ ପଢ଼େଇବା ପର୍ଯ୍ୟନ୍ତ ଅକର୍ମଣ୍ୟ ଅବଧାନଙ୍କର ସବୁ କାମ ଅକୁଣ୍ଠିତ ଚିତ୍ତରେ ସେ କରି ଯାଉଥିଲେ । ବାଉଁଶ କାଠି କଲମ, ଲାଲ ପଥରରସ ଓ ପାପ କଳା କାଳିରେ ତାଙ୍କୁ ଲେଖିବାକୁ ହେଉଥିଲା, ପାଦ୍ରୀଙ୍କର ଧର୍ମପ୍ରଚାର ପୁସ୍ତିକାରୁ ସେ ଓଡ଼ିଆ ବର୍ଣ୍ଣମାଳା ଶିକ୍ଷା କରିଥିଲେ—

ପ୍ରଭୁ ଯିଶୁ ତାରିବେ ।

ପାପ ନେଇ ପୁଣ୍ୟ ଦେଇ ସେ ଉଦ୍ଧାରିବେ ।

କୋଦାଳରେ ହଳର ମୂଢ଼ାମାଟି ଖୋଳି ଧାନ କେଣ୍ଡା ଆଣି ମକତ ଦଶ ପାଇସାରେ ବକ ବୋଉଠାରୁ ପାଇଥିବା ଦୁଇ ପଇସା ମିଶାଇ ତିନି ଅଣାରେ ସେ ଖଣ୍ଡିଏ ଫଟା ସ୍ଲେଟ୍ କଣିଥିଲେ । କୋଳଥ ଓପାଡୁ ଓପାଡୁ ହରିବାଟି ସ୍କୁଲକୁ ପରୀକ୍ଷା ଫଳ ଜାଣିବାକୁ ଦୌଡ଼ିଥିଲେ—ବାଟରେ କିଏ ପରିହାସରେ ସମ୍ବାଦ ଦେଲା—ଫେଲ୍ ହୋଇଛନ୍ତି । ତାଙ୍କୁ ସତ ମଣି କାନ୍ଦ କାନ୍ଦ ଯାଉଁ ଯାଉଁ ଖବର ପାଇଲେ ପରୀକ୍ଷାରେ ସେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି । 'ଉତ୍କଳ ଦୀପିକା'ଟି କାଖରେ ଯାକି ଦୌଡ଼ ଦୌଡ଼ ଆସି ପୁଣି ସେ କୋଳଥ ଓପାଡ଼ିଲେ, କଳେଇଙ୍କୁ ପରୀକ୍ଷା ଫଳ ଜଣେଇବା ଲାଗି ଭୃଣ୍ଡ ଲେଉଟିଲା ନାହିଁ । ବହି କିଣିବାକୁ ପଇସା ନ ଦେଲେ ସେ ମୁଣ୍ଡ ବାଡ଼େଇଦେବେ ବୋଲି ବୋଉକୁ ଧମକାଇଥିଲେ । ବୋଉ ସଧବାର ଶେଷ ଅଳଙ୍କାର ବଣୁଣିଟି ବନ୍ଧା ପକାଇ ଯାହାଙ୍କ ଲାଗି ସାହିତ୍ୟ ଓ ଭୂଗୋଳ ବହି କିଣି ଦେଇଥିଲା, ଆମ୍ବ ବକ ବା ମୂଲ ଲାଗି ସେ ଅନ୍ୟାନ୍ୟ ସ୍କୁଲ ବହି କିଣି ସେ ଶ୍ରମର ଗୌରବ ବଢ଼ାଇଥିଲେ । ଅନ୍ୟଥା ଗୋଳମାଳ ହେବ ଜାଣି ଯାହାଙ୍କୁ ଗୁହାଳ ଘରେ ଲୁଚି ପକାଇ ପଢ଼ିବାକୁ ହେଉଥିଲା, ଦରିଦ୍ର ଗୃହର ସର୍ବସ୍ୱ ସେଇ ବହିତକ ତାଙ୍କର ଶ୍ରେଷ୍ଠ ସାଇଥିଲା । ଠାକୁରଙ୍କୁ ପାଣି ଦେବାକୁ ଯାଇ ତାଙ୍କ ଗୋଦଚକ୍ରୁ ଅତି ଆଶ୍ଚର୍ଯ୍ୟ ଭାବେ ବହି ସବୁ ପାଇଥିଲେ । ଏହା ଫଳରେ ତାଙ୍କର ଈଶ୍ୱରବିଶ୍ୱାସ ଦୃଢ଼ୀଭୂତ ଓ ଆତ୍ମାବଳ ଅଟଳ ରହିଥିଲା ।

ଦୈନିକ ମାଣେ ଚାଉଳ ଓ ଦୁଇଟା ପଇସା ଲାଗି ଯାହାଙ୍କୁ ଋଢ଼ାଳୀରେ ଅବଧାନୀ କରିବାକୁ ପଡ଼ିଥିଲା, ହାତରେ ଗୋଷେଇ କରି ଖାଇ ସେ ପରୀକ୍ଷା ଦେବାକୁ ଯାଇଥିଲେ, ତାଙ୍କୁ ଦେଖି ଉତ୍କଳର

ମଧୁସୂଦନ କହିଲେ—ଆହେ ବାଳକ, ତୁମ୍ଭ ଗାଲରେ କଳା ଲାଗିଅଛି । ସେ କହିଲେ—ରୋଷେଇ କରି ଆସିଛି, କଳା ଲାଗିଥିବ । ଏହା ଶୁଣି ବାଃ ବାଃ କହି ମଧୁବାବୁ ଆଶୀର୍ବାଦ କରିଥିଲେ ।

ଯାହାଙ୍କ ଉତ୍ତମ ଚରିତ୍ର ଓ ବନ୍ଦୋବସ୍ତ ଲାଗି ସ୍କୁଲ ପଣ୍ଡିତଙ୍କ ପଦୋନ୍ନତି ହୋଇଥିଲା, ଖୁସି ହୋଇ ଇନ୍‌ସପେକ୍ଟର ଟଙ୍କାଟିଏ ପୁରସ୍କାର ଦେଇଥିଲେ, ସେ ଟଙ୍କାଟି ନିଜେ ନ ନେଇ ପଣ୍ଡିତଙ୍କ ପାଦତଳେ ଥୋଇ ସେ କହିଲେ—ଏ ଆପଣଙ୍କର ପ୍ରାପ୍ୟ, ମୋର ନୁହେଁ ! ଶରଣହୀନା ଘରଭଡ଼ାବାଲୀ ରସଗୋଲା ଭୋଗ ଦେବାରୁ ଯେ ଲୁଚାଇ ଫିଙ୍ଗି ଦେଇଥିଲେ, ସେଇ ସ୍ତ୍ରୀ ଲୋକ ଆଖିରେ ତାହା ପଡ଼ିଯିବାରୁ ସେ ତାଙ୍କୁ ଭଡ଼ା ଘରୁ ତଡ଼ି ଦେଇଥିଲା, ତଡ଼ା ଖାଇ ତାଙ୍କୁ ଝରିବାଟି ଗାଆଁରୁ ୯ ମାଇଲ ବାଟ ଚାଲି ଚାଲି ଆସିବାକୁ ହେଲା ।

ଚାଲୁ ଚାଲୁ ବାଟରେ ପଡ଼ିବାକୁ ହେଉଥିଲା, ବାଟରେ ମାକଡ଼ା ପଥର ଗଦା ଝୁଣ୍ଟି କରଡ଼ ହୋଇ ପଡ଼ି ସେ ଆଣ୍ଠୁ ଗଣ୍ଠି ଛିଣ୍ଡାଇଥିଲେ । ରାତି ୪ଟାରୁ ଉଠି ମନ୍ତ୍ର ସ୍ନାନ କରି ଗିନାରେ ପଖାଳ ଗଣ୍ଡିଏ ବାଡ଼ି ଖାଉଥିଲେ । ତାପରେ ଡାକ ରନର୍ ସହିତ ଦୌଡ଼ି ଦୌଡ଼ି ଆସି କଟକ ସ୍କୁଲରେ ସାଢ଼େ ଛଟା ବେଳେ ଉପସ୍ଥିତ ହେଉଥିଲେ, ପୁଣି ନ’ ମାଇଲ ବାଟ ଫେରିଲାବେଳେ ପାଚିଲା ଓଉ ଖାଇ ସେ ଭୋକ ଶୋଷ ମାରୁଥିଲେ ।

ନିଜେ ଗରିବ ବୋଲି ଯେ ଧନେ ହେଲେ କାହାକୁ କହି ନ ଥିଲେ, ସବୁ ଦୁଃଖ କଷ୍ଟ ସହି ଘୋର ଦାରିଦ୍ର୍ୟରେ ମଧ୍ୟ ଆତ୍ମମର୍ଯ୍ୟାଦା ରକ୍ଷା କରି ପାରିଥିଲେ, ଯେଡ଼େ ଗରିବ ହୋଇ ଚଳିଲେ ବି ଯେ ସାହାଯ୍ୟ ଲାଗି ପରର ଦ୍ୱାରସ୍ଥ ହେଉ ନ ଥିଲେ, ସ୍ୱତଃପ୍ରବୃତ୍ତ ହୋଇ କେହି ସାହାଯ୍ୟ କଲେ ବିନୀତଭାବରେ ଫେରାଇ ଦେଇଥିଲେ, ବାଲ୍ୟବନ୍ଧୁ କିଶୋରବାବୁ ତାଙ୍କ ଦୁରବସ୍ଥା ବୁଝି ପାରି ପିତାଙ୍କୁ କହି ୧୦୦ଟଙ୍କା ସାହାଯ୍ୟ ଆଣିଲେ, କିନ୍ତୁ ସେ ତାହା ଗ୍ରହଣ କଲେ ନାହିଁ । ନିରୁପାୟ ଅବସ୍ଥାରେ ପୁଣି କିଞ୍ଚିତ୍ ସାହାଯ୍ୟ ନ ଦେଲେ ବନ୍ଧୁଙ୍କ ମନରେ କଷ୍ଟ ହେବ ବୋଲି ସେ ତାଙ୍କର ନିତାନ୍ତ ଲୋଡ଼ା ମାତ୍ର ସାତୋଟି ଟଙ୍କା ଗ୍ରହଣ କରିଥିଲେ ।

ସେ ହଇଜାରେ ପଡ଼ିବା ସମ୍ବାଦ ଶୁଣିବା ମାତ୍ରେ ଛନକାରେ ସ୍ନେହମୟୀ ଭଉଣୀର ପ୍ରାଣବାୟୁ ଉଡ଼ି ଯାଇଥିଲା । ସେହି ଭଉଣୀ ତାଙ୍କି ବହୁତ ମାଛ ଖାଇବାକୁ ଦେଇଥିଲା, ତାଙ୍କ ପବିତ୍ର ସ୍ମୃତି ରକ୍ଷା ଲାଗି ୭୫ବର୍ଷ କାଳ ବା ସାରା ଜୀବନ ସେ ମାଛ ଛାଡ଼ି ଦେଇଥିଲେ ।

ମାସକୁ ଦୁଇଟଙ୍କା ଦରମା, ଗୋଟିଏ ଜମିଦାର ପିଲାକୁ ସେ ଟିଉସନ୍ କରୁଥିଲେ । ପିଲାଟା ଯେମିତି ଶ୍ରେଠା ଛ' ମାସ କାଳ ଦରମା ନ ଦେଇ ଦିନେ କହିବାରୁ ସେ ଦୁଇଟା ଅଚଳନ୍ତି ଟଙ୍କା ରତ୍ନାକର-ବାବୁଙ୍କ ଉପରକୁ ଫୋପାଡ଼ି ଦେଇଗଲା । ସେ ପଢ଼େଇବା ବନ୍ଦ କଲେ । ପିଲାଟା ବାରମ୍ବାର ଫେଲ ହେଲା । କିଛି ଉପାୟ ନ ପାଇ ସେ ରତ୍ନାକରବାବୁଙ୍କ ଶରଣ ପଶିଲା । ରତ୍ନାକରବାବୁ କହିଲେ—ଘଣ୍ଟାଏ ପଢ଼ାଇବି, ମାସକୁ ୫୦ ଟଙ୍କା ନେବି । ସେ ପଢ଼ାଇ ପାସ କରାଇଲେ ଓ ସମସ୍ତ ଟିଉସନ୍ ଟଙ୍କା ଫେରାଇ ଦେଲେ । ଅପକାରୀର ଉପକାର କରିବା କ୍ଷୁଦ୍ର ପ୍ରତି ମହତ୍ତ୍ୱ ହେବା ତାଙ୍କ ପ୍ରତିଶୋଧର ରୀତି । ସେ ଲେଖିଛନ୍ତି— "ପ୍ରକୃତ ପ୍ରତିହିଂସା କୌଣସି ଶତ୍ରୁର ଅପଥା ଦୋଷ ଦେଖାଇ ତାହାର ପ୍ରତିପତ୍ତି ନଷ୍ଟ କରିବାରେ ନାହିଁ—ଅଛି, କେବଳ ତାହାକୁ ନିଜର ମିତ୍ର ରୂପରେ ପରିଣତ କରିବାରେ ।"

ପରର ଅକଲ୍ୟାଣ କଲେ ନିଜର ଅକଲ୍ୟାଣ ହୁଏ, ତାଙ୍କର ଧ୍ରୁବ ବିଶ୍ୱାସ ଥିଲା ।

ଛାତ୍ରାବସ୍ଥାରେ ସେ ବହୁ ବିପଥଗାମୀ ବନ୍ଧୁଙ୍କୁ ସନ୍ମାର୍ଗକୁ ଆଣି ପାରିଥିଲେ । ନିର୍ମଳୀ ଫଳ ଯେପରି ଜଳକୁ ନିର୍ମଳ କରେ, ସେହିପରି ସେ ଯେଉଁଠି ରହୁଥିଲେ ସେଠା ବାତାବରଣକୁ ନିର୍ମଳ ରଖୁଥିଲେ । ଶ୍ରୀଯୁକ୍ତ ପତିଙ୍କ ଜନ୍ମ ୧୮୮୯ ଖ୍ରୀଷ୍ଟାବ୍ଦରେ ପଣା ସଂକ୍ରାନ୍ତି ଦିନ, ମୃତ୍ୟୁ ୨୨ । ୨ । ୭୯ ସକାଳ ୫ଟା ୫୫ ମିନିଟ୍ ୮୯ ବର୍ଷ ବୟସରେ ।

ତାଙ୍କର ରଚନା—ସ୍ୱପ୍ନଭଙ୍ଗ, ବିବର୍ତ୍ତନବାଦ, ପ୍ରବନ୍ଧ ପ୍ରକାଶ, ୧ମ ଓ ୨ୟ ଖଣ୍ଡ History of Philosophy, କେତେକ ସଂସ୍କୃତ ଓ ଓଡ଼ିଆ କବିତା, ଶେଷ ରଚନା "ସ୍ମୃତି ପଥେ ଆତ୍ମଜୀବନ ଚରିତ" ଅସମ୍ପୂର୍ଣ୍ଣ—

ଉପନିଷଦ୍ ଓ ଭାରତୀୟ ଦର୍ଶନରେ ତାଙ୍କର ଗଭୀର
ଅନୁଶୀଳନ ଥିଲା । ସଂସ୍କୃତରେ ସେ ସୁପଣ୍ଡିତ । ସଂସ୍କୃତ ଓ ଓଡ଼ିଆ ଛନ୍ଦ
ତାଙ୍କ ଆୟତ୍ତରେ ଥିଲା । ସେ ଅନାୟାସରେ ଓଡ଼ିଆ ଓ ସଂସ୍କୃତ
କବିତାମାନ ରଚନା କରି ପାରୁଥିଲେ, ଅବଶ୍ୟ ବ୍ୟୁତ୍ପତ୍ତି ବଳରେ ।
ସେଥିରୁ କେତୋଟି 'ଉତ୍କଳ ସାହିତ୍ୟରେ' ପ୍ରକାଶ ପାଇଥିଲା । ସେ
ସବୁକୁ କବିତା ନ କହିବାର କୌଣସି ଦୃଢ଼ କାରଣ ନ ଥିଲା । ସମସ୍ତ
ପୁଷ୍ପରୁ ସୁବାସ ମିଳେ ନାହିଁ, ସବୁ ଶୁକ୍ତିରେ ମୁକ୍ତା ନ ଥାଏ । ସେହିପରି
ସବୁ କବିତାରେ କବିତ୍ୱ ଖୋଜିବା ବୃଥା । କବିତ୍ୱହୀନ କବିତା
ପୃଥିବୀରେ ସର୍ବାଧିକ । ଛନ୍ଦ ଉପଧା ଅଳଙ୍କାର କାହିଁରେ କିଛି ଦୋଷ
ନାହିଁ । ଅଭ୍ୟାସରେ ପଦ ପଡ଼ି ଯାଉଛି, ଗତାନୁଗତିକ ରୀତି କେଉଁଠି
କଟରେ ଅନୁପ୍ରାସ ବା ଯମକ, ମାଧୁର୍ଯ୍ୟ ବା ପ୍ରସାଦ ଗୁଣ, ଚସର କଳ
ଧ୍ୱନି ବା ଧ୍ୱନିର ଚମତ୍କାରିତା ସେଥିରେ ଦୁର୍ଲଭ, ତଥାପି ସେ ସବୁ
ଗୁଳେ, ବହୁବର୍ଷ ତିଷ୍ଠି ରହେ, ଅବଶ୍ୟ ଅପେକ୍ଷାକୃତ ଭବ୍ୟବସ୍ତୁମାନଙ୍କ
ସହିତ ହୀରକ ସହିତ ଉପଳଖଣ୍ଡ ପରି । ରତ୍ନାକରଙ୍କ କବିତାରେ ରସର
ମାଧୁର୍ଯ୍ୟ ନାହିଁ, ଅଳଙ୍କାରର ବୃତ୍ତଭୂଷା ବା ବକ୍ରୋକ୍ତି ନାହିଁ । ସେ ସମସ୍ତ
ସରଳଭାବାତ୍ମକ । ଭାବାଦର୍ଶରେ ସେ ରାଓ କବିଙ୍କ ଅନୁକରଣକାରୀ
ପଥିକୃତ୍ । କିନ୍ତୁ ରତ୍ନାକର ଗଦ୍ୟ ଲାଗି ପ୍ରସିଦ୍ଧ । ଯେ ଢଙ୍ଗରେ ସେ
କାହାକୁ ଅନୁସରଣ କରି ନାହାନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ତାଙ୍କର
ଭାବର ଉତ୍ସ । ସେଥିରୁ ସେ ଅକୁଣ୍ଠ ଆହରଣ କରିଛନ୍ତି । ଅଜଣା
ଭାବରେ ପରିବେଷଣ କରି ଅଛନ୍ତି । ଓଡ଼ିଆ ସାହିତ୍ୟରୁ ଚିନ୍ତାର ଦାରିଦ୍ର୍ୟ
ଦୂର କରିବାରେ ତାଙ୍କ ଲେଖା ଅଳ୍ପ ସାହାଯ୍ୟ କରି ନାହିଁ । ନୂତନ
ଶୈଳୀର ପ୍ରବର୍ତ୍ତକ ସେ, ନବୀନ ସ୍ରଷ୍ଟାଭାବେ ଅବଶ୍ୟ ଅଭିନନ୍ଦନୀୟ ।
କିନ୍ତୁ ତାଙ୍କ ବାକ୍ୟ ଦୀର୍ଘ, ସଂସ୍କୃତ ଶବ୍ଦର ବହୁଳ ବ୍ୟବହାର ଯୋଗୁଁ
ଆଡ଼ମ୍ବରମୟ । ପ୍ରବନ୍ଧର ଆମୂଳଚୂଳ ପ୍ରାୟ ଗୋଟିଏ ସମତଳସ୍ତର,
ସେଥିରେ ଆବେଗର ଆନନ୍ଦ ବା ଉଦ୍‌ବେଗର ଅବସାଦ ନାହିଁ । ବିଷୟ
ସାମାଜିକ ତତ୍ତ୍ୱାତ୍ମକ, ରଚନାଶୈଳୀ ଗାମ୍ଭୀର୍ଯ୍ୟମୟ, କିନ୍ତୁ ଶୁଷ୍କ ନୀରସ,
ହାସ୍ୟରସ ବିରଳ, ରମ୍ୟତା ଦୁର୍ଲଭ । ପ୍ରାୟ ସମସ୍ତ ପ୍ରବନ୍ଧ ତତ୍ତ୍ୱମୟ ।
ଏକାବେଳକେ ଏକାଧିକ ପ୍ରବନ୍ଧ ପାଠ ଧୈର୍ଯ୍ୟସାପେକ୍ଷ, କ୍ଲାନ୍ତ ଉପେକ୍ଷ ଗିରି
ଲଙ୍ଘନ ପରି ଭୟଙ୍କର; ଅବଶ୍ୟ ଲଘୁ ସାହିତ୍ୟ ପାଠକ ପ୍ରତି । କିନ୍ତୁ ଏହା
ଚଞ୍ଚଳ ବିକ୍ଷିପ୍ତ ଚିତ୍ତକୁ ସ୍ଥିର ଶାନ୍ତ ଓ ସଂଯତ ରଖେ ।

ଗୁରୁକୁଳ ଶିକ୍ଷାର ଗ୍ରାହକ ସେ ପ୍ରାଚୀନ ଭାରତୀୟ ଆଦର୍ଶର ପୁନଃ ପ୍ରବର୍ତ୍ତନର ପକ୍ଷପାତୀ । ସଂଯତ ସତ୍ୟନିଷ୍ଠ, ସୁନ୍ଦର ଜୀବନ ସୃଷ୍ଟି ତାଙ୍କର ଲକ୍ଷ୍ୟ । ପ୍ରବନ୍ଧ ସବୁ ନାନା ନୀତି ଉପଦେଶରେ ପୂର୍ଣ୍ଣ, ଶିକ୍ଷଣୀୟ । ଏଥିରେ କଳ୍ପନା ବିଳାସ ବା କବିର ସ୍ୱପ୍ନ ନାହିଁ । ନାହିଁ କିଛି ହେଲେ କାବ୍ୟିକ ଆବେଗ ବା ଉଚ୍ଛ୍ୱାସ । ଅନ୍ତରରେ ଦୃଢ ଆତ୍ମପ୍ରତ୍ୟୟ । ସେ ମହତ୍ ଭାବ ବପନ କରି ଯାଇଛନ୍ତି । ସେଥିରୁ ମହତ୍ ବ୍ୟକ୍ତିତ୍ୱ ଜନ୍ମ ହେବ ବୋଲି । କଥା ଅଛି-ଶୈଳୀ ହିଁ ଲେଖକ । ପ୍ରକୃତରେ 'ପ୍ରବନ୍ଧ ପ୍ରକାଶ' ଗୋଟିଏ ସ୍ୱଚ୍ଛ ମୁକୁର । ତାର ସ୍ତରେ ସ୍ତରେ ରତ୍ନାକରବାବୁ ଫୁଟି ଦିଶନ୍ତି ।

ସେ ଆଂଶିକ ଭାବରେ ସମାଜର ନାନା ସ୍ତରର ବ୍ୟକ୍ତିଙ୍କର ଚରିତ୍ର ଚିତ୍ରଣ କରିଛନ୍ତି । ସ୍ୱାର୍ଥପର, କୃପଣ, ଅହମ୍ମନ୍ୟ, ପ୍ରବଞ୍ଚକ କୃତଘ୍ନ, ମର୍ଯ୍ୟାଦା-ଜ୍ଞାନହୀନ, ପରସ୍ୱାପହରଣକାରୀ, ସନ୍ତୁଷ୍ଟ, ନିର୍ମଳମନା, ଜ୍ଞାନୀ, ତପସ୍ୱୀ ତ୍ୟାଗୀ ଇତ୍ୟାଦି । ସାହିତ୍ୟରେ ଗୁରୁର ଗୁରୁତ୍ୱ ସେ ଭୁଲି ପାରି ନାହାନ୍ତି । ଉପଦେଶ କେଉଁଠି କାନ୍ତାସମ୍ମିତ ହୋଇପାରି ନାହିଁ । ତଥାପି ରତ୍ନାକରଙ୍କର ସ୍ୱାକ୍ଷର ସର୍ବତ୍ର ସ୍ୱୀକୃତ । ଜ୍ଞାନର ମଶାଲ ଧରି ସେ ଆଗେଇ ଚାଲିଛନ୍ତି ତାଙ୍କର ଅଗଣିତ ଛାତ୍ର ମଣ୍ଡଳରେ । କିନ୍ତୁ 'ସ୍ମୃତି ପଥେ'ର ଲେଖକ କୌଣସି ଆତ୍ମଜୀବନ ଚରିତ ଲେଖକର ପଛରେ ଯାଇ ନାହାନ୍ତି । ସହଜ, ସରଳ, ସରସ ଅନୁଭୂତିର ପ୍ରାଚୁର୍ଯ୍ୟ ଓ ସାବଲୀଳ ଭଙ୍ଗୀରେ ତାଙ୍କ ଶୈଳୀ ଜୀବନ୍ତ ! ଏହା ଅପୂର୍ଣ୍ଣ । ତଥାପି ଅତୁଳନୀୟ । ସାହିତ୍ୟିକ ବ୍ୟକ୍ତିତ୍ୱର ନୂତନ ଦିଗ୍‌ବଳୟର ସଙ୍କେତ ଦେଇଛି ସେ । ରତ୍ନାକରଙ୍କ ବ୍ୟକ୍ତିତ୍ୱ କି ଆକର୍ଷଣୀୟ !

ମହାପୁରୁଷଙ୍କର ଗୋଟିଏ ଗୁଣ ତାଙ୍କଠାରେ ପୂର୍ବାପର ବିଦ୍ୟମାନ ଥିଲା । ଚିନ୍ତାବାକ୍ ଓ କର୍ମରେ ଏକରୂପତା । ଅନ୍ତର ବାହାର ତାଙ୍କର ସମାନ । ତେଣୁ କଲେଜର ଶିକ୍ଷକ ଥିଲେ ବି ସେ ପ୍ରକୃତପକ୍ଷେ ସମାଜର ଶିକ୍ଷକ ହୋଇପାରିଥିଲେ । ଧନମାନ ବା ଯଶ ଅର୍ଜନରେ ସେ ଆତ୍ମୋନ୍ନତିର ସ୍ୱରୂପ ଦେଖି ପାରୁ ନ ଥିଲେ । ଆତ୍ମୋନ୍ନତି ଅର୍ଥ ତାଙ୍କର ବିଚାରରେ ଆଧ୍ୟାତ୍ମିକ ଉନ୍ନତି—ନୈତିକ ଉନ୍ନୟନ । ଚରିତ୍ରବଳରେ ସେ ଚିରବନ୍ଦ୍ୟ ଥିଲେ । ତାଙ୍କ ସଂକଳ୍ପ ଦୃଢ଼ ଥିଲା । ମନୋବଳ ଅସାଧାରଣ ଥିଲା । ସେଇ ବଳରେ ନାନା ରୋଗ ବ୍ୟାଧି ବିରୁଦ୍ଧରେ ସଂଗ୍ରାମ କରି ହାଡ଼ ଚମଖଣ୍ଡି ମାତ୍ର ଦେହ ଦୀର୍ଘଜୀବୀ ଓ ଆଜୀବନ

କାର୍ଯ୍ୟକ୍ଷମ ରହି ପାରିଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସ୍ମୃତି ଉଜ୍ଜ୍ୱଳ ଓ ବୁଦ୍ଧି ନିର୍ମଳ ରହିଥିଲା । ଈଶ୍ୱରଙ୍କ ପ୍ରସନ୍ନତା ଲାଭ ତାଙ୍କର ଏକ ମାତ୍ର ଜୀବନ ସାଧନାର ସିଦ୍ଧି । କିନ୍ତୁ ହଜାଇ ହରାଇ ସେ କେବେ ବିଷଣ୍ଣ ହେବାର ଦେଖି ନାହିଁ—ବରଂ

'ହଜନାହିଁ ଯାର କେବେ କିଛିହିଁ ରତନ
ଏ ଦୀନ ସଂସାରେ ସେଇ ହୀନ ଅକିଞ୍ଚନ
ସେ ପୁଣି ଦରିଦ୍ରତର······

ଏଥିରେ ସେ ବିଶ୍ୱାସୀ, ତେଣୁ ବିପଦରେ ତାଙ୍କଠାରୁ ମିଳୁଥିଲା ସାହସ, ଆଶ୍ୱାସନା, ଭାଗ୍ୟବାନ୍ତ ହୃଦୟରେ ଯାଇ ଲଘୁ ଓ ପ୍ରସନ୍ନ ମନରେ କେତେଥର ଫେରିଛି ତାଙ୍କ ଘରୁ । ତାର ଆଶୀର୍ବାଦ ମେ, ଭଙ୍ଗା ଦଦରା ଘୁଡି ଭିତରେ ତାଙ୍କର ଆନନ୍ଦ ଝଲମଲ କରୁଥିଲା । ଅର୍ଥଲୋଭ ତାଙ୍କର ନ ଥିଲା । ଜୀବନରେ କିଛି ଯଦି ସଞ୍ଚୟ କରିଥିଲେ ତାହା ଜ୍ଞାନ, ଅର୍ଥ ନୁହେଁ ।

ହଇଜାରେ ଚଉଥିଲାବେଳେ ତାଙ୍କପ୍ରତି ସ୍ନେହମୟୀ ଦୋକାନୀ ବୁଢ଼ୀ ଝାଞ୍ଜିରିମଙ୍ଗଳା ଠାକୁରାଣୀଙ୍କୁ ବୋଦାବଳୀ ଯାଚିଥିଲେ । ଭଲ ହେବା ପରେ ସେ କଥା କହିବାରୁ ସେ ବଳୀ ପରିବର୍ତ୍ତରେ ହୋମ ଓ ଭୋଗରାଗ କରିଥିଲେ । ମାଆ ସେ, ତାର ସନ୍ତାନର ରକ୍ତ ପାନରେ ତୁଷ୍ଟ ହୋଇ ପାରେନା—ଦୋକାନୀ ବୁଢ଼ୀ ମାଉସୀକି ସେ ବୁଝାଇ ଦେଇଥିଲେ ।

ପୂର୍ବ ଦରମା ଛାତ୍ର ଲାଗି ଦରଖାସ୍ତ କରିବାକୁ ତାଙ୍କୁ କଲେଜର ସାଥୀ ପିଲମାନେ ଥରେ ପ୍ରବର୍ତ୍ତାଇଲେ । ସେ ସେମାନଙ୍କ ସହିତ ଯୁକ୍ତି କଲେ, ପାଇବା ଲାଗି ଯୋଗ୍ୟ ବିବେଚିତ ହୋଇପାରେ କିନ୍ତୁ ଦରିଦ୍ର ନୁହେଁ । ମୁଁ କାହିଁକି ଦରଖାସ୍ତ କରିବ ? ପିଲମାନେ ବୁଝାଇଲେ, ତୁମେ ପାଇଲେ ଓଡ଼ିଆ ପିଲଙ୍କ ଲାଗି ଗୋଟିଏ ସିଡ଼ି ତିଆରି ହୋଇଯିବ । ଏ ପର୍ଯ୍ୟନ୍ତ ରେଭେନ୍ସା କଲେଜରୁ କୌଣସି ଓଡ଼ିଆ ପିଲା ପୂର୍ବ ଦରମା ଛାତ୍ର ପାଇନାହିଁ ।

ଦରିଦ୍ର ଛାତ୍ରମାନଙ୍କ ମଙ୍ଗଳ କାମନାରେ ସେ ଦରଖାସ୍ତଟିଏ ଦେଲେ, କିନ୍ତୁ କାହାଠାରୁ ସୁପାରିସ ପତ୍ର ଆଣିଲେ ନାହିଁ । ପ୍ରିନ୍ସିପାଲ୍

ପଚ୍ଚାରିବାରୁ ସେ ଯୁକ୍ତି କଲେ—ମୁଁ ସାମୟିକ ଭାବେ ଅଭାବରେ ପଡ଼ି-ଥାଇପାରେ, କିନ୍ତୁ ଗରିବ ନୁହେଁ । କଅଣ କହି କହାକୁ ସୁପାରିସ୍ ପତ୍ର ମାଗିଥାନ୍ତି ?

ପ୍ରିନ୍‌ସିପାଲ ପଚ୍ଚାରିଲେ—ତୁମେ ଅଭାବରେ ପଡ଼ିଥାଇ ପାର, ଗରିବ ନୁହଁ, ଏ କପରି କଥା ?

"ଇଂଲଣ୍ଡର ମହାମାନ୍ୟ ସମ୍ରାଟ ଯୁଦ୍ଧବେଳେ ଆମେରିକାଠାରୁ ବହୁ ଡଲାର ଧାର କରିଥିଲେ । ଏହା ସାମୟିକ ଅଭାବ ହେତୁରୁ, ରାଜା ଗରିବ ବୋଲି ସେ ଅଣିଲେ ତା ନୁହେଁ ।"

ପ୍ରିନ୍‌ସିପାଲ ଲ୍ୟାମ୍ବର୍ଟ ସାହେବ ଛାତ୍ରର ଏଇ ସ୍ୱାଧୀନ ମନୋବୃତ୍ତିରେ ମୁଗ୍ଧ ହୋଇ ପୁରା ଦରମା ଛାଡ଼ କରିଦେଲେ ।

ଲକ୍ଷ୍ମୀଙ୍କ ମନ୍ଦିରରେ ଦର୍ଶନ ପରେ ଲୋକେ କାହିଁକି ବସନ୍ତି ? ଲକ୍ଷ୍ମୀଙ୍କ ସମ୍ପର୍କରେ ଆସି ଲୋକେ ଅଳସ ହୁଏ । ଏହି ଉପବେଶନ ସେଇ ଆଳସ୍ୟର ହିଁ ପ୍ରତୀକ । ରତ୍ନାକରବାବୁ ଯୁକ୍ତି କରୁଥିଲେ ।

ବିଳାସିତା ତାଙ୍କୁ ସ୍ପର୍ଶ କରି ନ ଥିଲା । ସେ କେବେ ସିନେମା ଥିଏଟର ଯିବାର ଦେଖିନାହିଁ । ଜୀବନର ପ୍ରୟୋଜନ ତାଙ୍କର ଅତି ଅଳ୍ପ ଥିଲା । ସେ ଛଟଙ୍କିଏ ଚାଉଳର । ଭାତ, ଟିକିଏ ପିତାଶାଗ, ଟିକିଏ ବସା ଦହି, ଡ଼ାଲି ପାଣି ବା ସିଝା ପରିବା ଖାଉଥିଲେ । ଦୁଧ, ଘିଅ ବା ମାଛ, ମାଂସର, ପାଖ ମାଡ଼ୁନଥିଲେ ।

ଛାତ୍ର ମହଲରେ ଅଧ୍ୟାପକ ପତିଙ୍କର ପ୍ରଚୁର ପ୍ରତିଷ୍ଠା ଥିଲା । ଛାତ୍ରମାନଙ୍କୁ ସେ ପୁତ୍ର ଦୃଷ୍ଟିରେ ଦେଖୁଥିଲେ । ଅଧ୍ୟାପକ ଭାବରେ ସେ ଏକାନ୍ତ ନିରଳସ, ପ୍ରସ୍ତୁତ ନ ହୋଇ ସେ କେବେ ଶ୍ରେଣୀରେ ପ୍ରବେଶ କରୁ ନ ଥିଲେ । ଅସୁସ୍ଥତା ମଧ୍ୟରେ ବି ଅଧ୍ୟାପନ-କୁଣ୍ଠ ହେବାର ତାଙ୍କୁ ଦେଖି ନାହିଁ । ଅଭାବରେ କେହି ଛାତ୍ର ଦ୍ୱାରସ୍ଥ ହେଲେ ସେ ନାନା ସୁପରାମର୍ଶ ଦେଇ ତାର ଇଚ୍ଛା ଶକ୍ତି ବଢ଼ାଇ ଦେଉଥିଲେ । ପକେଟ ଶୂନ୍ୟ ହେବା ପର୍ଯ୍ୟନ୍ତ ସେ ଦାନ କରୁଥିଲେ ।

"ଛାତ୍ରାଣାଂ ଅଧ୍ୟୟନଂ ତପଃ" ସ୍ୱ ଜୀବନରେ ଏହା ଅକ୍ଷରେ ଅକ୍ଷରେ ସେ ପାଳନ କରିଥିଲେ । ଯେତେବେଳେ ଦେଖିବ କିଛି ପଢ଼ୁଛନ୍ତି ବା ଲେଖୁଛନ୍ତି । ତାଙ୍କ ତୁଣ୍ଡରୁ କେବେ କାହାର ନିନ୍ଦା ଶୁଣି

ନାହିଁ । ବରଂ ତାଙ୍କ ସମ୍ବନ୍ଧରେ କେହି କାହାର ନିନ୍ଦା କଲେ ସେ ନିନ୍ଦିତର ପକ୍ଷ ଅବଲମ୍ବନ କରିଥାନ୍ତି । ତାର ପରମ ବନ୍ଧୁପର ।

"ସଂସାରେ ଥାଇ ମୁଁ ସଦା ଉଦାସୀନ, ଉଦାସୀନପ୍ରାୟ କଟାଇଲି ଦିନ ।" ଏ ଉକ୍ତି ତାଙ୍କ ପ୍ରତି ପ୍ରଯୁଜ୍ୟ ।

"ଈଶ୍ୱରେଚ୍ଛା ବଳୀୟସୀ"—ଈଶ୍ୱରଙ୍କ ଇଚ୍ଛାରେ ସଂସାର ଚାଲିଛି । ସେ ଯାହାକୁ ଯାହା ଦେବାର ଦେଇଛନ୍ତି । ଯେତେବେଳେ ଯାହାକୁ ନେବାର କଥା ନେଇ ଯାଉଛନ୍ତି । ଦୈବକୁ ନିନ୍ଦିବାର ନାହିଁ—କିଛି ଦୁଃଖ କରିବାର ନାହିଁ । "ଏ ସୃଷ୍ଟି ଅମୃତମୟ ହେ" । ଆନନ୍ଦ ଦର୍ଶନ ତାଙ୍କର ଜୀବନ ଦର୍ଶନ । ଅଦ୍ୱୈତବାଦୀ ସେ କିନ୍ତୁ କର୍ମରେ ଦୃଢ଼ବିଶ୍ୱାସୀ । ଅସୁସ୍ଥ ଦେହରେ ସ୍ୱପ୍ରତିଷ୍ଠିତ ବିଶ୍ୱବାଣୀ ହାଇସ୍କୁଲର ହାନିଲାଭ ବୁଝିଯିବାର ଦେଖିଛି । ଏ ବିଷୟରେ କେହି କିଛି କହିଲେ କହନ୍ତି—ଅନ୍ୟର ଭଲ ମନ୍ଦ ବୁଝିବା ମୋର କର୍ତ୍ତବ୍ୟ, ମୋ ଭଲ ମନ୍ଦ ବୁଝିବାକୁ ସ୍ୱୟଂ ଭଗବାନ ଅଛନ୍ତି ।

"ଗୁରୁର୍ବ୍ରହ୍ମା, ଗୁରୁର୍ବିଷ୍ଣୁ, ଗୁରୁର୍ଦେବ ମହେଶ୍ୱରଃ—ରତ୍ନାକର-ବାବୁ ଏହିପରି ଗୁରୁ ଆସନର ଅଧିକାରୀ । ନିର୍ଲୋଭ, ସରଳ, ସୁନ୍ଦର, ଗୌରବମୟ, ଜ୍ଞାନଗମ୍ଭୀର ପ୍ରଶାନ୍ତମୂର୍ତ୍ତି । ଦେଖିଲାମାତ୍ରେ ପାଦତଳେ ଲୋଟିଯିବାକୁ ଚିତ୍ତ ବ୍ୟାକୁଳ ହୋଇ ଉଠେ ।

---

# ଯୋଗଜନ୍ମା ଆଚାର୍ଯ୍ୟ ରତ୍ନାକର

**ଶ୍ରୀ ଗଦାଧର ଦତ୍ତ**

ଉତ୍କଳର ବରପୁତ୍ର ଯୋଗଜନ୍ମା ବଶିଷ୍ଟ ଶିକ୍ଷାବିତ୍ ଏବଂ ସୁନାମଧନ୍ୟ ଦାର୍ଶନିକ ଅଧ୍ୟାପକ ଶ୍ରୀ ରତ୍ନାକର ପତିଙ୍କର ପରଲୋକ ଅତ୍ୟନ୍ତ ଦୁଃଖ ଦାୟକ । ତାଙ୍କ ଭଳି ଜଣେ ମିତବାକ୍ ଆଧ୍ୟାତ୍ମିକଶକ୍ତି ସମ୍ପନ୍ନ ମହାପ୍ରାଣ ପ୍ରତିଭାପୂର୍ଣ୍ଣ ବ୍ୟକ୍ତିଙ୍କର ସ୍ପର୍ଶ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରୁଥିଲା । ଦେଶରୁ ଏହିପରି ମହାପ୍ରାଣ ବ୍ୟକ୍ତିମାନେ କାଳର ସ୍ରୋତରେ କ୍ରମେ ଅପସରି ଯାଉଛନ୍ତି । ଫଳରେ ଆମ ସମାଜର ବିଭିନ୍ନ କ୍ଷେତ୍ରରେ ଶୂନ୍ୟତା ଉପଲବ୍ଧି କରାଯାଉଛି । ଦେଶରେ ବର୍ତ୍ତମାନ ଯେପରି ଉଚ୍ଛୃଙ୍ଖଳତା, ଦୁର୍ନୀତି ଏବଂ ଶଠତାର ତାଣ୍ଡବ ଲୀଳା ଚାଲିଛି, ତାର କାରଣ ଅନୁସନ୍ଧାନ କଲେ ଦେଖାଯିବ ଯେ ଶିକ୍ଷାନୁଷ୍ଠାନମାନଙ୍କରେ ଉପଯୁକ୍ତ ଶିକ୍ଷକ ଏବଂ ଶିକ୍ଷାର ପ୍ରଣାଳୀରେ ଯଥେଷ୍ଟ ତ୍ରୁଟି ରହିଛି । ଗୁରୁ ଶିଷ୍ୟ ସମ୍ପର୍କ କ୍ରମେ ତିକ୍ତରୁ ତିକ୍ତତର ହେଉଛି । କୋମଳମତି ବାଳକ ବାଳିକାମାନଙ୍କୁ ଯୋଗ୍ୟ ନାଗରିକ ରୂପେ ଗଠନ କରିବା ହେଉଛି, ଶିକ୍ଷକମାନଙ୍କର ଦାୟିତ୍ୱ । ଶିକ୍ଷକ କହିଲେ ପ୍ରାଥମିକ ବିଦ୍ୟାଳୟରୁ ମହା ବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ବୁଝାଏ, ଶିକ୍ଷାୟତନର ସବୁ ସ୍ତରରେ ଆଦର୍ଶ ଶିକ୍ଷକର ପ୍ରୟୋଜନ । କିପରି ଆଦର୍ଶ ଶିକ୍ଷକ ହୁଅନ୍ତି, ତାହା ଯୋଗଜନ୍ମା ଆଚାର୍ଯ୍ୟ ରତ୍ନାକରଙ୍କର ଜୀବନୀରୁ ଜଣାପଡ଼େ । ଦରିଦ୍ର ଅବସ୍ଥାରୁ ନିଜର ଶିକ୍ଷା ଆରମ୍ଭ କରି ନିଜର ଅଧ୍ୟବସାୟ ବଳରେ ସେ କିପରି ଉଚ୍ଚକୋଟିର ଆଦର୍ଶ ଶିକ୍ଷକ, ପଣ୍ଡିତ, ଦାର୍ଶନିକ ଏବଂ ଆଧ୍ୟାତ୍ମ ଶକ୍ତି ସମ୍ପନ୍ନ ମହାନ ବ୍ୟକ୍ତି ହୋଇ ପାରିଥିଲେ, ତାହା ଅନୁଧ୍ୟାନର ବିଷୟ ।

ସେ ଥିଲେ ମହାନ୍ କର୍ମଯୋଗୀ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର କର୍ମ ତତ୍ପରତା ଥିଲା । ଶିକ୍ଷା ସମ୍ପର୍କୀୟ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ନିରବଚ୍ଛିନ୍ନ କର୍ମ ମଧ୍ୟରେ ହିଁ ତାଙ୍କର ଜୀବନର ଅବସାନ ହେଲା । ତାଙ୍କୁ ଦେଖିଲାମାତ୍ରେ ଭକ୍ତିରେ ମୁଣ୍ଡ ସ୍ୱତଃ

ନଇ ଆସେ । କେବଳ ଉଚ୍ଚଶିକ୍ଷା ଦ୍ୱାରା ଜଣେ ଉପଯୁକ୍ତ ଶିକ୍ଷକ ହୋଇ ପାରିବେ ନାହିଁ । ଯୋଗଜନ୍ମା ଆଚାର୍ଯ୍ୟ ରତ୍ନାକରଙ୍କର ଯେପରି ବହୁମୁଖୀ ପ୍ରତିଭା ଥିଲା ସେହିପରି ପ୍ରତିଭା ସମ୍ପନ୍ନ ବ୍ୟକ୍ତି ହିଁ ଶିକ୍ଷକ ପଦବାଚ୍ୟ । ଏହିଭଳି ପ୍ରତିଭା ସମ୍ପନ୍ନ ମନୀଷୀଙ୍କର ତତ୍ତ୍ୱାବଧାନରେ ଆମ ଦେଶ କ୍ରମେ ଦରିଦ୍ରରୁ ଦରିଦ୍ରତର ହେଉଛି । ମୋର ବିଶ୍ୱାସ ଏହିପରି ପ୍ରତିଭା ସମ୍ପନ୍ନ ମନୀଷୀମାନଙ୍କର ଆଦର୍ଶ ଜୀବନର ସନ୍ଧାନ ଏବଂ ପ୍ରତିଚ୍ଛବି ଆମ୍ଭମାନଙ୍କ ଉପରେ ପଡ଼ିଲେ ଆମେ ନିଜକୁ ଅନେକ ପରିମାଣରେ ସୁଶୃଙ୍ଖଳିତ କରି ପାରିବୁ ।

ଏହି ଅବସରରେ ମୁଁ ସେହି ପରଲୋକ ଗତ ମହାନ୍ ଆତ୍ମାର ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

---

# ମୋର ଅନ୍ତରଙ୍ଗ ବନ୍ଧୁ

ଶ୍ରୀ ଧର୍ମାନନ୍ଦ ଆଚାର୍ଯ୍ୟ

ଶ୍ରୀଯୁକ୍ତ ରତ୍ନାକର ପତିଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ ୧୯୦୫ ମସିହାରେ । ସେ କଟକ ପ୍ୟାରିମୋହନ ଏକାଡେମୀର (୮ମ ଶ୍ରେଣୀ)ରେ ନାମ ଲେଖାଇଥିଲେ । ମୁଁ ତାଙ୍କର ସହପାଠୀ ଥିଲି ।

୧୯୧୦ ମସିହାରେ ଆମ୍ଭେ ଛଅ ଜଣ ପ୍ରବେଶିକା (ମ୍ୟାଟ୍ରିକ୍) ପରୀକ୍ଷାରେ ୧ମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲୁଁ । ଶ୍ରୀଯୁକ୍ତ ପତି ଉଚ୍ଚସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇ ରେଭେନ୍ସା କଲେଜରେ ଆଇ. ଏ. ପଢ଼ିଲେ । ଅନ୍ୟ ୪ଜଣ ସେଇ କଲେଜରେ ପଢ଼ିଲେ । କିନ୍ତୁ ଅର୍ଥାଭାବରୁ ମୁଁ ରହିଲି ।

ଓଡ଼ିଶାର ସ୍ୱର୍ଗତ ପୋଲିସ ଆଇ. ଜି. ଶ୍ରୀ ରାମଚନ୍ଦ୍ର ଦାସଙ୍କ ବାଲ୍ୟାବସ୍ଥାରେ ଗୃହଶିକ୍ଷକ ହେବା ପାଇଁ, ଜଣେ ଶିକ୍ଷକଙ୍କୁ ପଠାଇବା ସକାଶେ ଉତ୍କଳମଣି ଗୋପବନ୍ଧୁ ସ୍ୱର୍ଗତ ଡ଼. ପି. ଆଇ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କୁ କହିବାଲାଗି ଆଚାର୍ଯ୍ୟ ହରିହରଙ୍କ ନିକଟକୁ ପତ୍ର ଦେଇଥିଲେ । ଆଚାର୍ଯ୍ୟ ହରିହର ଗୃହଶିକ୍ଷକ ଭାବେ କାର୍ଯ୍ୟ କରିବାପାଇଁ ମୋତେ ଉତ୍କଳମଣିଙ୍କ ପାଖକୁ ବାରିପଦା ପଠାଇଦେଲେ । ଆଚାର୍ଯ୍ୟ ହରିହର ପି. ଏମ୍. ଏକାଡେମୀରେ ମୋର ଓ ପତି ମହାଶୟଙ୍କର ଶିକ୍ଷା ଗୁରୁ ଥିଲେ । ମୋର ବାରିପଦା ଅବସ୍ଥାନ ସମୟରେ ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ବଡ଼ଦିନ ଶୀକାର ବିନୋଦ କାଳରେ ତାଙ୍କ ନିଜର ଶ୍ୟାଳକଙ୍କ ଦ୍ୱାରା ଗୁଳି ମାଡ଼ରେ ଆହତ ହୋଇ ପ୍ରାଣ ହରାଇଲେ । ସଂଧ୍ୟାକାଳୀନ ଅନ୍ଧାରରେ ତାଙ୍କ ଶ୍ୟାଳକ ତାଙ୍କୁ ଭ୍ରମରେ ବାଘ ମନେକରି ଗୁଳି ମାରିଥିଲେ ।

ମହାରାଜାଙ୍କ ମୃତ୍ୟୁ ପରେ ଉତ୍କଳମଣି ବାରିପଦାର State Pleader କାର୍ଯ୍ୟ ଛାଡ଼ି କଟକରେ ଚଉଧୁରୀ ବଜାର ଧର୍ମଶାଳା ପାଖ ଗୋଟିଏ କୋଠାଘରେ ବାସ କରି ଓକିଲ ବ୍ୟବସାୟ ଆରମ୍ଭ କଲେ ।

ସତ୍ୟବାଦୀ ବନବିଦ୍ୟାଳୟର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରିବା ଉତ୍କଳମଣିଙ୍କର ବାରିପଦା ଗସ୍ତର ଆସିବା ପ୍ରଧାନ ଉଦ୍ଦେଶ୍ୟ ।

ପତିଙ୍କର କବିତା ରଚନା ଶକ୍ତି ସିଦ୍ଧେଶ୍ୱରପୁର ମି. ଇ. ସ୍କୁଲର ୫ମ ଶ୍ରେଣୀରୁ ଜଣା ପଡ଼ିଥିଲା । ଗଣେଶ ଚତୁର୍ଥୀରେ ଗଣେଶଙ୍କ ପାଖରେ ଆବୃତ୍ତି କରିବା ମାନସରେ ସେ ଭାବଚନ୍ଦ୍ରର ମନୋମୁଗ୍ଧକର ସରଳ ଭାଷାରେ (ଗଣେଶଙ୍କ ବନ୍ଦନା) ରଚନା କରିଥିଲେ । ସେ ବନ୍ଦନାର ପ୍ରଥମ ଗୋଟିଏ ପଦ ତଳେ ଉଦ୍ଧୃତ ହେଲା ।

କପୋଳେ ଶୋଭିତ ସୁଗନ୍ଧ ଚନ୍ଦନ
ଖଣ୍ଡେ ଦୁଃଖ ଦେଖି ବାରଣ ନନ୍ଦନ;
ଗଳାରେ ମଣ୍ଡିତ ଦିବ୍ୟ ପୁଷ୍ପହାର
ବନ୍ଦେ ବନ୍ଦେ ଗଣ—ନାଥ ବିଦ୍ୟାଧର ।

ସେ ବରିବାଟୀ ଉ. ପ୍ରା. ସ୍କୁଲରୁ ବୃତ୍ତି ପାଇ ମଧ୍ୟ ଇଂରାଜୀ ଜାଣି ନ ଥିବା ହେତୁ ସିଦ୍ଧେଶ୍ୱରପୁର ମି. ଇ. ସ୍କୁଲର ୫ମ ଶ୍ରେଣୀରେ ତାଙ୍କ ନାମ ଲେଖାଇବାକୁ ପଡ଼ିଥିଲା ।

ଶ୍ରୀଯୁକ୍ତ ପତି ଏକାଡେମୀରେ ଅଧ୍ୟୟନ କରିବା ସମୟରେ ତାଙ୍କ ଏକ ପୁରସ୍କାର ବିତରଣୀ ଉତ୍ସବରେ ତାଙ୍କର ଗୀତ ଦୁଇଟି 'ସଂସ୍କୃତ ସଙ୍ଗୀତ' ଦୁଇଜଣ ଛାତ୍ର ଦ୍ୱାରା ମୋହନ ଆଶ୍ରମ ସଦାସ୍ୟରେ ଗାନ କରି ଉପସ୍ଥିତ ଜନତାଙ୍କୁ ମୁଗ୍ଧ କରି ଦେଇଥିଲେ । ସଂସ୍କୃତରେ ଏପରି ସୁସ୍ୱର ସଙ୍ଗୀତ ଶୁଣି ବାଗ୍ମୀପ୍ରବର ସ୍ୱର୍ଗୀୟ ବିଶ୍ୱନାଥ କର ସେ ଦୁଇଟି ସଂଗୀତକୁ ତାଙ୍କର ପତ୍ରିକା "ଉତ୍କଳ ସାହିତ୍ୟ"ରେ ପ୍ରକାଶ କରିଥିଲେ । 'ମୋ ବାଉଳ' ବୋଲି ଆଉ ଗୋଟିଏ କବିତା ସେ ଲେଖିଥିଲେ ।

ସମ୍ବଲପୁରରେ ପ୍ରଧାନ ଶିକ୍ଷକ ଥିଲା ବେଳେ ସେଠାର 'ବୁଢ଼ାରଜା ପାହାଡ଼' ସେଠା ଦେବ ଦେବୀଙ୍କ ସମ୍ବନ୍ଧରେ କେତୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସଂସ୍କୃତ ଓ ଓଡ଼ିଆରେ ରଚନା କରିଥିଲେ ।

ଶ୍ରୀଯୁକ୍ତ ପତି ଯେପରି ଛାତ୍ର ବତ୍ସଳ, ତତୋଧିକ ଗୁରୁଭକ୍ତ । ପରୀକ୍ଷା ଫଳ ବାହାରିବା ପରେ ଇନ୍‌ସ୍ପେକ୍ଟର ଷ୍ଟାର୍ ସାହେବ ବରିବାଟୀ ସ୍କୁଲ ପରିଦର୍ଶନରେ ଆସି ଶ୍ରୀ ପତିଙ୍କୁ ଖୁସିମନରେ

୧୫ଙ୍କା ପୁରସ୍କାର ଦେଲେ ଓ ଶିକ୍ଷକଙ୍କୁ ସାର୍ଟିଫିକେଟ ଦେଲେ । ଶ୍ରୀ ପତି ପାଢ଼େବଙ୍କଠାରୁ ପୁରସ୍କାର ପାଇଥିବା ୧୫ଙ୍କା ଗୁରୁଙ୍କୁ ସମର୍ପଣ କଲେ ।

ଏଣୁ ସୁଯୋଗ୍ୟ ଗୁରୁଙ୍କୁ ଦକ୍ଷିଣା ଦେବା ପତିଙ୍କର ମନରେ ଥିଲା । କଟକରେ ଅଧ୍ୟାପକ ଥିଲା ବେଳେ ସେ ତାଙ୍କର ଜଣେ ପ୍ରିୟ ଛାତ୍ରଙ୍କୁ ସଙ୍ଗରେ ନେଇ ଦକ୍ଷିଣା ଦେବା ଉଦ୍ଦେଶ୍ୟରେ ଗୁରୁଙ୍କ ଘରକୁ ଯାଇଥିଲେ । ଗୁରୁ ପତ୍ନୀଙ୍କ ପାଇଁ ମୂଲ୍ୟବାନ ଖଣ୍ଡେ ପାଟଶାଢ଼ୀ, ଗୁରୁଙ୍କ ପାଇଁ ରେଶମ ଧୋତି, କେତେ ମିଷ୍ଟାନ୍ନ ଓ ଫଳ, ନେଇଥିଲେ । ଗୁରୁ ଓ ଗୁରୁପତ୍ନୀଙ୍କ ପାଦତଳେ ଦକ୍ଷିଣାତକ ସମର୍ପଣ କରି ସେମାନଙ୍କର ଆଶୀର୍ବାଦ ଗ୍ରହଣପୂର୍ବକ କଟକ ପ୍ରତ୍ୟାବର୍ତ୍ତନ କଲେ ।

ଦିନେ ପତି ଓ ମୁଁ ତାଙ୍କର କୋଠା ଉପରେ ବସି ଗପ କରୁଥିଲୁଁ । କଥାପ୍ରସଙ୍ଗରେ ମୁଁ କହିଲି "ନୂତନ ଶିକ୍ଷାର୍ଥୀମାନେ ଇଂରାଜୀରେ Capital letter ବଡ଼ ଅକ୍ଷର ଓ Proper noun (ବ୍ୟକ୍ତିବାଚକ ବିଶେଷ୍ୟ) ପୂର୍ବରେ the ର ବ୍ୟବହାର କରିବାରେ ବରାବର ଭୁଲ କରନ୍ତି । ଏ ସମ୍ବନ୍ଧରେ ଦୁଇଟି କ୍ଷୁଦ୍ର କ୍ଷୁଦ୍ର ପଦ୍ୟ ରଚନା କରିଦିଅ ।" ସେ ତତ୍‌କ୍ଷଣାତ୍ ପଦ୍ୟ ଦୁଇଟି ଡାକିଦେଲେ ।

The use of Capital letters

ଇଂରାଜୀରେ ବଡ଼ ଅକ୍ଷରର ବ୍ୟବହାର,

ପ୍ରତି ବାକ୍ୟ ପ୍ରତି କବିତା ପଦ,
ଜାତି ଭାଷା ସୂଚକ ଯେ ଯେତେ ପଦ ।
ମାସ, ବ୍ୟକ୍ତି, ସ୍ଥାନ ବାରର ନାମ
ଈଶ୍ୱର ଆବର ତା ସର୍ବନାମ
ଉପାଧି, ଆମ୍ଭେ ସର୍ବନାମ ପୁଣ
ବସ୍ତୁ ଯାକୁ ମାନବ ରୂପେ ଗଣ ।
ଆହ୍ୱାନ, ହରଷ, ବିସ୍ମୟ ପଦ
ଏ ଭାବେ ଯେତେକ ଅବ୍ୟୟ ପଦ ।
ଉଦ୍ଧୃତ ବାକ୍ୟ ଏ ସକଳ ସ୍ଥାନେ
ଆଦ୍ୟ ଅକ୍ଷର ବଡ଼ ହେଉ ହେ ମନେ ।

## The use of 'The' before Proper nouns

### ବ୍ୟକ୍ତିବାଚକ ବିଶେଷ୍ୟ ପୂର୍ବରେ 'The'ର ବ୍ୟବହାର

ଜାତି, ନଦୀ, ସାଗର ଋତୁ ମହାସାଗର
ଉପସାଗର ମରୁଭୂମି (କେବଳ ସାହାର)
ଦ୍ୱୀପ, ପର୍ବତ ପୁଞ୍ଜ ତଥା ଉପାଧି ନେଉ
ପ୍ରଣାଳୀ ମହାକାବ୍ୟ ଘେନ ।
ତାରକା, ଚନ୍ଦ୍ର, ଦିନମଣି ଗଗନ, ନକ୍ଷତ୍ର ଧରଣୀ,
ଦଗ, ପତ୍ରିକା ନାମ "ଯହିଁ ପ୍ରତ୍ୟୟ ତମ"
ନାମ ବର୍ଣ୍ଣିନା ଯାଉ ଘେନ (ହେ ଶିଶୁମଣି)

ନିମ୍ନଲିଖିତ ଗଳ୍ପରୁ ସେ କିପରି ସ୍ମୃତିଧର ଥିଲେ, ଜଣା ପଡ଼େ । ବରିବାଟିରେ ଉଚ୍ଚ ପ୍ରାଥମିକ ଶ୍ରେଣୀରେ ପଢ଼ିଲାବେଳେ ଶିକ୍ଷକଙ୍କ ଅନୁପସ୍ଥିତିରେ ସେ ବଗୁଲିଆ ବୁଦ୍ଧିରେ ତାଙ୍କର ଶ୍ରେଣୀ ଛାତ୍ରମାନଙ୍କୁ ମାରି ଧରି କରି ଥାଆନ୍ତି । ଶିକ୍ଷକ ମହାଶୟ ସ୍କୁଲରେ ଉପସ୍ଥିତ ହେବା ମାତ୍ରକେ ମାଡ଼ ଖାଇଥିବା ଛାତ୍ରମାନେ ପତିଙ୍କ ବିରୁଦ୍ଧରେ ଆପତ୍ତି କରନ୍ତି । ଏହି ଛାତ୍ରଙ୍କର ତୀକ୍ଷ୍ଣବୁଦ୍ଧି ଓ ଅଦ୍ଭୁତ ସ୍ମରଣ ଶକ୍ତି ହେତୁ ଏହାଙ୍କୁ ବେତାଘାତ କରିବାପାଇଁ ଶିକ୍ଷକଙ୍କର ହାତ ଯାଏ ନାହିଁ । ପତିଙ୍କୁ କୌଣସି ପାଠ୍ୟ ପୁସ୍ତକରୁ ୧୫ କିମ୍ବା ୨୦ ପୃଷ୍ଠା ଅଭ୍ୟାସ କରି ଅଳ୍ପ ସମୟରେ ପଢ଼ା ଦେବାକୁ କହି ସ୍କୁଲ ଛୁଟି ପରେ ଅଟକାଇ ରଖନ୍ତି । ଯେତେ ସ୍ମୃତିଧର ହେଲେ ମଧ୍ୟ ୧୫ । ୨୦ ପୃଷ୍ଠାର ପାଠ ଅଭ୍ୟାସ କରି ୨୦ । ୩୦ ମିନିଟ ମଧ୍ୟରେ ପଢ଼ାଦେବା କୌଣସି ମେଧାବୀ ଛାତ୍ର ପକ୍ଷରେ ସମ୍ଭବ ନୁହେଁ । ସେ ପୁସ୍ତକର ପ୍ରଥମରୁ, ମଝିରୁ ଓ ଶେଷରୁ କେତେକ ପୃଷ୍ଠାମାନ ପଢ଼ି—ମନେରଖି ଗୁରୁଙ୍କୁ ପଢ଼ା ନେବାକୁ କହନ୍ତି । ଏତେ-ଗୁଡ଼ିଏ ପୃଷ୍ଠାର ପାଠ ପଢ଼ା ନେବା ଗୁରୁଙ୍କ ପକ୍ଷରେ ମଧ୍ୟ କଷ୍ଟକର ଓ ସମୟ ସାପେକ୍ଷ ହେବାରୁ—ସେ ମୂଳରୁ, ମଝିରୁ ଓ ଶେଷରୁ କେତେ ପୃଷ୍ଠାର ପାଠ ପଚାରି ସମୁଚିତ ଉତ୍ତର ପାଇ ଛାତ୍ରଙ୍କ ପିଠିରେ ହାତମାରି ଛୁଟି କରି ଦିଅନ୍ତି ।

ଥରେ ବରିବାଟି ନାଳ ପୋଲ ନିକଟରେ ସେକ୍‌ସନ ଅଫିସରଙ୍କ ବଗିଚାରେ ଥିବା ଗଛରେ ଚଢ଼ି ଫଳ ଖାଇଲାବେଳେ ସେକ୍‌ସନ ଅଫିସର ପତିଙ୍କୁ ଧଇଲେ । ସେକସନ ଅଫିସର ପତିଙ୍କୁ ପାଟିଗଣିତ,

ଜ୍ୟାମିତି ଓ ପରିମିତି ବହିରୁ ଅଙ୍କ ପଚାରି ତାଙ୍କଠାରୁ ଠିକ୍ ଉତ୍ତର ପାଇ ଖୁସି ହୋଇ କହିଲେ, "ଯେବେ ତୁମର ଇଚ୍ଛା ହେବ, ସେତେବେଳେ ଏ ବଗିଚାରୁ ଫଳ ତୋଳି ଖାଇବ ।

ଶ୍ରୀ ପତି ତାଙ୍କର କକେଇଙ୍କଠାରୁ ସଂସ୍କୃତରେ ଜ୍ଞାନ ଲାଭ କରିଥିଲେ । ସେ ଅଭିଧାନ, କର୍ମ କର୍ମାଣି, ବେଦମନ୍ତ୍ର ଓ ବହୁ ଶ୍ଳୋକ ଶିକ୍ଷା କରିଥିଲେ । ପୃକୁଣ୍ଡା ଫୁଲ ଭଜା ଓ ବଡ଼ ପୋଲୁଅ ପତ୍ର ଚଟଣି- ତାଙ୍କର ରୁଚିକର ଖାଦ୍ୟ । ସେ ମାଛ, ମାଂସ, ଦିଅ, ଦୁଧ, ଛେନା ଇତ୍ୟାଦି କେବେ ଖାଉ ନ ଥିଲେ । ସେ ଖାଇସାରିବା ମାତ୍ରେ ପାଣି ନ ପିଇ ଅଧଘଣ୍ଟାକ ପରେ ପିଅନ୍ତି ।

ତାଙ୍କ ଜୀବନରେ ଗୋଟିଏ ଦୁର୍ଘଟଣା ଘଟିଥିଲା । ସେ ନୂଆକରି ସାଇକେଲ ଶିଖି ଥାଆନ୍ତି । ଦିନେ ସେ ଓ ମୁଁ ଦୁହେଁ ସାଇକେଲରେ ବରିବାଟୀ ଯାଉଥିଲୁ । ରାସ୍ତାରେ ଶ୍ରୀଯୁକ୍ତ ପତିଙ୍କ ସାଇକେଲରେ ଗୋଟିଏ ଶଗଡ଼ ଧକା ବାଜିବାରୁ ତଳେ ପଡ଼ିଗଲେ ଓ ତାଙ୍କର ବାଁ ହାତ କହୁଣିର ହାଡ଼ ଖସିଗଲା । ଦୁର୍ଘଟଣାରେ ପଡ଼ି ସୁଦ୍ଧା କିଛି ମନ ଦୁଃଖ ନ କରି ମତେ କହୁଥାଆନ୍ତି "ମୋର ଡାହାଣ ହାତ ଅଛି ।

ତାଙ୍କର ବାଲ୍ୟ, କିଶୋର, ଯୌବନ ଓ ପୌଢ଼କାଳ ବନ୍ଧୁ- ମାନଙ୍କୁ ଅକୃତ୍ରିମ ସ୍ନେହବନ୍ଧନରେ ବାନ୍ଧି ରଖିଥିଲେ । ୧୯୬୮ ମସିହା ଦୋଳ ପୂର୍ଣ୍ଣିମୀ ଦିନ ଆମ କେତେକ ବନ୍ଧୁଙ୍କର ମିଳନ ତାଙ୍କ କଟକ ବସାରେ ସେ କରାଇଥିଲେ । ପୁଣିଥରେ ୧୯୬୯ ମସିହାରେ ବନ୍ଧୁ ମିଳନ ହେବା କଥା ସବୁ ବନ୍ଧୁମାନଙ୍କୁ ଜଣାଇଥିଲେ, କିନ୍ତୁ ସେତେବେଳକୁ ସେ ଆଉ ଇହଧାମରେ ନ ଥିଲେ । ଗରିବ ଛାତ୍ରମାନଙ୍କୁ ତଥା କ୍ଲେର୍ ଅର୍ଥ ସାହାଯ୍ୟ ତାଙ୍କର କର୍ତ୍ତବ୍ୟ । କାହାଠାରୁ କିଛି ଦାନ ଗ୍ରହଣ କରିବା ତାଙ୍କର ନୀତି ବିରୁଦ୍ଧ । ତାଙ୍କର ବାସଭବନ ଏକ ପ୍ରକାର ଗୋଟିଏ ଅତିଥିଶାଳା ଥିଲା । ଛାତ୍ରମାନେ ସବୁ ପ୍ରକାର ସୁବିଧା ଓ ସାହାଯ୍ୟ ପାଇ ପାରୁଥିଲେ । କୌଣସି ବ୍ୟକ୍ତି ତାଙ୍କର ଅପକାର କଲେ, ତାର ହିତ ସାଧନ କରି ତାକୁ ବନ୍ଧୁରେ ପରିଣତ କରି ପାରୁଥିଲେ ।

---

# ପରମଗୁରୁ ସ୍ୱର୍ଗୀୟ ରତ୍ନାକର ପତି

**ଶ୍ରୀ ଭୋଳନାଥ ପଣ୍ଡା**

ବରଷେ ପୂରିଲ ସରସ ହସେଣି ଗାଆଁ ଦାଣ୍ଡ କୋଠା ପିଣ୍ଡା,
ପାଠ ମନ୍ଦିରର କାଠିଏ ସମସ୍ୟା ଆଜିବି ଅଛି ଅଛିଣ୍ଡା ।

ହସି ହସି କେହ୍ୱ କହୁନି ତ ଆଉ "କାଳକ୍ରମେ ଅଛି ସବୁ" ?
ବସି ବସି କେହ୍ୱ ବତାଉନି ପଥ ନିଜ ବୁଦ୍ଧି ଅନୁଭବୁ ।

ସେ ମୃଦୁ ଗମ୍ଭୀର ସ୍ନିଗ୍ଧରୁକ୍ଷ ସ୍ୱର ବାଜେନିତ ଆଉକାନେ,
ଯେତେ ହିତବାଣୀ ଆନଠୁଁ ଶୁଣିଲେ ମନତ କାହିଁ ନ ମାନେ ।

କେତେ ମହାତ୍ମାଙ୍କ ସାଥୀଙ୍କ ବିଚାର ବିମର୍ଶ ରହିଲ ଅଧା,
କେତେ ଅମୁଦ୍ରିତ ଗ୍ରନ୍ଥର ଭୂମିକା-ପୋଥି ହେଲ ଡୋରିବନ୍ଧା ।

କେଉଁ ଦେବତାର ଅବତାର ହୋଇ ଅବସର-ବିନୋଦନେ,
ଜନମିଲେ ଦିନେ "ଉତ୍କଳରମଣୀ" ଜନ ପ୍ରାଣ ଉଦ୍‌ବୋଧନେ,

ଯାହାଙ୍କ ଚରମ ଜନବତ୍ସଳତା ଜନମ ଭୂମିର ପ୍ରୀତି,
ଜନତା ହୃଦୟେ 'ବନ୍ଦୀ କଥା' ଛଳେ ବାନ୍ଧିରଖିଥିବ ନିତି,—

ସେ 'ଦାସ ଆପଣେ' କେଉଁ ଗୁଣ ଚିହ୍ନି ପାରିଲେ ଜାମାତା ବାଛି,
'ସୁଆଣ୍ଡୋ' ରାଇଜୁ 'ଚଉଁରପା' ଗ୍ରାମେ ଦୁହିତାଙ୍କୁ ଦେଲେ ଯାଚି ।

ହିନା ଆଡ଼ମ୍ବରେ ସେ ବେନି ଜୀବନ ଏଇ ପାଣି ପବନରେ,
ଗଢ଼ି ବଢ଼ି ଏବେ ଉଭାଇ ଗଲ କି ଏଇ ଶୂନ୍ୟ ଗଗନରେ ।

ସେ କର୍ମ ଜୀବନେ ଯଦି ନାହିଁ ଦିନେ ସାତ୍ତ୍ୱିକ ଆତ୍ମରେ ତୃପ୍ତି,
ଅକାମଜ କ୍ରୋଧ ସୃଜି ମୋହ ଦିନେ ପାରିନି ବିବେକ ଲୁଟି ।

ଆଜିର ଫାଲ୍‌ଗୁନ ଶୁକ୍ଳ ଷଷ୍ଠୀର ଏ ପୁଣ୍ୟ ବାର୍ଷିକ ତର୍ପଣେ
ଆଶୀର୍ବାଦ ଭିକ୍ଷା କରୁଛୁ ଗୁରୁ ହେ ଭକ୍ତି କୁସୁମ ଅର୍ପଣେ ।।

---

# ମୋ ପ୍ରାଣର ଭାଇ

ଶ୍ରୀ ଧର୍ମାନନ୍ଦ ଆଚାର୍ଯ୍ୟ (ସହପାଠୀ)

ପ୍ରାଣ ପକ୍ଷୀ ମୋ ଯାଇଛି, ଉଡ଼ି
ଖାଲି ପିଞ୍ଜରାଟି ଦେଇଛି ମତେ ।
ଫେରି ଆସିବାକୁ କଲି ମୁଁ ଆଶ,
ନ ଫେରିବା ଦେଖି ହେଲି ନିରାଶ ।
କହୁଥାନ୍ତ କେତେ ମରମ କଥା,
ହୁଦୁଁ ଲଭିଯାନ୍ତା ଦାରୁଣ ବ୍ୟଥା ।
ପଥହରା ହୋଇ ବୁଲୁଛି ବଣେ,
ଆଖିଥାଇ ଅନ୍ଧ ମନ୍ଦ ଇକ୍ଷଣେ ।
ତବ ସ୍ନେହ ବାଣୀ ମନରେ ଧରି,
ଭ୍ରମରେ ଭ୍ରମୁଛି ବାଇଆ ପରି ।
ତବ ନିର୍ଦ୍ଦେଶଟି ମନ୍ତ୍ର କରିଣି,
ପାଇଲେ ଧରନ୍ତା ନିଜ ଶରଣି ।
ମର୍ମରେ ତୁମ୍ଭର ଦେଲି କି ବ୍ୟଥା
କହ କହ ବନ୍ଧୁ ଫିଟାଇ କଥା ।
ଶୁଣୁ ନ ଥିବାରୁ କଥାଏ ପଦେ
ଦହେ ହୃଦବନ ଅଶେଷ ଖେଦେ ।
ଏକା ଗଲ ମୋତେ ସଙ୍ଗେ ନ ନେଲ
ଆଜ୍ଞାଥାନ୍ତି ବହୁ ରଷୀର ଭୁଲ ।
ସରଗର ସୁଧା ଦେଲକି ରୁଷି
ନତଣୁ ଅଭାଗାକୁ ଦେଲ ଉପେଖି ।

ହୃଦରେ ମୋହର ବଢ଼ୁଛି କୋହ,
ଅବିରଳ ଧାରେ ବହୁଛି ଲୁହ ।
ଆହେ ସଖା ମୋର—ଦୋସରପ୍ରାଣ
ସ୍ୱପନେ କରିଛ ସାନ୍ତ୍ୱନା ଦାନ ।
ଅନ୍ତିମ ଜୀବନ ତୁମ୍ଭ ସଙ୍ଗତେ,
କଟାଇବି କାଳ ଭାବିଣ ଚିତ୍ତେ ।
ଜଣାଇଥିଲି ମୁଁ ପତ୍ର ଆଳାପେ,
ପ୍ରୀତ ହୋଇ ମୋତେ କହିଲ ଆପେ ।
"ଶେଷ ଜୀବନଟି ପରସ୍ପରରେ
କଟାଇବା ସୁଖେ ସାହଚର୍ଯ୍ୟରେ ।
ଉପଭୋଗ୍ୟ ହେବ ଅନ୍ତିମକାଳ
ମନର ବାସନା ହେବ ସଫଳ ।"
ବାର ବାର ହେଲା ବହୁ ବର୍ଷର
ଦିନ ସ୍ଥିର ହେଲା କେତେକ ଥର ।
ନିଦାରୁଣ ବିଧି ହୋଇଲା ବାମ,
ବନ୍ଧ୍ୟା କଳପନା କଲା କାଏମ ।
ହାଏ ବନ୍ଧୁ ଯେବେ ଯାଇଛ ତେଜି,
ସରଗ ପୀୟୂଷ ଚଖାକୁ ହେଜି ।
ମନ୍ଦାକିନୀ ଧାରେ (କରି) ଅବଗାହନ,
ତାର ପୂତ ନୀରେ କର ତର୍ପଣ ।

ଯେ ପୁରେ ଅଧମ ସଖାକୁ ତବ,
ଥରେ ଥରେ ମନେ ପକାଇ ଥିବ ।

—o—

# ନର ନାଁ ଦେବତା !!

ଶିକ୍ଷକ—**ଶ୍ରୀ ନବକିଶୋର ମହାପାତ୍ର**

ମନେ ପଡ଼େ ଗତ ଛଷଠି ମସିହା ସେ ଦିନର ସୁପ୍ରଭାତ,
ଗ୍ରାମ ଶିଶୁ ମେଳେ ଯଷ୍ଟିଧରି କରେ ହେଲେ ଯେବେ ଉପଗତ ।

କହନ୍ତି ଆବେଗେ "ମନେପଡ଼ୁଗଲା ଗ୍ରାମ ଚାଟଶାଳୀ କଥା,
ରାତି ନ ପାହୁଣୁ ପିଲେ ଧାଇଁଥାନ୍ତି ଥାଏ ଶୂନ ଦେବା ପ୍ରଥା ।'

ନ ସରୁ ବଚନ ଛାଡ଼ି ମୁଁ ଆସନ ବସିବାକୁ ନିବେଦନେ,
ରହିଁ କାଷ୍ଠାସନେ ବେନି କରଯୋଡ଼ି ତଥାପି କହିଲେ ମୋତେ

'ଏ ବିଦ୍ୟାମନ୍ଦିର ଗୁରୁ ଆସନକୁ ବ୍ରହ୍ମା ବିଷ୍ଣୁ ଶଙ୍କର ଡର,
ଏ ଆସନେ ବସି ଗୁରୁ ଯା କହନ୍ତି ସତ୍ୟହୁଏ ବେଦସାର ।

ପ୍ରଭାତି ଭ୍ରମଣେ ଦେଖି ଶିଷ୍ୟଗଣେ ପାଠକଲେ ଉଚ୍ଚଗୀତ,
ନମୋ ବିଦ୍ୟାଗୁରୁ ନମସ୍ତେ ବାଗ୍‌ଦେବୀ ନମୋନମଃ ଗୁରୁଶକ୍ତି ।

ଦେଶ ଭବିଷ୍ୟତ ଗଢ଼ାହୁଏ ଏଥି ନାଶେ ଅଜ୍ଞାନ ଅନ୍ଧାର,
ଅସାଧ୍ୟ ସାଧନା ତୀର୍ଥ ଏହି ସିନା ପୁଣ୍ୟଭୂମି ପୃଥିବୀର ।"

ଋଷିମନିଷିଙ୍କ ଦେବତା ସ୍ତବରେ କିଛି ନ ପାରିଲି ହେଜି ।
'କେତେ କାଳୁ ଶିକ୍ଷା ଦାନେରତ" ମୋତେ ପଚାରି ସେ ନେଲେ ବୁଝି ।

ଜରାଜୀର୍ଣ୍ଣ ଦେହୀ ଅବସରପ୍ରାପ୍ତ ଅଧ୍ୟାପକ ରତ୍ନାକର,
ହାଡ଼ଚର୍ମଖଣ୍ଡ ମଧ୍ୟେ ଲୁଚିଥିଲା ଭାରତୀ ଭାଷା ଭଣ୍ଡାର ।

ଯୋଗଜନ୍ମା ପରି ସନ୍ତେ ଅପସରି ତାଙ୍କ ଚାଲି ପଥ ରହିଁ,
ଲଭିପୂତମନ୍ତ୍ର ବିସ୍ମୟାଭିଭୂତ ମନସ୍ଥିର ରହେ ନାହିଁ ।
(ମୋର) ଜିଜ୍ଞାସୁବାସନା ଜାଣିମହାମନା ମହାନନ୍ଦେ ପ୍ରୀତ ମନେ,
ନିତି ପ୍ରତି ମୋତେ ବୁଝାଇଲେ ଯେତେ ଅଲେଖ୍ୟ ଲେଖନୀ ମୁନେ ।
ପୁରାଣ ବିଜ୍ଞାନ କେତେ ବ୍ରହ୍ମଜ୍ଞାନ ଗୁରୁଶିଷ୍ୟ ଉପାଖ୍ୟାନ;
ଉପଯୁକ୍ତ ଗୁରୁ ଶିଷ୍ୟ ମନୋଭାବ କଳନା ମନୋବିଜ୍ଞାନ ।

ଭାଷାକୋଷ ତାଙ୍କ ଜିହ୍ୱାଗ୍ରେ ଥିଲା କି କଣ୍ଠେ ଥିଲେ ସରସ୍ୱତୀ
ସ୍ଫୁରିଲେ ବଚନ ପ୍ରତି କଥା ପଦେ ମାତ୍ର ଶିକ୍ଷା କରେ ଗତି ।

'ଶିକ୍ଷା ଗୁରୁ ସ୍ୱୟଂ ଗଣେଶ ସମାନ ସରସ୍ୱତୀ ପରିଚୟର'
ସର୍ବୋଚ୍ଚ ପୂର୍ବ ଶ୍ରୀପଞ୍ଚମୀ ଦିନେ କହୁଥିଲେ ବାରମ୍ବାର ।

ଆଜି ରୋଗାକ୍ରାନ୍ତ ଅଶୀତି ମୋ ଦେହ ମନଃ ଭକ୍ତି ପୁଷ୍ପ ଗୋଟି
କରି ପାରୁ ନାହିଁ ଦେବୀଙ୍କ ପ୍ରାର୍ଥନା ପାଦେ ପୁଷ୍ପାଞ୍ଜଳୀ ଭେଟି ।

ଦିନେ ମାଧ୍ୟମିକ ଉତ୍ତୀର୍ଣ୍ଣ ପାଠକ ଜଣେ ହୋଇ ଉପଗତ
ଭାଷିଲା ବିନୟେ ଦାରିଦ୍ର୍ୟତା ହେତୁ ଶିକ୍ଷାରୁ ହୁଏ ବଞ୍ଚିତ ।

କଟାକ୍ଷେ ଅନାଇ କର୍କଶ ବଚନେ 'ଭିକ୍ଷା ମାଗ' କଲ ସାର
ଥାଉଁ ବଳ ଦେହେ ଶ୍ରମ ଧନ ବିନା ହୀନ କର୍ମ କରିପାର ?

ସଂଗୃହୀତ ଅର୍ଥ ହେବ ନିୟୋଜିତ ଚଳଚ୍ଚିତ୍ର-ଧୂମ୍ରପାନେ
ଅଥବା ପୋଷାକ ପରିଚ୍ଛଦେ କିମ୍ବା ମଦ୍ୟ ମାଂସ ଆହରଣେ ।

କଟୂକ୍ତି ଆଘାତ ଭଗ୍ନ ମନୋରଥ ବିଷାଦେ ଯାନ୍ତେ ପଳାଇ
ନିର୍ଦ୍ଦେଶିଲେ ମୋତେ ଲାଞ୍ଛିତ ବାଳକେ ଡାକି ଆଣନ୍ତୁ ଫେରାଇ ।

ସଜଳ ନୟନ ଅନାଇ ତାହାର ପୃଚ୍ଛା କଲେ ପରିଚୟ
"ପ୍ରଧାନ ଶିକ୍ଷକ ସୁପାରିଶ ପତ୍ର ଆଣି କି ପାରିବ କହ ?

ସୁଯୋଗ୍ୟ ମେଧାବୀ ଛାତ୍ର ପରି ଯେବେ, ସଦ୍‌ଗୁଣ ଅଭ୍ୟାସୀ ହେବ,
ପ୍ରୟୋଜନ ଅର୍ଥ ମୋ ଠାରୁ ସମସ୍ତ ନିଶ୍ଚେ ସାହାଯ୍ୟ ପାଇବ ।"

ମନେ ପଡ଼େ ଦିନେ ଦରୋଟି ବଚନେ ବାତ୍ସଲ୍ୟ ମମତା ଗୁଣେ
ନାତୁଣୀଙ୍କ ସଙ୍ଗେ ଖେଳ ନାନା ରଙ୍ଗେ ମାତୃଶିକ୍ଷାର ମାଧ୍ୟମେ

ବଡ଼େ 'ଟିକ୍ ଟିକ୍' ସାନେ 'ଟକ୍ ଟକ୍' ଗେଲେ ଡାକୁଥିଲେ ଯେବେ
ବଧିର ହଇଗଲା ସେ ମଧୁ ବଚନ ଆଉ କି ଶୁଣିବ କେବେ !

ଶିଶୁମାନଙ୍କର ଉପଯୁକ୍ତ ଶିକ୍ଷା କୌଶଳ ମନୋବିଜ୍ଞାନ
ଦୀର୍ଘ ତିନିବର୍ଷ ଆଲୋଚନା କରି ଶେଷାଂଶ ହେଲା ଅପୂର୍ଣ୍ଣ ।

ପରୀକ୍ଷା ସୂଚୀରେ ପ୍ରଶ୍ନ କଲେ ଯେବେ ଅଙ୍କ ପାଠ ପଢ଼ା କଥା,
ହଉଥିଲା ତାର *ମଣିବନ୍ଧ ଚକ୍ଷୁ ଉନ୍ମୋଚନର ବ୍ୟବସ୍ଥା ।

ଦେଖ ବୀଣାପାଣି ଦେବୀ ସ୍ୱର୍ଣ୍ଣମୟୀ ନାମ ଲେଖା ହେବାପାଇଁ
ପୂର୍ବରେ ବା ପରେ ଶ୍ରୀମତୀ ବା ପ୍ରଭୃତି ପଦ୍ଧତି ରହିଲା ନାହିଁ ।
କୁଣ୍ଠୁମୁଖଙ୍କୁ ଆଜ୍ଞା ଆପଣ କହିବା ଅସୁନ୍ଦର ବୋଲି କହି
ଶିକ୍ଷା ଦେଲେ ଯାହା ଶିଖାଇଲ ତାହା କାରଣ ଜାଣିଲ ନାହିଁ ।
ନର ନାଁ ଦେବତା କେଉଁ ତପବଳେ ଯାଉଥିଲ ଦ୍ରବ୍ୟ ଜ୍ଞାନ
ଚତୁର ପରସ୍ପର ବନ୍ଧୁ ମେଳନରୁ ହୋଇଗଲେ ଅନ୍ତର୍ଦ୍ଧାନ ।
ମନ କଲ୍ପେ ଥିବେ ଅମର ମଣ୍ଡଳେ ବସ୍ତୁ ପାଦପଦ୍ମ ମୂଳେ
ମୋର ସର୍ବାନ୍ତଃ ପ୍ରଣତ କୁସୁମ ଲୋଟୁ ତାଙ୍କ ପଦତଳେ ।

---

* ଚକ୍ଷୁହୀନ ଲୋକ ମଣିବନ୍ଧ ସ୍ଫଳନା ଦ୍ୱାରା ଦେଖିଲା ପରି ସମସ୍ତ ଜାଣିପାରେ । ଏହା ଅନ୍ଧ ପ୍ରତି ଈଶ୍ୱରଙ୍କ ଦାନ ।

# ଜେଜେ ବାପାଙ୍କ କଥା

## ପିଲାଦିନ

ଜେଜେବାପା ମତେ ସବୁବେଳେ ତାଙ୍କ ପିଲା ଦିନର କଥା କହୁଥିଲେ । ତାଙ୍କର ବାପା ଆଗରୁ ମରି ଯାଇଥିଲେ । ଜେଜେବାପାଙ୍କ ବାପାଙ୍କର ନାଁ ଜନାର୍ଦ୍ଦନ ପଣ୍ଡା, ଓ ତାଙ୍କ ବୋଉଙ୍କ ନାଁ ରେବତୀ ଦେବୀ । ଜେଜେବାପା ମତେ ତାଙ୍କ ଶେଯରେ ଶୁଆଇ ଏହି ସବୁ କଥାମାନ କହନ୍ତି । ତାଙ୍କର ଭାଇମାନେ ପିଲାଦିନେ ଜେଜେ ବାପାଙ୍କୁ କହନ୍ତି ଯା ଗୋରୁ ଜଗିବୁ । ସେ ଗୋରୁ ଜଗିଲାବେଳେ ଗଛ ଛାଇ ତଳେ ବସି ପଢ଼ନ୍ତି । ଗୋଟିଏ ଭାଇ ତାଙ୍କୁ ଭାରି ଭଲ ପାଆନ୍ତି । ତାଙ୍କ ବାପା ବେଳେ ବେଳେ ଲଡ଼ୁ ଆଣି ତାଙ୍କୁ ଦିଅନ୍ତି ।

ତାଙ୍କ ଭାଇମାନେ କହନ୍ତି, ଯା ଶାଗ ତୋଳି ଆଣିବୁ । ସେ ପୋଖରୀରୁ ଶାଗ ତୋଳି ଆଣି ତାଙ୍କ ବୋଉଙ୍କୁ ଦିଅନ୍ତି । ପଖାଳ ଭାତ ଶାଗ ଖରଡ଼ା ଖାଇ ସ୍କୁଲକୁ ଯାଆନ୍ତି । ଲୁଗାପଟା ନ ଥିବାରୁ ସେ ଖଣ୍ଡିଏ ଚିରା ଗାମୁଛା ପିନ୍ଧି ସ୍କୁଲକୁ ଯାଆନ୍ତି । ସେତେବେଳେ କାଗଜ କି କଲମ କିଛି ନ ଥିଲା । ସେ ତାଳପତ୍ର ଲେଖନରେ ଓ ପରେ ବାଉଁଶ କାଠିରେ କଲମ ତିଆରି କରି ଲେଖୁଥିଲେ । ତାଙ୍କ ଘରେ ସେ ଗୋଟିଏ ପିଡ଼ାପରି ବାରଣ୍ଡାରେ ବସି ପାଠ ପଢ଼ନ୍ତି । ଡିବିଟିଏ ତାଙ୍କ ପାଖରେ ଥୁଆ ହୋଇଥାଏ । ସେ ପାଠ ପଢ଼ିସାରି ପଖାଳ ଭାତ ଶାଗ ଖରଡ଼ା ଖାଇ ଶୋଇପଡ଼ନ୍ତି । ତାଙ୍କର ୩ଟି ବଖରା ଘର ଥିଲା । ଗୁହାଳ ପାଖ ଘରଟିରେ ସେ ଶୁଅନ୍ତି । ରାତିରେ ତାଙ୍କୁ ଭାରି ମଶା କାମୁଡ଼ନ୍ତି । ଦିନେ ସେ ତାଙ୍କ ପିଣ୍ଡା ଉପରୁ ପଡ଼ି ଯାଇଥିଲେ, ସେଇଥରକ ସେ ଗୋଟିଏ ଅଣ୍ଡା ଖାଇଥିଲେ । ଆଉ ଅଣ୍ଡା ସେହି ଦିନ ଠାରୁ ଖାଆନ୍ତି ନାହିଁ । ସେ ତାଙ୍କ ନାନୀ ଘରେ ବହୁତ ମାଛ ଖାଇଥିଲେ । ଥରେ ତାଙ୍କ ନାନୀ ଦାଣ୍ଡରେ ଠିଆ ହୋଇ କାହା ସାଙ୍ଗରେ ଗପସପ ହେଉଥିଲେ । ଏତିକି-ବେଳେ ଜଣେ କିଏ ତାଙ୍କ ନାନୀକୁ କହିଲା ଯେ ତୁମ ଭାଇକୁ ହଇଜା ଧରିଛି । ଶୁଣିଆଁରେ ତାଙ୍କ ନାନୀ ପିଣ୍ଡା ଉପରୁ ପଡ଼ି ସାଙ୍ଗେ ସାଙ୍ଗେ ମରିଗଲେ । ଜେଜେ ବାପା ସେଇ ଦିନଠାରୁ ଆଉ ମାଛ, ଖାଇଲେ

ନାହିଁ । ଜେଜେ ବାପା ସ୍କୁଲକୁ ଗଲାବେଳେ ତାଙ୍କ ବୋଉ ତାଙ୍କୁ ପଇସାଟିଏ ଦେଉଥିଲେ । ସେ ସେଥିରେ ଗୁଡ଼ କିଣି ଖାଉଥିଲେ । ଦିନେ ସ୍କୁଲକୁ ଯାଉଥିଲେ । ଅଧବାଟରେ ଶୁଣିଲେ ଯେ, ତାଙ୍କ ବୋଉ ମରିଗଲେ । ଜେଜେ ବାପା କାନ୍ଦି କାନ୍ଦି ତାଙ୍କ ବୋଉଙ୍କୁ ଶ୍ମଶାନକୁ ନେଇ ପୋଡ଼ି ଦେଇ ଆସିଲେ ।

## ବନ୍ଦନା

ଜେଜେ ବାପା ମତେ ସବୁ କଥା କହୁଥିଲେ । ବହୁତ ଗପ ଓ ଗୀତ ଶୁଣାଇ ଥିଲେ । ସେ ମତେ ବେଳ ବେଳେ ଆପଣ ଡାକୁଥିଲେ । ମୋ ନାଁ ଦେଇଥିଲେ ଦେବୀ ବୀଣାପାଣି ଓ ମୋର ସାନ ଭଉଣୀର ନାଁ ଦେଇଥିଲେ ଦେବୀ ସ୍ୱର୍ଣ୍ଣମୟୀ । ଜେଜେ ବାପା ମୋ ନାଁରେ ଗୋଟିଏ ଗୀତ ବୋଲୁଥିଲେ । ମତେ ଗୀତରେ ଡାକନ୍ତି—ଦେବୀ ବୀଣାପାଣି ଆସ ପାଠ ପଢ଼ିବ । ମୁଁ ତାଙ୍କ ପାଖରେ ଯାଇ ପଢ଼େ । ସେ ମତେ ଭାରି ଭଲ ପାଉଥିଲେ । ମୁଁ ତାଙ୍କୁ ଶୋଇଲାବେଳେ ପାନ ଦୁଇଖଣ୍ଡ ଦିଏ । ସେ ଯଦି ଶୋଇ ପଡ଼ିଥାନ୍ତି, ମୁଁ ପାନ ଦୁଇଖଣ୍ଡ ତାଙ୍କ ମୁଣ୍ଡ ପାଖରେ ଥୋଇ ଦେଇ ଆସେ । ମୁଁ ତାଙ୍କ ନାଶ ଉଡ଼ିବାରେ ନାଶ ଦିଏ । ତାଙ୍କୁ ପାଣି ଦିଏ । ତାଙ୍କ ଆଖିରେ ଔଷଧ ପକାଇ ଦିଏ ।

ଗୋପବନ୍ଧୁ କେମିତି ବନ୍ୟାବେଳେ ଲୋକମାନଙ୍କୁ ବଞ୍ଚେଇଲେ ସେ କଥା ସେ ମୋ ଆଗରେ କହୁଥିଲେ । ମତେ ତାଙ୍କ କଥା ଗୁଡ଼ିକ ଶୁଣିବାକୁ ଭାରି ଭଲଲାଗେ । ମତେ ସେ ଢବଣ ଗପ ବହୁତଥର କହିଥିଲେ । ରବିବାର କ ଛୁଟି ଦିନ ସକାଳୁ ମତେ ଶେଯରେ ବସେଇ ଜୋବନ୍ଦୀ ଆଜିକାଟ ଦେଖାଇବାକୁ କହନ୍ତି । ସେଥିଲା ବେଳକୁ ଆମପାଇଁ ମାଛ, କାକୁଡ଼ି ତାଙ୍କପାଇଁ ଲେମ୍ବୁ ଆଣନ୍ତି । ସବୁଦିନେ ସକାଳୁ ଜେଜେ ବାପା ଓ ମୁଁ ଦୁଇଜଣ ବୁଲୁ । ଆମେ ଥରେ ଗୁପ୍‌ଚୁପ୍ ଖାଇଥିଲୁ । ମତେ ସେ ଗଣେଶଙ୍କ ବନ୍ଦନା ଓ ସରସ୍ୱତୀଙ୍କ ବନ୍ଦନା ଶିଖେଇ ଥିଲେ । ମୁଁ ତାକୁ ମନେ ରଖି ଠାକୁରଙ୍କ ପାଖରେ ସବୁଦିନ ବୋଲେ । ସେ ମଧ୍ୟ ଆମ ପାଖରେ ବସି ଗିନି ବଜାଇ ଗୀତ ଲୋଉନ୍ତି । ଥରେ ସେ ଆମ ସ୍କୁଲକୁ ଯାଇଥିଲେ । ମୁଁ ବାଣୀବିହାର ଉ. ପ୍ରା. ସ୍କୁଲରେ ପଢ଼େ ।

ଜେଜେ ବାପା ବେଶି ବୁଢ଼ା ହୋଇ ଗଲାରୁ ସବୁବେଳେ କହୁଥିଲେ, ମୁଁ ମରିଯିବି, ମୁଁ ଆଉ ବଞ୍ଚିବି ନାହିଁ ଏମିତିକଥା ସବୁବେଳେ ମତେ କହନ୍ତି । ଆଉ ସେଉଁଦିନ ଗଲେ ତାଙ୍କ ସାଙ୍ଗ ଘରକୁ, ସେ ଦିନ ବୋଉକୁ ଜର ହୋଇଥାଏ । ମତେ କହିଲେ—ଦେବୀ ବୀଣାପାଣି କଣ ଟିକେ ଖାଇବାକୁ ଦେଇ ପାରିବ କି ? ମୁଁ କହିଲି ହଁ । ସେଉଠୁ ପାଉରୁଟି ଦହି ଖାଇକରି ଗଲେ ସେ ଦିନ ମଧ୍ୟ ବାପା ଦହିବରା ରଖିଥିଲେ । ଜେଜେବାପା କହିଲେ—ମୁଁ ଆସିଲେ ଖାଇବି ମୋ ପାଇଁ ଗୋଟିଏ ବରା ରଖି ଦେଇଥା । ସେ ରିକ୍ସାରେ ଆସୁଥିଲେ ବାଟରେ ତଳେ ପଡ଼ିଲେ । ବରାଟି ଆଉ ଖାଇଲେ ନାହିଁ ।

ଦେବୀ ବୀଣାପାଣି
(ରୁବି)

---

# ସାନ୍ନିଧ୍ୟର ସ୍ମୃତି

ତିନିବର୍ଷ ପୂର୍ବେ ଗାନ୍ଧୀଜୀଙ୍କର ମୂଳ ଲେଖାଗୁଡ଼ିକୁ ଓଡ଼ିଆରେ ଅନୁବାଦ କରି ଓ କରାଇ, ଏକ ରଚନାବଳୀ ପ୍ରକାଶ କରିବାର ପ୍ରସ୍ତାବ ପ୍ରାଦେଶିକ ଗାନ୍ଧୀ ସ୍ମାରକ ଗ୍ରହଣ କରିଥାନ୍ତି । ଏ ସମ୍ପର୍କରେ ମୋତେ ଯୋଗ୍ୟ ଅନୁବାଦକମାନଙ୍କ ସାକ୍ଷାତ କରି ଏ କାର୍ଯ୍ୟରେ ସମସ୍ତ ଦେବାପାଇଁ ବହୁ ବ୍ୟକ୍ତିଙ୍କୁ ଅନୁରୋଧ କରିବାକୁ ପଡ଼ିଥିଲା । ଧର୍ମ, ଈଶ୍ୱରବିଶ୍ୱାସ, ନୈତିକତା, ବ୍ରହ୍ମଚର୍ଯ୍ୟ, ଆଦି ଶୀର୍ଷକରେ ଗାନ୍ଧୀଜୀଙ୍କର ଲେଖା ଓ ବକ୍ତୃତାଗୁଡ଼ିକୁ ଅନୁବାଦ କରିଦେବାକୁ କାହାକୁ ଅନୁରୋଧ କରିବୁଁ ମୁଁ ଏ ଚିନ୍ତାରେ ଥାଏଁ । ଦିନେ କଥାପ୍ରସଙ୍ଗରେ ମୋର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ଗୁରୁଚରଣ ରାଉତରାୟ ମାନନୀୟ ଅଧ୍ୟାପକ ରତ୍ନାକର ପତିଙ୍କର ନାମ ସୂଚାଇଲେ । ତହିଁ ପରଦିନ ମୁଁ ଗାନ୍ଧୀଜୀଙ୍କର ଲେଖାରୁ ସଙ୍କଳିତ "In Search of the Supreme"-3 volumes ନେଇ ମାନନୀୟ ପତି ମହୋଦୟଙ୍କ ବାସଭବନକୁ ଗଲି । ସେତେବେଳକୁ ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେଲାଣି, ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଗଲାଣି, ତଥାପି ଉପନିଷଦ୍ ଗୁଡ଼ିକର ଅନୁବାଦ, ବିଶ୍ୱବିଦ୍ୟାଳୟ ଗୁଡ଼ିକର ସ୍ନାତକୋତ୍ତର ପରୀକ୍ଷାର ଉତ୍ତର କାଗଜ ଦେଖିବା, ନିଜର ଜୀବନୀ ଲେଖିବା, ଆଦିର କାର୍ଯ୍ୟରେ ସେ ବ୍ୟସ୍ତ ଥିବା କଥା ମୁଁ ଆଗରୁ ଶୁଣିଥିଲି । ଏଣୁ ଅତି ସନ୍ତର୍ପଣରେ ଓ ମନେ ମନେ ଦ୍ୱିଧା ସହକାରେ ମୁଁ ତାଙ୍କଠାରେ ପହଞ୍ଚିଲି । ମୋର କୁଶଳ ସମାଚାର ପଚାରିବା ପରେ ପରେ, ସେ ମୋର ଆସିବାର ଉଦ୍ଦେଶ୍ୟ ଶୁଣିବା ମାତ୍ରେ ଅତି ଆଗ୍ରହରେ ଅନୁବାଦ କରିବାର ସମ୍ମତି ଦେଲେ । ତାଙ୍କୁ ବେଶୀ କଷ୍ଟ ନ ପଡ଼ୁ ଭାବି, ମୁଁ ଇଂରାଜୀ ବହି ପଢ଼ି ଶୁଣାଇବାକୁ ଓ ସ୍ଥଳ ବିଶେଷରେ ଇଂରାଜୀ ଅଭିଧାନରୁ କୌଣସି ଶବ୍ଦର ଅର୍ଥ ବାହାର କରିବାକୁ ଚେଷ୍ଟା କଲି । ମାତ୍ର ସେ ତାହା ଆଦୌ କରାଇଦେଲେ ନାହିଁ । ଚଷମା ଲଗାଇ, କ୍ଷୁଦ୍ର ପାଇକା ଅକ୍ଷରରେ ଛପା ଇଂରାଜୀ ବହି ଓ ଅଭିଧାନ ଉପରେ ସେ ନିଜେ ଲେନ୍ସ୍ ସାହାଯ୍ୟରେ ପଢ଼ିବା ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି । ସେ ଅନୁବାଦ ଡାକି ଦେଲେ, କେବଳ ଲେଖିବାର ଭାର ମୋ ଉପରେ ଥାଏ ସେ ଏହି କାର୍ଯ୍ୟରେ ଏତେ ନିମଗ୍ନ

ହୋଇ ଯାଉଥିଲେ ସେ ସ୍ନାନାହାରର ସମସ୍ତ ଭୁଲି ଯାଉଥିଲେ । ଯଦିବା ଯେବେ ତାଙ୍କର ପୁତ୍ର ବଧୂ ବା କନ୍ୟା ପ୍ରଭାମୟୀ ଏ. କଥା ସ୍ମରଣ କରାଇ-ଦେଲେ ଏବଂ ମୁଁ କାର୍ଯ୍ୟ ବନ୍ଦ କରିବାକୁ ଅନୁରୋଧ କରିବା ସତ୍ତ୍ୱେ ସେ ନିବୃତ୍ତ ହେଉ ନ ଥିଲେ ଏବଂ କହୁଥିଲେ, "ଏ ତ ବା ମହାତ୍ମାଜୀଙ୍କର କାମ, ଦେଶର କାମ. ଏ ପାରାଗ୍ରାଫ୍‌ଟି ସରି ଯାଉ ।" Cardinal Newman ଙ୍କର Lead, Kindly Lead ଗାନ୍ଧୀଜୀଙ୍କର ଗୋଟିଏ ପ୍ରିୟ ଭଜନ ଥିଲା । ଯେବେ ସେହି ଭଜନଟି ଅନୁବାଦ କରିବାକୁ ପଡ଼ିଲା । ତହୁଁ ସେ ତାହାର ଅନୁବାଦ ପଦ୍ୟାକାରରେ ଡାକଦେଲେ । × × × ସାଧାରଣତଃ ମୋର ଏକାଗ୍ରତା ବା ଗଭୀର ଅଭିନିବେଶ ବେଶୀ ବେଳଯାଏ ମାମୁଲି କାର୍ଯ୍ୟରେ ନ ଥାଏ । ମାତ୍ର ମୁଁ ଉପଲବ୍ଧି କଲି ଯେ ମାନନୀୟ ଅଧ୍ୟାପକ ମହୋଦୟଙ୍କର ଏ କାର୍ଯ୍ୟରେ ନିଜର ତନ୍ମୟ ଭାବନା, ନିରବଚ୍ଛିନ୍ନ ଏକାଗ୍ରତା ସ୍ୱତଃ ମୋ ମନରେ ପ୍ରତିଫଳିତ ହେଉଥାଏ, ଏବଂ ସମୟ ସମୟେ ସେବାଗ୍ରାମରେ ଗାନ୍ଧୀଜୀଙ୍କର ପ୍ରାର୍ଥନା ଓ ସାନ୍ନିଧ୍ୟର ମଧୁର ସ୍ମୃତି ଜାଗ୍ରତ କରାଉଥାଏ ।

ଯେବେ ଯେବେ ସେ ନିଜର ଛାତ୍ରାବସ୍ଥାର ମଧୁର ଓ ଅନ୍ୟଙ୍କୁ ପ୍ରେରଣାଦାୟକ ଜୀବନକାହାଣୀ କହନ୍ତି । ସେ କିପରି ନିଜ ଗାଁ ତଅଁରପାରୁ କଟକକୁ ଚାଲିକରି ଆସି ପଢ଼ୁଥିଲେ, (ରେଭେନ୍‌ସା) କଲେଜରେ ପଢ଼ିବାବେଳେ ନିଜ ହାତରେ ଧୋଇ କରି ଅଳ୍ପ ଖର୍ଚ୍ଚରେ ଚଳୁଥିଲେ, କଟକ ନର୍ମାଲ (ଟ୍ରେନିଂ) ସ୍କୁଲର ଛାତ୍ରାବାସରେ ପୁରୁ ଛାତ୍ରମାନଙ୍କୁ ମନୋବିଜ୍ଞାନ ବୁଝାଉଥିଲେ, ସେଠାର ସାହିତ୍ୟ ଆଲୋଚନା ସଭାରେ ଅଂଶ ଗ୍ରହଣ କରୁଥିଲେ, ସେତେବେଳର ସେହି ସ୍କୁଲର ହେଡ୍‌ମାଷ୍ଟରଙ୍କ ସହ ଓ ଭକ୍ତ କବି ମଧୁସୂଦନ ରାଓଙ୍କ ସହ ଆଳାପ ଓ ସାହିତ୍ୟ ଚର୍ଚ୍ଚାରେ ଆନନ୍ଦ ଲାଭ କରୁଥିଲେ । ନିଜର ବାଲ୍ୟ ଗୁରୁଙ୍କର ପୁତ୍ରଙ୍କୁ ଟ୍ରେନିଂ ସ୍କୁଲର ପ୍ରବେଶ ପାଇଁ ଥିବା ସ୍ଥାୟୀ ନିୟମର ବ୍ୟତିକ୍ରମ ଘଟାଇ ନାମ ଲେଖାଇବାକୁ ହେଡ୍‌ମାଷ୍ଟଙ୍କୁ ନିଜର ସୁଚିନ୍ତିତ ଯୁକ୍ତିବାଧ୍ୟ ମନାଇ ପାରିଥିଲେ । ଇତ୍ୟାଦି ବହୁ ସରସ, ଶିକ୍ଷାପ୍ରଦ ଓ ଘରୋଇପକ ସତ୍ୟ ଘଟଣା ଶୁଣିବାର ସୁଯୋଗ ମୁଁ ପାଇଛି । ମାତ୍ର ଏ ସବୁ ବର୍ଣ୍ଣନା ମଧ୍ୟରେ ଲେଶମାତ୍ର ଆତ୍ମଶ୍ଲାଘା, ଅନ୍ୟ

କାହାରି ବ୍ୟବହାର ପ୍ରତି ଆକ୍ଷେପ, ବା ସେତେବେଳର ନିଜର ଅଭାବ ଅନାଟନ ହେତୁ ଦୁଃଖ,ଅସନ୍ତୋଷ ନ ଥାଏ । କଲେଜରେ ଲଜିକ୍ ବା ଦର୍ଶନ ବିଷୟରେ ତାଙ୍କ ଶିଷ୍ୟ ହେବାର ସୁଯୋଗ ମୋର ଘଟି ନ ଥିଲା । ତଥାପି, ମୁଁ ତାଙ୍କୁ ଗୁରୁଦେବ ଭାବରେ ମାନି ଆସୁଥିଲି ଏବଂ ଗାଂଧୀଜୀଙ୍କର ଲେଖାର ଅନୁବାଦ ସମ୍ପର୍କରେ ସେ ମଧ୍ୟ ମୋର ସାକ୍ଷାତ ଗୁରୁ ହେଲେ । ଥରେ "ଗୁରୁ ଦିବସ"ରେ ମୁଁ ତାଙ୍କୁ ପ୍ରଣାମ କରିବାକୁ ଗଲି । ସେ ଦିନର ମୋ ପ୍ରତି ତାଙ୍କର ସ୍ନେହ, ଆଦର ଓ ଶୁଭାଶିଷ ଏବେ ବି ମୁଁ ପାଶୋରି ପାରୁ ନାହିଁ । ତାଙ୍କର ଜଣେ କୃତୀ ଛାତ୍ର ଶ୍ରୀ ଉପେନ୍ଦ୍ରନାଥ ମହାନ୍ତି (ଏବେ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ)ଙ୍କର ଗବେଷଣା-ପ୍ରସୂତ ଦୁଇଖଣ୍ଡ ଦର୍ଶନ-ପୁସ୍ତକ ଦିନେ ମୁଁ ଅଧ୍ୟାପକ ପତି ମହୋଦୟଙ୍କୁ ଦେଲି । ନିଜ ଛାତ୍ରର ଏ କୃତୀ ଦେଖି ସେ ଅତି ଆନନ୍ଦିତ ହୋଇଗଲେ ଓ ତାଙ୍କ ଉଦ୍ଦେଶ୍ୟରେ ବହୁ ଆଶୀର୍ବାଦ କଲେ । ଏହିରୂପେ ଏହି ଆଦର୍ଶ ଗୁରୁଙ୍କ କିଞ୍ଚିତ୍ ସାନ୍ନିଧ୍ୟ ଲଭ କରି ମୁଁ ନିଜକୁ କୃତାର୍ଥ ମନେ କରୁଛି । କେବଳ ଏତିକି ଆମର ଅବଶୋଷ ରହିଗଲା ଯେ ତାଙ୍କର ଗୋଟିଏ ପ୍ରିୟ କାର୍ଯ୍ୟ ଗାଂଧୀଜୀଙ୍କର ଲେଖାର ଅନୁବାଦ ଆଜି ପ୍ରାୟ ୧/୩ ଅଂଶ ବାକି ରହିଗଲା ଏବଂ ତାଙ୍କ ଜୀବନରେ ଉକ୍ତ ଗ୍ରନ୍ଥଟି ପ୍ରକାଶିତ ହୋଇ ପାରିଲା ନାହିଁ ।

ଶ୍ରୀ ଶରତ୍‌ଚନ୍ଦ୍ର ମହାରଣା

# କମା ସାର୍‌, ଓ ସାରଂକର ସାର

ଶ୍ରୀ ଜାନକୀବଲ୍ଲଭ ମହାନ୍ତି
ନୂଆ ଦିଲ୍ଲୀ

ଦା ବୀ, ବିଷାଦ, ଭକ୍ତି, ଶ୍ରଦ୍ଧା, ସମ୍ମାନ ଯାହା ଯୋଗେ ଏ ଲେଖା ହେଉ, ଏହା ହିଁ ମୋ ଅନ୍ତରର କଥା ! ସେ ଦିନ ପ୍ରଭା ଦେବୀ (ସ୍ୱର୍ଗତ ପଣ୍ଡିତଂକର କନ୍ୟା) ଆସିଥିଲେ ଦିଲ୍ଲୀ—ସାକ୍ଷାତ ହେଲା । କହିଲେ, "ଏଇ ମାର୍ଚ୍ଚରେ ବାପାଂକର ବାର୍ଷିକ ଶ୍ରାଦ୍ଧ—ଗୋଟାଏ ସ୍ମରଣିକା ବାହାର କରୁଛୁ ଆପଣ ସେଥିକୁ ଲେଖାଟିଏ ଦିଅନ୍ତୁନି । ତାଙ୍କ ତୁଣ୍ଡରୁ କଥା ନ ସରୁଣୁ ହିଁ ଭରିଲି—ଏଇ ହିଁ ଏକାବେଳକେ ହଠାତ୍ ବାହାରି ପଡ଼ିଲା । ବିସ୍ମିତ ହୋଇ ଭାବିଲି,—ସେତିକବେଳେ ସାର୍ ଚାଲିଗଲେ—କି ଗଭୀର ସେ ବନ୍ଧନ !

ହିଁ ତାଂକୁଇ ପ୍ରଥମେ ମୁଁ ଜାଣିଥିଲି ମୋ ସାର୍ ହିସାବରେ ତିରିଶ ବର୍ଷ ତଳେ ମୁଁ ଯେତେବେଳେ କଟକ ରେଭେନ୍ସା କଲେଜରେ ଛାତ୍ର ହିସାବରେ ଯୋଗ ଦିଏ, ସେତେବେଳେ ଦର୍ଶନ ଶାସ୍ତ୍ର ପ୍ରତି ମୁଁ ଅହେତୁକ ଭାବରେ ଆକୃଷ୍ଟ ହୋଇ ପଡ଼େ । ଏଭଳି ଆକୃଷ୍ଟ ହେବା ପଛପଟେ ଗୋଟାଏ ପିଲାଦିନର କଥା ମନେ ପଡ଼ୁଛି—ସେଇଟା ହେଲା ଦର୍ଶନଶାସ୍ତ୍ରରୁ ଏମିତି ଉପାଦାନ ମିଳେ ଯାହାକୁ ନେଇ ସାହିତ୍ୟ ସୃଷ୍ଟି କରିହୁଏ । ଲେଖା ଲେଖି କରୁଥିଲି—ଶୁଣାଶୁଣିରୁ ଜାଣିଲି ଦର୍ଶନ ଶାସ୍ତ୍ର ନେଲେ ସାହିତ୍ୟ ରଚନାକୁ ପରିପୁଷ୍ଟ କରିବ । ଏଇଟା କେତେଦୂର ସତ ତା କହି ପାରିବିନି—ତେବେ ସେଇ ଦର୍ଶନ ଶାସ୍ତ୍ର ପଢ଼ିବା ଭିତରେ ଯେ ମୁଁ ସ୍ୱର୍ଗତ ପଣ୍ଡିତଂକୁ କେବଳ ଶିକ୍ଷକ ଭାବରେ ନୁହେଁ, ପ୍ରକୃତ ମଣିଷ ଭାବରେ ଚିହ୍ନିବାର ସୁଯୋଗ ପାଇଥିଲି । ଏଥିରେ ସନ୍ଦେହ ନାହିଁ ।

ସାରଂକର କ୍ଲାସ । ଇଂରାଜୀ ପିରିଅଡ଼ ସରିଯାଇଛି ।

ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତି ଚାଲିଗଲେ—ତାପରେ ଦୁମ୍‌ଦାମ୍, ଭୁସ୍‌ଭାସ୍ । କିଏ ବସିବ ରୁମ୍ ନମ୍ବର ୩୦ ରେ ଆଗ ବେଂଚରେ, ସାର୍ ଆସିଯିବେ । ଏଇତ ଆସିଗଲେ କି କ'ଣ ? ହିଁ ସାର୍ ଆସିଛନ୍ତି—କି

ଦ୍ୱାର ଖୋଲ—ସିଧା ଖଲଖ ଛୁଆ ହୋଇ ପ୍ରେଜେଣ୍ଟ ପକାଇଲେ—ତାପରେ କ୍ଲାସ ଆରମ୍ଭ ହେଲା—କ୍ଲାସ୍ ସରିଲା । ଆମେ ସମସ୍ତେ ଯେପରି ଏକାବେଳକେ ମନ୍ତ୍ରମୁଗ୍ଧ ହୋଇ ପଡ଼ିଛୁ । ଘଣ୍ଟା ବାଜିଗଲା—ସାର ଚାଲିଗଲେ-ଓଃ, ଆଉ ଟିକଏ ହୋଇଥିଲେ ଭଲ ହୋଇଥାନ୍ତା ।

"ସାର, ମୁଁ ବୋର୍ଡ଼ିଂରେ ଜାଗା ପାଉନାହିଁ ।" "ସାର ମୋର ପଢ଼ିବାରେ ବଡ଼ ଅସୁବିଧା ହେଉଛି ।" ସାର ମୋ ପାଇଁ ଗୋଟିଏ ଟିଉସନ ବୁଝିଦେବେ ନା ଏଇଭଳି କେତେ ଅଭାବ ଅସୁବିଧା ସାର୍ ଆମର ଶୁଣୁଥିଲେ—ତାଙ୍କର ସରଳ ଆଡ଼ମ୍ବରହୀନ ବ୍ୟକ୍ତିତ୍ୱ ଆଉ ନିର୍ମଳ ଚରିତ୍ର ଆମ ସମସ୍ତଙ୍କୁ ବିସ୍ମିତ କରିଥିଲା ।

ସ୍ୱର୍ଗତ ଡକ୍ଟର କରୁଣାକର କର ମୋ ସାର ଥିଲେ, ମୋ ଜୀବନକୁ ଗଢ଼ିବାରେ ଯେ ତାଙ୍କର ସବୁ କଷ୍ଟ ନିହିତ ଥିଲା, ଏହା ମୁଁ ମୋର ଜୀବନର ଶେଷ ନିଶ୍ୱାସ ମାରିଲା ଯାଏଁ ସ୍ୱୀକାର କରିବି । ମୁଁ ଏ କଲେଜରେ ସହକର୍ମୀ ଭାବରେ ଯୋଗ ଦେଲି ତାଙ୍କର । ୧୯୬୭ ମସିହା କଥା—ସେତେବେଳେ ସାର (ସ୍ୱର୍ଗତ କର) ଅବସର ନେଇ ସାରିଥାନ୍ତି । ତାଙ୍କୁ କହିଲି, 'ପ୍ରବନ୍ଧ ପ୍ରକାଶ'ର ଆଲୋଚନା ଖଣ୍ଡେ ଲେଖିଲେ ଭଲ ହୁଅନ୍ତା । ଏଥିପାଇଁ ସାର (ସ୍ୱର୍ଗତ ପଣ୍ଡା)ଙ୍କର ଜୀବନୀ ଲୋଡ଼ା । ସାର୍ (ସ୍ୱର୍ଗତ କର) କହିଲେ 'ଆସନ୍ତା ଯିବା ସେ ମୋର ସାର୍' । ସେ ଦିନର ସେଇ ସନ୍ଧ୍ୟା ଭୁଲି ପାରିବିନି । ମୋ ସାର୍ ଆଉ ସାରଙ୍କ ସାର୍ (ସ୍ୱର୍ଗତ ପଣ୍ଡା) ଛିଡ଼ା ହୋଇଥିଲେ ତାଙ୍କ ଘର ବାରଣ୍ଡାରେ—ଆମେ ଦୁଇଜଣ ପହଞ୍ଚିଲୁ । ଦୁହେଁ ତାଙ୍କର ଛାତ୍ର । କି ଅନାବିଲ ଶ୍ରଦ୍ଧା ତାଙ୍କର—ଆଶିର୍ବାଦ ଦେଲେ । ଯଥାସ୍ଥାନ ପାଇ ଆମେ ତାଙ୍କର ଜୀବନୀ ଉପରେ ଆବେଦନ ଲେଖିନେବା ।

ଉକ୍ତ ଆବେଦନ ଆକ୍ଷରିକ ନିରୂପିତ ସମୟରେ ସାର୍ (ସ୍ୱର୍ଗତ ପଣ୍ଡା ଯେପରି ମତେ ଅପେକ୍ଷା କରୁଥିଲେ—ମତେ ବସିବାକୁ କହି ନିଜେ ଆସନ ନେଲେ । ତାପରେ ଆରମ୍ଭ କଲେ ତାଙ୍କର ଜୀବନୀ—ମୁଁ ଅବାକ୍ ହୋଇ ତାଙ୍କ ଆଡ଼େ ଚାହିଁଥାଏ—ସତେ ଯେପରି ମୋ ଛାତ୍ର ଜୀବନର ଦର୍ଶନ ଅଧ୍ୟାପକ ମୋ ଆଗରେ ଦେଖା ଦେଇଛନ୍ତି । ଛାତ୍ରଜୀବନ, ଅଧ୍ୟାପକ ଜୀବନ ଏ ସବୁ ବର୍ଣ୍ଣନା କରିବା ପରେ ପରେ ସେ ଯେତେବେଳେ କହି ବସିଲେ, ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ

ହୋଇଥିଲ କବିତା ରଚନାରେ, ମୁଁ ସେତେବେଳେ ଏକାବେଳକେ ବିସ୍ମିତ ହୋଇ ପଡ଼ିଥିଲି । ସାର କବିତା ଲେଖୁଥିଲେ । ଏ କଥା କହିଲେ ହୁଏତ କେହି ବିଶ୍ବାସ କରିବେ ନି । ମାତ୍ର ହଠାତ୍ ସେ ଉଠିଯାଇ ଗୋଟାଏ ପାଣ୍ଡୁଲିପି ଆଣିଲେ । କହିଲେ···ଶୁଣ···। ତାପରେ କି ସୁନ୍ଦର କଣ୍ଠରେ ଗାଇଲେ ସେ—ସେ ପୁଣି ତାଂକର ସେଇ ସମୟର ରଚନା ।

ବୃଦ୍ଧ ବୟସରେ ସତେ ଯେପରି ସେ ପୁଣି ଥରେ ଫେରି ପାଉଥିଲେ ତାଂକର ତରୁଣ କବିତ୍ବର ଜୀବନକୁ ।

ସାର୍ ଆମର ଚାଲିଗଲେ । କେତେ ଚଂଚଳ ।

ସମୟର ରଥଚକ ଘୂରି ଯାଇଛି ସତେ । ଆମକୁ ଲାଗୁଛି ସାର୍ ଅଛନ୍ତି । ସେହି ଯେପରି ପ୍ରଫେସର ପଡ଼ା ଭିତରେ ତାଂକ ଘର ଫାଟକ ଭିତରୁ ଛତାଟିଏ ଧରି ବାହାରି ଆସୁଛନ୍ତି— କେଉଁଆଡ଼େ ଯିବେ ନାହିଁ । ଚାଲି ଚାଲି ପୁଣି ସକାଳି ଚାଲି ସେ ଯିବେ ରେଭେନ୍‌ସା କଲେଜକୁ ।

ମଣିଷ ଜାଣେ, ଯାହା ଆଖି ଆଉ ପାଉରେ ଲୁଚିଗଲି ତାହା ଆଉ ଆଖିଆଗକୁ ଆସିବ ନାହିଁ—ତେବେ ବି ମନ ସେଇ ଅତୀତର କାହାଣୀ ନେଇ ବଂଚିବାକୁ ଚାହେଁ—ଆମ ଆଖି ଆଉ ପାଉରେ ଏତେ ଦୂରରେ ଥାଇ ବି ସାର ଆମକୁ ପ୍ରେରଣା ଦେବେ— ଧୈର୍ଯ୍ୟ ଦେବେ, ସାହାସ ଦେବେ ।

---

# ପୁରାଣ-ପୁରୁଷ

**ଶ୍ରୀ ଚନ୍ଦ୍ରଧର ମହାପାତ୍ର**

ପୂର୍ବରୁ ତାଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ନ ଥିଲା । କିନ୍ତୁ ନୂଆ ଓଡ଼ିଆ ଜ୍ଞାନକୋଷ ବିଭାଗର ଏକ କମିଟିରେ ସଭ୍ୟ ହେବାଦିନୁ ସେହି ପୁରାଣ ପୁରୁଷଙ୍କର ସାଧୁତା, ସଂଯମ, ନିଷ୍ଠା ଦେଖି ବିସ୍ମିତ ହୋଇଥିଲି । ପଣ୍ଡିତ ଗୋପବନ୍ଧୁ ଏହି ଋଷିଟିକୁ କିପରି ଚିହ୍ନି ତାଙ୍କ କନ୍ୟା ମଧ୍ୟରୁ ଗୋଟିଏ ଦାନ କରିଥିଲେ, ତାହାହିଁ ଭାବୁଥିଲି ।

ଦେଖା ବହୁ ସମୟରେ ହୁଏ । ବହୁ ସଭା ସମିତିରେ ମଧ୍ୟ ତାଙ୍କୁ ଦେଖେ । କ୍ରମଶଃ କ୍ରମଶଃ ମୁଁ ତାଙ୍କର ଅତି ନିକଟବର୍ତ୍ତୀ ହୋଇଗଲି । ଦିନେ ପଚାରିଲି, 'ପଣ୍ଡିତ ଗୋପବନ୍ଧୁଙ୍କ ଯେନି ପଣ୍ଡିତ ଗୋଦାବରୀଶ ମିଶ୍ରେ ଏହି ମର୍ମରେ ଲେଖିଛନ୍ତି ଯେ, ସେ ଆମକୁ ଦେଶସେବାରେ ଉଣି ତାଙ୍କ ଜ୍ୱାଇଁ ରତ୍ନାକର ବାବୁଙ୍କୁ କାହିଁକି ସରକାରୀ ସର୍ଭିସ ମଧ୍ୟରେ ପୂରାଇଲେ, ଏହା ଜାଣି ହୁଏନାହିଁ । ଆପଣ ଏହା ଯେନି ତ କିଛି କହିଲେ ନାହିଁ । ତା' ଶୁଣି ସେ ମୋତେ କହିଲେ, ପଣ୍ଡିତ ଗୋପବନ୍ଧୁ ଏବଂ ଗୋଦାବରୀଶଙ୍କ ନିକଟରେ ମୁଁ ଜନଚକ୍ଷୁରେ ନଗଣ୍ୟ ନୁହେଁ କି ? କି ମନ୍ତବ୍ୟ ଦେବି ?' ମୁଁ ପୁଣି ବଳାଇଲି । ସେ କହିଲେ, 'ମୋର ସର୍ଭିସ ଯେନି ପଣ୍ଡିତ ଗୋପବନ୍ଧୁ କୌଣସି ସୁପାରିସ କରିବା କଥା ତ ଆଦୌ ନୁହେଁ । ତେବେ ସେ ମୋତେ ତାଙ୍କ ଦଳଭୁକ୍ତ କରିବାକୁ ଅବଶ୍ୟ କେବେ ପ୍ରେରଣା ଦେଇ ନାହାନ୍ତି । ମୁଁ ମୋ ନିଜ ଯୋଗ୍ୟତାରେ ଶାସନବିଭାଗୀୟ ସର୍ଭିସ ମଧ୍ୟ ପାଉଥିଲି । କିନ୍ତୁ ତାହା ମୋ ପକ୍ଷରେ ସୁବିଧାଜନକ ନୁହେ ବୋଲି ମାଷ୍ଟରି ସ୍ୱୀକାର କରିନେଲି ।'

ମୁଁ ତାଙ୍କ ସହିତ ଆଲୋଚନା କରି ଜାଣିଲି, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଉକ୍ତିଟି ତାଙ୍କ ପକ୍ଷରେ ସତ୍ୟ ହୋଇପାରେ, କିନ୍ତୁ ରତ୍ନାକର ବାବୁଙ୍କ ପକ୍ଷରେ ନୁହେଁ ।

ଘଟଣାଚକ୍ରରେ ମୋର 'ଗୀତଗୋବିନ୍ଦ' ବହି, ଯାହା ହଜାରେ ପୃଷ୍ଠା ସରିକି ହେବ, ତା'ଉପରେ ଏକ ଭୂମିକା ଲେଖିବାକୁ ମୁଁ ଥରେ ତାଙ୍କୁ ଅନୁରୋଧ କଲି । କହିଲି, ପଦ୍ମାବତୀରମଣ ଜୟଦେବ କେବେ ବୈଷ୍ଣବ ନଥିଲେ । ତାଙ୍କୁ ଟାଣି ଓଟାରି ବୈଷ୍ଣବ କରିଦିଆଯାଇଛି । ସେ ପରକୀୟା ନାୟିକା ଘେନି ସ୍ୱର୍ଣ୍ଣପୀଠ ଜଗନ୍ନାଥ ମନ୍ଦିରରେ ଗୀତ ହେଉଥିବା ଗୀତଗୋବିନ୍ଦ କେବେ ଲେଖି ନଥିଲେ । ଏସବୁ ଘଟଣାଚକ୍ରରେ ଘଟିଯାଇଛି ।

ସେ ମୋର ୩୦୦ ପୃଷ୍ଠାର ଆଲୋଚନା, ମୋର ଅନୁବାଦ, ନିର୍ଯାସ ଆଦି ସମସ୍ତ ଶୁଣିଲେ । ମୁଁ ପ୍ରତ୍ୟହ ସକାଳେ ୧୯୬୭ ଡିସେମ୍ବର ବଡ଼ଦିନ ଛୁଟି ମଧ୍ୟରେ ତାଙ୍କ ପାଖକୁ ଆସେ । ତାପରେ ସେ ତାଙ୍କର ମତ ଡାକୁ-ଯାନ୍ତି । ପ୍ରତ୍ୟହ ସେ ଯାହା ଡାକନ୍ତି, ମୁଁ ତାହାକୁ ଅନ୍ୟ ଦିନ ଶୁଣାଏଁ । ଗୋଟିଏ ଶବ୍ଦ ମୁଁ ବସାଇ ଦେଇଥିଲେ, ସେ ତାହା ଧରିପାରନ୍ତି ଏବଂ ତାହା ନିଶ୍ଚିତ ବଦଳାଇ ଦିଅନ୍ତି । କହନ୍ତି—ମୋ ନୀରସ ଲେଖାରେ ଏ ସରସ ଶବ୍ଦ କାହୁଁ ଆସିବ ? ମୁଁ ଲଜ୍ଜିତ ଏବଂ ସ୍ତମ୍ଭିଭୂତ ହୁଏ । ହେଉ ହେଉ ଲେଖାଟି ବିପୁଳ ଆକାର ଧରିଲା । ସେ ଶେଷଦିନ ଦସ୍ତଖତ ଦେଇ ମୋତେ ବିଦାୟ ଦେଲେ ।

ତାଙ୍କର ସେଇ କିଛିଦିନର ମର୍ଯ୍ୟାଦାସମ୍ପନ୍ନ ବ୍ୟବହାର, ତାଙ୍କରେ ଶିଷ୍ଟାଚାର, ଆତିଥ୍ୟ ଓ ତାଙ୍କର ସସ୍ନେହ କଥୋପକଥନ ଏପରିକି ଏଡେ ବଡ଼ ମନୀଷୀ ହୋଇ ନିଜକୁ ସମସ୍ତଙ୍କଠାରୁ ନ୍ୟୂନ କରି କହିବାର ଯେ ଉଦାରତା, ଯାହା ଅନୁଭବ କରିଥିଲି, ଏବେ ତାହା ଶୂନ୍ୟ ହେଲା ।

ଓଡ଼ିଶାରେ କେତେକ ସଦାଚରଣ; ସଦ୍‌ଗୁଣ-ଭୂଷିତ ବିଜ୍ଞବ୍ୟକ୍ତି ଗୋଟେ ସମୟରେ ଦେଖା ଦେଇଥିଲେ । ବସନ୍ତ ପବନ ବାଜି ଯେପରି ବୃଦ୍ଧ ସହକାରର ଗୋଟେ ଅଧେ ଡାଳ ପୁଷ୍ପିତ ହୁଏ, ବା ଜୀର୍ଣ୍ଣ ଚନ୍ଦନତରୁ ମଳୟ ବାଜିଲାରୁ କିୟଦଂଶ ଅଗୁରୁ ପାଲଟେ, ଏହା ସେପରି ଘଟିଥିଲା ।

ଉତ୍କଳ ଜନନୀଙ୍କର ସେହି ସବୁ ସନ୍ତାନ ଶେଷ ହେବା ଉପରେ । ନୂତନ ସଂସ୍କରଣରେ ସେହି ପରଂପରାର ସ୍ମୃତି ରକ୍ଷାକରି ଆମେ ବା ଆମର ଉତ୍ତର ପୁରୁଷ କିରୂପେ ଏ ଜାତିର ମର୍ଯ୍ୟାଦା, ସଦାଚରଣ ରକ୍ଷା କରିବୁ, ତାହା ଜଗନ୍ନାଥଙ୍କ ଉପରେ ନିର୍ଭର କରେ ।

———

# ସେ ନାହାନ୍ତି—ଆମେ ତାଙ୍କୁ ଝୁରୁଛୁ

ଶ୍ରୀ ବଚ୍ଚିଦାନନ୍ଦ କର

ସେ ନାହାନ୍ତି । ଇତି ମଧ୍ୟରେ ବର୍ଷଟାଏ ପୂରିଗଲା । ଆଜ ଆମେ ତାଙ୍କୁ ସ୍ମରଣ କରୁଛୁ । ତାଙ୍କ ଶ୍ରାଦ୍ଧ ପାଳୁଛୁ । ଶ୍ରଦ୍ଧାରୁ ତ ଶ୍ରାଦ୍ଧର ସୃଷ୍ଟି । ଆମେ ତାଙ୍କର ଶ୍ରାଦ୍ଧ ପାଳନ କରୁଛୁ, ଯେହେତୁ ତାଙ୍କ ପ୍ରତି ଆମର ଗଭୀର ଶ୍ରଦ୍ଧା ରହିଛି । ଅନେକ ତାଙ୍କୁ ମନେ ପକାଉଛନ୍ତି, ତାଙ୍କୁ ଝୁରୁଛନ୍ତି । କାହିଁକି—?

ଜନ୍ମ ମରଣ ତ ଲାଗିଛି । ଗଛରେ ନୂଆପତ୍ର କଅଁଳ, ପୁରୁଣା ପତ୍ର ଝଡ଼ିପଡ଼ିଲା ପରି, ପ୍ରତିଦିନ କେତେ ନୂଆ ମୁହଁ ସଂସାରକୁ ଆସୁଛି, କେତେ ପୁରୁଣା ପରିଚିତ ମୁହଁ ଛପି ଯାଉଛି, ହଜି ଯାଉଛି । ସରକାରୀ ନଥିପତ୍ରରେ ସିନା ହିସାବ ରହୁଥିବ, ନହେଲେ, ସାଧାରଣରେ କିଏ ମନେ ରଖୁଛି ? କିଏ ଗଣନା କରୁଛି ?

କିନ୍ତୁ ଲୋକସାଧାରଣ ମନେ ରଖନ୍ତି କେତେ ଜଣଙ୍କୁ—ଯାହାଙ୍କର ଗୁଣ ଥାଏ, ପ୍ରତିଭା ଥାଏ, କୃତିତ୍ୱ ଥାଏ, କିଛି ସ୍ୱାକ୍ଷର ଥାଏ । ସେଇ ବ୍ୟକ୍ତିର ପ୍ରତିଭାକୁ ଅନ୍ୟମାନେ ପୂଜାକରନ୍ତି, ଗୁଣ ଓ କୃତିକୁ ସମ୍ମାନ ଦିଅନ୍ତି । ସ୍ୱାକ୍ଷରକୁ ସ୍ୱୀକାର କରନ୍ତି ।

ଭାଗବତରେ କୁହାଯାଇଛି—"ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି" ।

ମରଣ କାଳରେ ବା ମୃତ୍ୟୁ ପରେ, କିଏ କେତେ ତା' ପାଇଁ ବ୍ୟସ୍ତ ବ୍ୟାକୁଳ ହେଲେ, ଦୁଃଖ କଲେ ବା ଶୋକାଭିଭୂତ ହେଲେ, ସେଥିରୁ ଜଣାପଡ଼ିବ ମୃତ ବ୍ୟକ୍ତି କିଭଳି ଧରଣର ଥିଲେ । ଯେ କୌଣସି ବ୍ୟକ୍ତିର ମୃତ୍ୟୁରେ ତା' ପରିବାରବର୍ଗ ନିଶ୍ଚିତ ଦୁଃଖିତ ହୁଅନ୍ତି । କାହାର କାହାର ପାଇଁ ସେ ଗ୍ରାମର ବା ଅଞ୍ଚଳର ଲୋକେ ଶୋକ କରନ୍ତି । ଆଉ କାହାର

ପାଇଁ ଅନେକ ଲୋକ ଭାବନ୍ତି, ଦୁଃଖିତ ହୁଅନ୍ତି । ଏଇ ଶ୍ରେଣୀର ମୃତ ବ୍ୟକ୍ତି ଜଣେ ଭଲ ମଣିଷ ବୋଲି ସାଧାରଣରେ ଗ୍ରହଣ କରି ନିଆ ଯାଇଥାଏ ।

ଏଇଭଳି ଜଣେ 'ଭଲ ମଣିଷ' ଥିଲେ ଅଧ୍ୟାପକ ରତ୍ନାକର ପତି ମହାଶୟ । ତାଙ୍କର ସେଇଭଳି କିଛି ଗୁଣ ଥିଲା, ପ୍ରତିଭା ଥିଲା, ସ୍ୱାକ୍ଷର ଥିଲା, ଯେଉଁଥିପାଇଁକି ସେ ଚାଲିଗଲା ପରେ ଆମେ ତାଙ୍କ ଅଭାବ ଉପଲବ୍ଧି କରୁଛୁ, ତାଙ୍କ ପାଇଁ ଝୁରୁଛୁ, ତାଙ୍କୁ ମନେ ପକାଉଛୁ, ତାଙ୍କ ଗୁଣଗାନ କରୁଛୁ । ତାଙ୍କ ଶୂନ୍ୟତା ଆମକୁ ବାଧୁଛି ।

ତାଙ୍କ ବିୟୋଗରେ ଯେଉଁମାନେ କହିଥିଲେ ଯେ—"ତାଙ୍କ ସ୍ଥାନ ଅପୂରଣୀୟ ରହିଲା" ଆଜ ମନେ ହେଉଛି, ସେମାନେ ହୁଏତ ଠିକ୍ କହି-ଥିଲେ । କାରଣ, ଏଇ ଅଳ୍ପ ଦିନ ତଳେ ସ୍ୱର୍ଗତ ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କର "ଆତ୍ମ ଦର୍ଶନରେ ବିଶ୍ୱଶାନ୍ତି କଳ୍ପନା"—ଗ୍ରନ୍ଥଟିର ଶୁଭ ଉଦ୍‌ଘାଟନ ପାଇଁ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ସ୍ୱତଃ କହି ପକାଇଲେ "ରତ୍ନାକର ପତି ଥାଆନ୍ତେ କି, ଏ ଗ୍ରନ୍ଥ ଉଦ୍‌ଘାଟନ ସେ କରିଥାନ୍ତେ" । ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ କଥାରୁ ମୁଁ ଏତିକି ବୁଝିଲି ଯେ, ଦର୍ଶନ, ଈଶ୍ୱରତତ୍ତ୍ୱ ଇତ୍ୟାଦି ବିଷୟରେ ପତି ମହାଶୟଙ୍କ ଭଳି କେତେ ଜଣ ଅବଗାହି ଅଛନ୍ତି ? ଅବଗାହନ ନ ଥିଲେ ଜ୍ଞାନର ଗଭୀରତା କାହିଁ ?

ଓଡ଼ିଆ ସାହିତ୍ୟରେ ତାଙ୍କର ସେଭଳି ଅବଗାହନ ଓ ପାଣ୍ଡିତ୍ୟ ଥିଲା ବୋଲି ସିନା ସେ "ପ୍ରବନ୍ଧ ପ୍ରକାଶ" ଭଳି ଉଚ୍ଚ କୋଟିର ପ୍ରବନ୍ଧ ସୃଷ୍ଟି କରିପାରିଲେ ! ତାଙ୍କର ସେଭଳି ଜ୍ଞାନ ଓ ଗବେଷଣା ଥିଲା ବୋଲି ସିନା ସେ 'ସ୍ୱପ୍ନତତ୍ତ୍ୱ', 'ବିବର୍ତ୍ତନବାଦ' ଭଳି ଶ୍ରେଷ୍ଠ ବୌଦ୍ଧିକସ୍ତରର ଗ୍ରନ୍ଥ ରଚନା କରିପାରିଲେ ! ପତି ମହାଶୟଙ୍କର ଏହି ଶେଷୋକ୍ତ ଗ୍ରନ୍ଥ ଦୁଇଖଣ୍ଡି ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ସମ୍ପ୍ରତି ପ୍ରକାଶ ପାଇଛି । ପରିମାଣାତ୍ମକ ବିଚାରରେ ତାଙ୍କ ରଚନାର ଓଜନ ବେଶୀ ନୁହେଁ; କିନ୍ତୁ ଗୁଣାତ୍ମକ ବିଚାରରେ ସେ ସବୁର ଗୁରୁତ୍ୱ ଖୁବ୍ ବେଶୀ । ଏହି ଦୃଷ୍ଟିରୁ ଦେଖିଲେ, ସେ ଯେପରି ଗୋଟାଏ ଅଗାଧ ସମୁଦ୍ର ଭଳି ମନେ ହେଉ-ଥିଲେ । ସେ ସମୁଦ୍ର ରୁଦ୍ର ନୁହେଁ; ଶାନ୍ତ ଓ ସୁନ୍ଦର । ଅକାତକାତ ଜ୍ଞାନ-ଜଳ । ସେ ଗଭୀରତାକୁ ମାପି ହେବନାହିଁ, ଛୁଇଁ ହେବନାହିଁ—ସାଧାରଣ ମଣିଷ ପକ୍ଷରେ ।

ସେ ଥିଲେ ମୋର ପୂଜ୍ୟ ପିତା ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଘନିଷ୍ଠ

ବନ୍ଧୁ ଓ ସହାଧ୍ୟାୟୀ । ଦୁହେଁ ଏକାସଙ୍ଗେ, ଏକାଶ୍ରେଣୀରେ ପ୍ୟାରୀମୋହନ ଏକାଡେମୀରେ ଅଧ୍ୟୟନ କରୁଥିଲେ । କଲେଜରେ ଦୁହିଁଙ୍କର ପାଠ୍ୟ ବିଷୟ ଥିଲା ଦର୍ଶନଶାସ୍ତ୍ର ବା ଫିଲୋସଫି । ଦୁଇ ବନ୍ଧୁ କିଭଳି ତର୍କଚ୍ଛଳରେ ଜଟିଳ ଦର୍ଶନ ଶାସ୍ତ୍ରକୁ ସରଳ ଭାବରେ ବୁଝିପାରୁଥିଲେ, ସେ ସମ୍ପର୍କରେ ସ୍ୱର୍ଗତ ପତି ମହାଶୟ ତାଙ୍କର ପ୍ରିୟ ବନ୍ଧୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ଲିଖିତ ଏକ ନିବନ୍ଧରେ ଯାହା ଲେଖିଥିଲେ, ତାହା ମୁଁ ଏଠାରେ ଉଦ୍ଧାର କରୁଛି । ପତି ମହାଶୟ ଲେଖିଥିଲେ—"ଦର୍ଶନ ଶାସ୍ତ୍ର ବିଷୟଟି ବାଳକୃଷ୍ଣ ଏକାକୀ ପଢ଼ିବାକୁ ସୁଖ ପାଉନଥିଲେ । ତେଣୁ ଆମେ ଉଭୟ ଏକତ୍ର ଅଧ୍ୟୟନ କରୁ । ବିଶେଷତଃ ଏଥିକ୍ସ୍ ବା ନୀତିଶାସ୍ତ୍ର ବିଷୟଟି ଆଲୋଚନା କରିବାରେ ଆମେ ଦୁହେଁ ବହୁସମୟ ବ୍ୟାପୃତ ରହୁ । ଆମର ତଦାନୀନ୍ତନ ଅଧ୍ୟାପକ ସ୍ୱର୍ଗତ ମୋହିନୀମୋହନ ସେନାପତି ଈଶ୍ୱରବିଶ୍ୱାସ ବିଷୟରେ ଆମ୍ଭମାନଙ୍କ ଆଗରେ ଅନେକ ଯୁକ୍ତି ଉପସ୍ଥାପିତ କରୁଥିଲେ । ଏଥିରେ ବାଳକୃଷ୍ଣ ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ତେଣୁ ମୁଁ ଆସ୍ତିକତା ଭିତ୍ତିରେ ଦର୍ଶନଶାସ୍ତ୍ର ଆଲୋଚନା କଲାବେଳେ ବାଳକୃଷ୍ଣ ନାସ୍ତିକତା ଭିତ୍ତିରେ ତାହା ଖଣ୍ଡନ କରିବାକୁ ଆଗଭର ହୋଇ ପଡ଼ନ୍ତି । ଏହି ଆଲୋଚନାଗତ ସଂଘର୍ଷ ଫଳରେ ଆମର ପଠିତବ୍ୟ ବିଷୟଟି ବେଶ୍ ହୃଦୟଙ୍ଗମ ହୋଇ ପାରୁଥିଲା ।"

ପତି ମହାଶୟ ଜଣେ ପ୍ରଥମ ଶ୍ରେଣୀର ଦର୍ଶନ ଅଧ୍ୟାପକ, ଉଚ୍ଚକୋଟୀର ସାହିତ୍ୟିକ ଏବଂ ସର୍ବୋଚ୍ଚ ଶିକ୍ଷିତ ବ୍ୟକ୍ତି ଥିଲେ । ସେ କେବଳ ଗୁଣୀ ନଥିଲେ, ଗୁଣଗ୍ରାହୀ ମଧ୍ୟ ଥିଲେ । ତେଣୁ ଅନ୍ୟର ଗୁଣକୁ ସେ ଚିହ୍ନୁଥିଲେ, ବଣିଆ ସୁନାକୁ ଚିହ୍ନିଲା ଭଳି । ସେଇ ଭଳି ଗୁଣିଆ ଥିଲେ ସେ ।

ସମାଜରେ, ସାହିତ୍ୟରେ, ପଣ୍ଡିତ ମହଲରେ ସୁପରିଚିତ ଓ ସୁପ୍ରତିଷ୍ଠିତ ଏଭଳି ଜଣେ ବ୍ୟକ୍ତି ଗ୍ରାମ ପଞ୍ଚାୟତର ସରପଞ୍ଚ ମଧ୍ୟ ହୋଇଥିଲେ । ନିଜ ଗ୍ରାମର କିଛି ଉନ୍ନତି ଓ ମଙ୍ଗଳ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସରପଞ୍ଚ ହେବାକୁ ସୁଦ୍ଧା କୁଣ୍ଠା ବା ସଂକୋଚ ପ୍ରକାଶ କରି-ନଥିଲେ । ଆଜିକାଲି ସରପଞ୍ଚ କହିଲେ ଲୋକେ କପରି ଗୋଟାଏ ଥଟ୍ଟା କରୁଛନ୍ତି, ପରିହାସରେ କହୁଛନ୍ତି 'ପରପଞ୍ଚ' । ଏବେ ସରପଞ୍ଚ କହିଲେ ଗୋଟାଏ ନମ୍ବର ଓ୍ୟାନ୍ ଟାଉଟର ବୋଲି ଅନ୍ୟମାନଙ୍କର କେମିତି ଗୋଟାଏ ଧାରଣା ହୋଇ ଯାଉଛି । ସେଥିପାଇଁ ଉଚ୍ଚ ଶିକ୍ଷିତ ଲୋକେ ସେ

ଆଉକୁ ପ୍ରାପ୍ୟ ଆଗ୍ରହୀ ହେଉ ନାହାନ୍ତି । କେହି ଆଗ୍ରହୀ ହୋଇ ପଶିଲେ, ଶୀଘ୍ର ଛାଡ଼ୁଛନ୍ତି । କାରଣ ସେ ପଙ୍କିଳ ପରିବେଶ ସହ ସାଧାସିଧା ଲୋକ ନିଜକୁ ଖାପ ଖୁଆଇ ପାରୁ ନାହାଁନ୍ତି । ତେଣୁ ସେ ଠିକ ପାରିବ ନାହିଁ । ପଣ୍ଡିତ ମହାଶୟ ବୋଧହୁଏ ସେଇ କାରଣରୁ ସରପଞ୍ଚରୁ ଓହରି ଯାଇଥିଲେ । ପଣ୍ଡିତ ମହାଶୟଙ୍କ ଦୃଷ୍ଟାନ୍ତ ମତେ ମଧ୍ୟ ଉତ୍ସାହିତ କରିଥିଲା । ତେଣୁ ମୁଁ କିଛି ବର୍ଷ ଆମ ଗାଁର ସରପଞ୍ଚ ହୋଇଥିଲି ; କିନ୍ତୁ ଛାଡ଼ିବାକୁ ବାଧ୍ୟ ହୋଇଥିଲି ।

ପଣ୍ଡିତ ମହାଶୟ ମୋର ପିତୃତୁଲ୍ୟ । ସେ ଆଜି ଯାହା ହୁଅନ୍ତୁ ନା କାହିଁକି, ସେ ଯେ ଜଣେ ଅତ୍ୟନ୍ତ ଭଲ ମଣିଷ ଏବଂ ସଚ୍ଚରିତ୍ର, କର୍ମଠ, ନିଷ୍ଠାବାନ୍ ଓ ଆଦର୍ଶ ପୁରୁଷ ଏହା ଅବିସମ୍ବାଦିତ ସତ୍ୟ । ଅତି ସରଳ, ନିଷ୍କପଟ ଓ ନିରାଡ଼ମ୍ବର ମଣିଷଟିଏ । ଗର୍ବ ନଥିଲା, ବଡ଼ିମା ନଥିଲା ବା ଆତ୍ମପ୍ରୌଢ଼ି ନଥିଲା । ସରଳ ଜୀବନ ଓ ଉଚ୍ଚ ଚିନ୍ତା ଥିଲା ତାଙ୍କର ନୀତି । ସେଇଥିପାଇଁ ସେ ଥିଲେ ସମସ୍ତଙ୍କର ଅତି ଆପଣାର ଓ ଆଦରର । ସେଇଥିଲାଗି ଆମେ ତାଙ୍କୁ ସ୍ମରଣ କରୁଛୁ ଓ କରୁଥିବୁ । ଆମେ ତାଙ୍କୁ ଝୁରୁଛୁ ଓ ଝୁରୁଥିବୁ ।

---

# କେତେ କଥା ମନେ ପଡ଼େ

ଶ୍ରୀ ଦାମୋଦର ମିଶ୍ର, ଭୁବନେଶ୍ୱର

ଅଧ୍ୟାପକ ପତି ମୋର ଶିକ୍ଷାଗୁରୁ ଥିଲେ । ତାଙ୍କର ଅଗଣିତ ଛାତ୍ରଙ୍କ ମଧ୍ୟରୁ ମୁଁ ଜଣେ ହୋଇଲେ ମଧ୍ୟ, କିପରି ଏବଂ କେବେ ମୁଁ ତାଙ୍କର ସାନ୍ନିଧ୍ୟ ଲାଭ କଲି ଏବେ ଠିକ୍ ମନେ ପଡ଼ୁନାହିଁ । ତାଙ୍କର ଦୈନନ୍ଦିନ ଜୀବନର ବହୁ ଘଟଣା ମୁଁ ତାଙ୍କଠାରୁ ଶୁଣିଛି ଏବଂ ପ୍ରତ୍ୟକ୍ଷ ଅନୁଭବ କରିଛି । ତାଙ୍କର ସରଳ ନିରାଡ଼ମ୍ବର ଜୀବନ ଉଚ୍ଚ ଆଶା ବା ଅଭିଳାଷରେ ଉଦ୍‌ବେଳିତ ହୋଇ ନଥିଲା ।

ତାଙ୍କର ବାଲ୍ୟଜୀବନର ଦାରିଦ୍ର୍ୟ ଏବଂ ଦୁଃଖର କାହାଣୀ ସେ ଅନେକ ସମୟରେ ବିନା ସଙ୍କୋଚରେ ପ୍ରକାଶ କରୁଥିଲେ । ସେ ପ୍ୟାରି-ମୋହନ ଏକାଡେମୀରେ ପଢ଼ିବା ସମୟରେ ଦେବାନ୍ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଶିକ୍ଷକତା କରୁଥିଲେ । ଲକ୍ଷ୍ମୀଧର ବାବୁଙ୍କର ଛାତ୍ରବତ୍ସଳତା ଏବଂ କର୍ତ୍ତବ୍ୟନିଷ୍ଠାର ବର୍ଣ୍ଣନା କଲାବେଳେ ତାଙ୍କ ଆଖିରେ ମୁଁ ଲୁହ ଦେଖିଛି । ଆଚାର୍ଯ୍ୟ ହରିହର ସେତେବେଳେ ଏକାଡେମୀରେ ଗଣିତ ଶିକ୍ଷକ ଥିଲେ । ତାଙ୍କର ଶିକ୍ଷାଦାନର ପ୍ରଣାଳୀ ବିଷୟରେ କହିବାବେଳେ ଦର୍ଶନ ଅଧ୍ୟାପକ ରତ୍ନାକର ପତି ସେହି ସ୍କୁଲ ଛାତ୍ରଜୀବନକୁ ଫେରିଗଲାପରି ମନେ ହେଉ-ଥିଲା । କଲେଜ ଜୀବନରେ ଅଧ୍ୟାପକ ଅମ୍ବିକା ଚରଣ ମିଶ୍ରଙ୍କର ଚରିତ୍ର-ବତ୍ତାର ବର୍ଣ୍ଣନା ମୁଁ ଅନେକଥର ଶୁଣିଛି ।

ଯୋଗୀର ଥାଳଭଙ୍ଗା ଯୋଗୁଁ ସ୍ନେହମୟୀ ଜନନୀଙ୍କର ଦୁଃଖ, ରୁକୁଣ୍ଡା ଫୁଲ ତୋଳି ତାକୁ ଗନ୍ଧ ଖାଇବା—ଏ ସବୁର ବର୍ଣ୍ଣନା ତାଙ୍କର ବାଲ୍ୟସ୍ମୃତିକୁ ଉଦ୍‌ବେଳିତ କରୁଥିଲା । କେତେଗୁଡ଼ିଏ କ୍ଷୁଦ୍ର ନଗଣ୍ୟ ପଦାର୍ଥରେ ତାଙ୍କର ଅପାର ଆନନ୍ଦ ଲକ୍ଷ୍ୟ କରିଛି । ଖାଦ୍ୟ ସାମଗ୍ରୀ ହିସାବରେ ନିମ୍ବକଡ଼ି, ପିତାଶାଗ ଏବଂ ପଣସ କଠା ତରକାରି ତାଙ୍କୁ ଅସୀମ ଆନନ୍ଦ ଦେଉଥିଲା । ଏସବୁ କ୍ଷୁଦ୍ର ଘଟଣା ବର୍ଣ୍ଣନା କରିବାରେ

ତାଙ୍କର ସଂକୋଚ ନଥିଲା । ପ୍ରତିଷ୍ଠିତ ଜୀବନରେ ଦାରିଦ୍ର୍ୟ ଏବଂ ଦୁଃଖର ଜୀବନକୁ ସାଧାରଣତଃ କେହି ମନେ ରଖନ୍ତି ନାହିଁ କିମ୍ବା ପ୍ରକାଶ କରିବାକୁ କୁଣ୍ଠାବୋଧ କରନ୍ତି ।

ପଣ୍ଡିତ ଗୋପବନ୍ଧୁଙ୍କର କନ୍ୟାକୁ ବିବାହ କରିବା ତାଙ୍କର ଗୋଟିଏ କାହାଣୀ । ଦରିଦ୍ର ପରିବାରରେ ଏବଂ ଗ୍ରାମାଞ୍ଚଳରେ ତଅଁରପା ନାମକ ଅଖ୍ୟାତ ଗ୍ରାମରେ ପଣ୍ଡିତ ଗୋପବନ୍ଧୁଙ୍କର କନ୍ୟା କିପରି ଚଳିବେ, ଏହି ଚିନ୍ତାରେ ବ୍ୟତିବ୍ୟସ୍ତ ହୋଇ ଏ ବିବାହରେ ସେ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ପଣ୍ଡିତ ଗୋପବନ୍ଧୁ କାନ୍ଧ ପକାଇ କହିଥିଲେ, "ରତ୍ନାକର, ମୁଁ ତୁମକୁ ମୋର କନ୍ୟାଟିକୁ ସଂପ୍ରଦାନ କରିବି ବୋଲି ଠିକ୍ କରିସାରିଛି । ତୁମେ ମୋତେ ନିରାଶ କରନାହିଁ ।" ସେତେବେଳେ ରତ୍ନାକର ରାଜି ହୋଇଥିଲେ । ଏ ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ ।

ଅଧ୍ୟାପକ-ଜୀବନରେ ତାଙ୍କର କର୍ତ୍ତବ୍ୟନିଷ୍ଠା, ନିରାଡ଼ମ୍ବରତା ଏବଂ ସରଳତା ସର୍ବଜନବିଦିତ । ସେ ଘଣ୍ଟା ବାଜିବାକୁ ବ୍ୟଗ୍ରଭାବରେ ଅପେକ୍ଷା କରିଥାନ୍ତି, ଘଣ୍ଟା ବାଜିଲେ ସଙ୍ଗେ ସଙ୍ଗେ ଖାତା, ଡଷ୍ଟର ଏବଂ ଚକ୍ ଧରି କ୍ଲାସକୁ ଏକପ୍ରକାର ଦଉଡ଼ ଦଉଡ଼ ଯାଆନ୍ତି, ମୁହୂର୍ତ୍ତେ ବିଳମ୍ବ ହୁଏ ନାହିଁ । ତରୁଣ ଅଧ୍ୟାପକ ଏବଂ ଛାତ୍ରମାନଙ୍କ ମଧ୍ୟରେ ଅଧ୍ୟାପକ ପତିଙ୍କର ଏ ଆଚରଣ ହାସ୍ୟୋଦ୍ଦୀପକ ହୋଇଥିଲା । ଅଧ୍ୟାପନା ସମୟରେ ହାସ୍ୟରସ ବା କୌତୁକର ଅବତାରଣା ତାଙ୍କଠାରେ ମୁଁ କେବେହେଲେ ଦେଖିନାହିଁ । ସେ ଥିଲେ ଛାତ୍ରବତ୍ସଳ ; କିନ୍ତୁ ଛାତ୍ରର ଦୋଷତ୍ରୁଟି କେବେ କ୍ଷମା କରୁ ନ ଥିଲେ । ଉଚ୍ଚ ଉଦାତ୍ତସ୍ୱରରେ ସେ ଅଧ୍ୟାପନା କରୁଥିଲେ । ତାଙ୍କର ବକ୍ତୃତା ଦେବାର ଢଙ୍ଗ ଅନେକ ସମୟରେ ଛାତ୍ର ମହଲରେ ହାସ୍ୟୋଦ୍ଦୀପକ ହେଉଥିଲା । ଦରିଦ୍ର ମେଧାବୀ ଛାତ୍ରମାନଙ୍କୁ ସେ ସବୁ ପ୍ରକାରେ ସାହାଯ୍ୟ କରୁଥିଲେ । ଅଧ୍ୟାପନାରେ କର୍ତ୍ତବ୍ୟନିଷ୍ଠା ତାଙ୍କର ଗୋଟିଏ ବିଶିଷ୍ଟ ଗୁଣ ଥିଲା । ନ ପଢ଼ି କିମ୍ବା ପାଠ୍ୟ ବିଷୟରେ ଚିନ୍ତା ନ କରି ସେ କେବେ କ୍ଲାସକୁ ଯାଉ ନ ଥିଲେ । ଗୋଟିଏ ଘଟଣାରେ ହିନେ ତାଙ୍କର କର୍ତ୍ତବ୍ୟ-ବିଚ୍ୟୁତି ମୋର ମନେ ପଡ଼ୁଛି । ରେଭେନ୍‌ସା କଲେଜର ଦର୍ଶନ ବିଭାଗରୁ ଜଣେ ଅଧ୍ୟାପକ ସାମୟିକଭାବରେ ଛଟେଇ ହେବାର ଆଦେଶ ଆସିଲା । ନିର୍ଦ୍ଦେଶକ ଫକସ୍ ସାହେବଙ୍କର ଆଦେଶ । ୧୯୩୧ ମସିହା ଅଗଷ୍ଟମାସ ହେବ । ଅଧ୍ୟକ୍ଷ ଡଉକ୍ ସାହେବ ଫକ୍‌ସସାହେବଙ୍କୁ ଲେଖା ଲେଖି କଲେ

ଅଧ୍ୟାପକ ପତିଙ୍କୁ ସ୍ଥାନାନ୍ତର ନ କରିବାକୁ କିନ୍ତୁ ଆଦେଶ ହେଲା ଅଧ୍ୟାପକ ପତି ରାଞ୍ଚି ଜିଲ୍ଲାସ୍କୁଲକୁ ଲଜିକ୍ ଶିକ୍ଷକ ରୂପେ ଅସ୍ଥାୟୀ ଭାବରେ ଯିବେ ; ଛାତ୍ର ସଂଖ୍ୟା ଯଥୋଚିତ ହେଲେ ତାଙ୍କୁ ପୁଣି ରେଭେନ୍‌ସା କଲେଜକୁ ଅଣାଯାଇପାରେ । ମୁଁ ଛାତ୍ର ଜୀବନରେ ଏହି ଗୋଟିଏ ଘଟଣାରେ ତାଙ୍କୁ ବିବ୍ରତ ହୋଇ ପଡ଼ିବାର ଦେଖିଛି । ଯେଉଁଦିନ ଶେଷ ଆଦେଶ ଆସିଲା, ଅଧ୍ୟାପକ ପତି ଯଥାରୀତି ଦର୍ଶନ କ୍ଲାସକୁ ଆସିଲେ, କିନ୍ତୁ କର୍ତ୍ତବ୍ୟ-ବିଚ୍ୟୁତି ମୁଁ ଲକ୍ଷ୍ୟକଲି । ପ୍ରିୟ ରେଭେନ୍‌ସା କଲେଜକୁ ଛାଡ଼ିଯିବାର ବେଦନା ତାଙ୍କୁ ଏତେ ମର୍ମାହତ କରିଥିଲା ଯେ, ସେ କିଛି ପଢ଼ାଇ ପାରିଲେ ନାହିଁ । ମୁଁ ଏକମାତ୍ର ଛାତ୍ର ଦର୍ଶନ ଅନର୍ସରେ ଥାଏ, ଘଣ୍ଟାଟିଯାକ ଅଧ୍ୟାପକ ନାନା-ଭାବରେ ତାଙ୍କ ବେଦନା ପ୍ରକାଶ କଲେ । ଅଧ୍ୟାପନା ହେଲାନାହିଁ । କିନ୍ତୁ ଶେଷରେ ଦୁଃଖ ପ୍ରକାଶ କରି କହିଲେ, "ଆଜି କିଛି ହେଲାନାହିଁ, ବଡ଼ ମର୍ମାହତ ହୋଇ ପଡ଼ିଛି" । ନିର୍ଦ୍ଦେଶକ ଫକମ୍ ସାହେବଙ୍କର ନିନ୍ଦା ମୁଁ ତାଙ୍କ ମୁହଁରୁ କେବେ ଶୁଣିନାହିଁ । ବରଂ ସେହି ସାହେବ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ତାଙ୍କର ଏସବୁ ଘଟଣାରେ ଗୋଟିଏ ବିଶିଷ୍ଟ ଗୁଣ ପ୍ରକାଶ ପାଇଥିଲା । ଆଦେଶଟା ଭୁଲ କି ଠିକ୍ ତାର ବିଚାର ସେ କରୁ ନ ଥିଲେ ; ଆଦେଶ ଶିରୋଧାର୍ଯ୍ୟ, ଏହାହିଁ ତାଙ୍କର ମନୋବୃତ୍ତି ଥିଲା ।

ଦର୍ଶନର ଅଧ୍ୟାପକ ଭାବରେ ତାଙ୍କର କୌଣସି ଗୋଟାଏ ଉଚ୍ଚ ଅଭିଳାଷ ନ ଥିଲା, କ'ଣ ଗୁଡ଼ାଏ କରି ପକାଇବେ ବା କ'ଣ ଗୋଟାଏ ହୋଇଯିବେ, ଏପରି ଚିନ୍ତା ତାଙ୍କର ସ୍ୱଭାବ ବିରୁଦ୍ଧ । ଉପସ୍ଥିତ କର୍ତ୍ତବ୍ୟରେ ନିଷ୍ଠା ତାଙ୍କର ଜୀବନର ବ୍ରତ ଥିଲା । ଅଧ୍ୟାପକ ଜୀବନରେ ସେ ଅନେକ ଗ୍ରନ୍ଥ ସଂଗ୍ରହ କରିଥିଲେ ; ଏବେ ମଧ୍ୟ ସେଗୁଡ଼ିକ ସଞ୍ଚିତହୋଇ ଅଛି । ସେ ପ୍ରତ୍ୟେକ ବିଷୟରେ ଠିକଣାରେ ଆଲୋଚନା କରୁଥିଲେ ଏବଂ ଗୋଟିଏ ବିଷୟରେ ସ୍ପଷ୍ଟ ଧାରଣା କରିବାକୁ ଯେତେ ଗ୍ରନ୍ଥ ଘାଣ୍ଟିବା ଦରକାର, ସେ ସବୁ ସଂଗ୍ରହ କରି ଅଧ୍ୟୟନ କରୁଥିଲେ । ଦର୍ଶନର ବହୁ ଗ୍ରନ୍ଥର ସରଳ ସଂକ୍ଷିପ୍ତ ନୋଟ୍ ତିଆରି କରି ରଖୁଥିଲେ । ସଂସ୍କୃତ ଭାଷାରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ବହୁ ସଂସ୍କୃତ ଗ୍ରନ୍ଥ, ବିଶେଷତଃ ହିନ୍ଦୁ ଦର୍ଶନର ଅନେକ ମୂଳଗ୍ରନ୍ଥ ତାଙ୍କର ସଞ୍ଚିତ ଅଛି । ସଂସ୍କୃତ ଭାଷାରେ ଉପାଦେୟ ଶ୍ଳୋକ ରଚନାକରି ସେ ଆନନ୍ଦ ପାଉଥିଲେ । ଜଣେ ଦାର୍ଶନିକ ବନ୍ଧୁ,

ପାଟଣା କଲେଜର ଅଧ୍ୟାପକ ଡଃ ଧୀରେନ୍ଦ୍ର ମୋହନ ଦତ୍ତଙ୍କ ସହିତ ତାଙ୍କର ସଂସ୍କୃତ ଭାଷାରେ ହିଁ ପତ୍ରାଳାପ ହେଉଥିଲା । ଅଧ୍ୟାପକ ଦତ୍ତ ଅବସର ଗ୍ରହଣ ପରେ ଶାନ୍ତି-ନିକେତନରେ ଅବସ୍ଥାନ କରୁଥିଲେ । ପୋଷ୍ଟକାର୍ଡ଼ରେ ଦେବନାଗରୀ ଅକ୍ଷରରେ ଏବଂ ସଂସ୍କୃତ ଭାଷାରେ କୁଶଳ ବାର୍ତ୍ତା ବିନିମୟ । ମୁଁ ସେହି ପୋଷ୍ଟକାର୍ଡ ଗୁଡ଼ିକ ଦେଖିଛି ଏବଂ ପଢ଼ିଛି ; କି ମଧୁର ସ୍ନେହ ଏବଂ ଶ୍ରଦ୍ଧାର ଆଦାନପ୍ରଦାନ !

ଅଧ୍ୟାପକ ପତିଙ୍କର ସାହିତ୍ୟ-ପ୍ରତିଭା ଓ ସାଧନା, ସର୍ବଜନବିଦିତ । ଆଜିକାଲିର କେତେକ ଲେଖକ ତାଙ୍କର 'ପ୍ରବନ୍ଧ-ପ୍ରକାଶ'ର ଉପାଦେୟ ପ୍ରବନ୍ଧ ଗୁଡ଼ିକର ସମାଲୋଚନା କରି କହିବାର ଶୁଣିଛି ଯେ ଏ ପ୍ରବନ୍ଧ-ଗୁଡ଼ିକରେ ସାହିତ୍ୟର ଔଜ୍ଜ୍ୱଲ୍ୟ ନାହିଁ । ଏହା ଏକ ବିବାଦୀୟ ବିଷୟ । ତାହାର ବିଚାର ଓ ଆଲୋଚନା ସେହି ସାହିତ୍ୟିକମାନେ କରନ୍ତୁ । କିନ୍ତୁ ସମସ୍ତେ ଜାଣନ୍ତି ଯେ, ଏବେ ମଧ୍ୟ ଓଡ଼ିଆ ସାହିତ୍ୟରେ ଏପରି ଉଚ୍ଚ କୋଟୀର ପ୍ରବନ୍ଧଗୁଡ଼ିଏ ପ୍ରକାଶିତ ହୋଇନାହିଁ । ପାଠ୍ୟ ପୁସ୍ତକ ହିସାବରେ ଏବେ ମଧ୍ୟ 'ପ୍ରବନ୍ଧ ପ୍ରକାଶ'ର ଆଦର ଓ ଆବଶ୍ୟକତା ରହିଛି ।

ଅଧ୍ୟାପକ ପତିଙ୍କ ଜୀବନରେ ମୁଁ ଧର୍ମପ୍ରାଣତା ଲକ୍ଷ୍ୟ କରିଛି, କିନ୍ତୁ ସେ ଧର୍ମାନ୍ଧ ନଥିଲେ କିମ୍ବା ଜାତି, ଧର୍ମ, ପରମ୍ପରାରେ ସେ ଏକାବେଳକେ ପ୍ରାଚୀନପନ୍ଥୀ ନଥିଲେ । ଏସବୁ ବିଷୟରେ ତାଙ୍କଠାରେ ଉଦାରତା ଲକ୍ଷ୍ୟ କରିଛି । ତାଙ୍କର ବନ୍ଧୁବତ୍ସଳତା ଥିଲା ଆଶ୍ଚର୍ଯ୍ୟ । ବାଲ୍ୟଜୀବନର ବା ଛାତ୍ର ଜୀବନର ଜଣେ ସାଥୀକୁ ଦେଖି ପକାଇଲେ ସେ ଆନନ୍ଦରେ ଆତ୍ମହରା ହୋଇ ପଡ଼ୁଥିଲେ ଏବଂ ନିଜେ ଯେ ଜଣେ ପଦସ୍ଥ ଅଧ୍ୟାପକ ଏକଥା ଏକାବେଳକେ ଭୁଲିଯାଉଥିଲେ । ଛାତ୍ରାବସ୍ଥାର ବନ୍ଧୁ ହିସାବରେ ବାଖରା-ବାଦର ସ୍ୱର୍ଗତ ରମେଶ ଚନ୍ଦ୍ର ମିଶ୍ର, ଶ୍ରୀ ଧର୍ମାନନ୍ଦ ଆଚାର୍ଯ୍ୟ ଓ ଅନ୍ୟାନ୍ୟ କେତେକ ତାଙ୍କ ନିକଟକୁ ଆସୁଥିଲେ । ଅକପଟ ହୃଦୟରେ ପିଲାଦିନର ଜୀବନ ମନେ ପକାଇ ଏକାଠି ଖାଇ ପିଇ ଅତି ଆନନ୍ଦରେ କିଛି ସମୟ କଟାଉଥିଲେ ।

ଅଧ୍ୟାପକ ଚାଲିଗଲେ, ଗୋଟିଏ ସରଳ ନିରାଡ଼ମ୍ବର ଜୀବନର ଅବସାନ ଘଟିଲା । ଯେଉଁ କର୍ତ୍ତବ୍ୟ-ନିଷ୍ଠା, ଚରିତ୍ରବତ୍ତା, ସାଧୁତା ଏବଂ ଧର୍ମପ୍ରାଣତାର ଆଲୋକରେ ଉଦ୍‌ଭାସିତ ଜୀବନ-ସୌଧ ସେ ନିର୍ମାଣ କରିଥିଲେ, ତାହା ହୁଏତ ବହୁ ବ୍ୟକ୍ତିଙ୍କର ଜୀବନରେ ଆଲୋକ ଯୋଗାଇ

ପଥପ୍ରଦର୍ଶକ ହେବ, ଏଥିରେ ସନ୍ଦେହ ନାହିଁ । ମନୁଷ୍ୟ ଯେତେ ସଦ୍‌ଗୁଣ-ସମ୍ପନ୍ନ, ଧର୍ମପ୍ରାଣ, ତ୍ୟାଗୀ, ଦେଶସେବାବ୍ରତୀ ହେଉ ନା କାହିଁକି, ମୃତ୍ୟୁପରେ ଜାତି ଏବଂ ଦେଶ ତାକୁ ନିଷ୍ଠୁର ବିସ୍ମୃତି ଗର୍ଭରେ ନିକ୍ଷେପ କରିବ । ଗୋଟିଏ ବାତ୍ସରିକ, ଗୋଟିଏ ଶ୍ରାଦ୍ଧସଭା, ଗୋଟିଏ ଜୟନ୍ତୀ ବା ଗୋଟିଏ ସ୍ମରଣିକା କିଁ ସାରହେବ । ଆଧୁନିକ ସମାଜର, ବିଶେଷତଃ ଯୁବସମାଜର ଅବସ୍ଥା ଓ ଚିନ୍ତାଧାରା ବର୍ତ୍ତମାନ ଯାହା ହେଲଣି ସେଥିରେ ଏପରି ଜଣେ ସରଳ ନିରାଡ଼ମ୍ବର, କର୍ତ୍ତବ୍ୟନିଷ୍ଠ ବ୍ୟକ୍ତିର ବ୍ୟକ୍ତିତ୍ୱ ଯେ ଏକାନ୍ତ ପ୍ରୟୋଜନ, ଏଥିରେ ଦ୍ୱିରୁକ୍ତି ଥାଇ ନ ପାରେ । "ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ", ଯଦି ବସୁବାପାର ଏ ଉକ୍ତି ସତ୍ୟ ନ ହୋଇଥାଏ, ତେବେ ସେହି ଅମର ପୁଣ୍ୟାତ୍ମାଙ୍କର ଆଶୀର୍ବାଦ ଆମକୁ ମିଳୁ ଓ ଆଜିର ଯୁବ-ସମାଜ କର୍ତ୍ତବ୍ୟନିଷ୍ଠାରେ ଉଦ୍‌ବୁଦ୍ଧ ହୁଅନ୍ତୁ ।

ପିତୃତୁଲ୍ୟ ଗୁରୁଦେବଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧ ବାସରରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

---

# କେତୋଟି ଅବିସ୍ମରଣୀୟ ଅନୁଭୂତି

ଶ୍ରୀ ବେଣୁଧର ମିଶ୍ର

ସ୍ୱର୍ଗୀୟ ଦେଶମହାଶୟଙ୍କ ପରିବାର ସହିତ ଆମ ପରିବାରର ଖୁବ୍ ଭଲ ଜଣାଶୁଣା ଥିଲା । ହେଲେ, ମୋ'ର ତାଙ୍କ ସହିତ ପ୍ରତ୍ୟକ୍ଷ ପରିଚୟ ହୁଏ ୧୯୫୪ ମସିହାରେ । ମୁଁ ପ୍ରଥମ କରି କଲେଜରେ ପଢ଼ିବାକୁ କଟକ ଆସିଥାଏ । ତେଣୁ ବାପା ଆସି ମୋତେ ରତ୍ନାକରବାବୁଙ୍କ ସହିତ ପରିଚୟ କରାଇ ଦେଇଗଲେ । ସୁବିଧା ଅସୁବିଧା ହେଲେ ତାଙ୍କ ପାଖରୁ ପରାମର୍ଶ ନେବାକୁ ମଧ୍ୟ କହିଗଲେ । ମୋର ଏବେ ବି ମନେ ପଡ଼ୁଛି ଯେ, ମୁଁ ସବୁବେଳେ ତାଙ୍କ ପାଖରେ ମୋର ସମସ୍ୟାଗୁଡ଼ିକର ଅବତାରଣା କରି ସେଗୁଡ଼ିକର ଖୁବ୍ ସରଳ ସମାଧାନ ଲାଭ କରିଥିଲି । ସେସବୁ ଏବେ ମଧ୍ୟ ମୋର ଜୀବନର ପାଥେୟ ହୋଇ ରହିଛି ଏବଂ ଅନେକ ସମୟରେ ମୁଁ ଭାବେ ଯେ, ଯଦି ମୋତେ ସେପରି ସୁଯୋଗ ମିଳି ନଥାନ୍ତା, ତେବେ ହୁଏତ ମୁଁ ଆଜ ଯାହାବା ହୋଇପାରିଛି, ସେତିକ ମଧ୍ୟ ହୋଇପାରି ନ ଥା'ନ୍ତି ।

ସହରର ଖାଦ୍ୟପେୟ ସହିତ ନିଜକୁ ଖାପଖୁଆଇ ନପାରି ମୁଁ ଏକ ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇଥିଲି । ମୁଁ ଆସିଥିଲି ଏକ ରକ୍ଷଣଶୀଳ ପରିବାରରୁ । ଖାଇବାରେ ଆମର ବହୁତ ବାରଣ ଥିଲା । ଏକେ ତ ଆମେ ନିରାମିଷାଶୀ ; ଦ୍ୱିତୀୟରେ ପିଆଜ ଓ ରସୁଣ ମଧ୍ୟ ଚୁଁହେଁ । ତେଣୁ ଏମିତି ହେଲା ଯେ, ଶେଷକୁ ମୁଁ ପୁଣି ଘରକୁ ଫେରିଯିବି ବୋଲି ଭାବିଲି । ଏପରି ସମୟରେ ରତ୍ନାକରବାବୁ ଦିନେ ମୋତେ ଛାତ୍ରର କର୍ତ୍ତବ୍ୟ ବିଷୟରେ ବୁଝାଇଥିଲେ । ଖାଦ୍ୟପେୟ ପ୍ରତି ଏତେ କଠୋର ଭାବରେ ନୀତିପରାୟଣ ନହୋଇ ବରଂ ବିଦ୍ୟାସଂଗ୍ରହକୁ ମୁଖ୍ୟ ଉଦ୍ଦେଶ୍ୟ ହିସାବରେ ଗ୍ରହଣ କରିବାକୁ ସେ ମୋତେ ବାରମ୍ବାର ପରାମର୍ଶ ଦେଇଥିଲେ । ତାଙ୍କର କଥାଗୁଡ଼ିକ ଏତେ ହୃଦୟଗ୍ରାହୀ ହୋଇଥିଲା ଯେ, ମୁଁ ଅନେକାଂଶରେ ମୋର ସେଇ ପୂର୍ବଧାରଣାଗୁଡ଼ିକର ପରିବର୍ତ୍ତନ କରିଥିଲି ।

ଆଉଥରେ, ମୁଁ ମୋର 'ଫ୍ରି-ସିପ୍' ଦରଖାସ୍ତ ନେଇ ଯାଇଥିଲି ତାଙ୍କଠାରୁ ସୁପାରିଶ ଲେଖାଇ ଆଣିବାପାଇଁ । ସେତିକିବେଳେ ସେ ତାଙ୍କ ସ୍କୁଲଜୀବନର ଗୋଟିଏ ଘଟଣା ମୋ ଆଗରେ କହିଥିଲେ । ରତ୍ନାକରବାବୁ ସ୍କୁଲରେ ପଢ଼ୁଥା'ନ୍ତି । ଫ୍ରି-ସିପ୍ ପାଇଁ ଇଣ୍ଟରଭିଉ ହେଉଥାଏ । ପ୍ରଧାନ ଶିକ୍ଷକ ପଚାରିଲେ, "Ratnakara, are you poor ?" (ରତ୍ନାକର, ତୁମେ କ'ଣ ଗରିବ ? ) । ପ୍ରଧାନ ଶିକ୍ଷକଙ୍କୁ ଲକ୍ଷ୍ୟ କରି ଛାତ୍ର-ରତ୍ନାକର କହିଲେ, "No Sir, I am not poor, I am in want." (ମହାଶୟ, ମୁଁ ଗରିବ ନୁହେଁ । ମୁଁ ଅଭାବଗ୍ରସ୍ତ ) । ରତ୍ନାକରବାବୁ ତା ପରେ ପ୍ରଧାନ ଶିକ୍ଷକଙ୍କୁ ଏ ଦୁଇଟିର ପାର୍ଥକ୍ୟ ପ୍ରାଞ୍ଜଳଭାବରେ ବୁଝାଇ ଦେଲେ । ସେ କହିଲେ "ମହାଶୟ, ଈଶ୍ବର ମୋର ହାତଗୋଡ଼ରେ ଅନନ୍ତ ଶକ୍ତି ଦେଇଅଛନ୍ତି । ମୁଁ ଯଦି ବିଦ୍ୟାଧ୍ୟୟନ ଛାଡ଼ି ଭୂମି ଚାଷ କରିବି, ତେବେ ମୋର କିଛି ଅଭାବ ରହିବ ନାହିଁ । ମୋର ମନୋବଳ ଯଥେଷ୍ଟ ଅଧିକ । କେବଳ ପରିସ୍ଥିତି ଦୃଷ୍ଟିରୁ ମୁଁ ଅର୍ଥାଭାବର ସମ୍ମୁଖୀନ ହୋଇଛି ।" କହିବା ବାହୁଲ୍ୟ ଯେ ରତ୍ନାକରବାବୁ ଫ୍ରି-ସିପ୍ ପାଇଲେ ଏବଂ ତାଙ୍କର ସମସ୍ତ ବିଦ୍ୟାଳୟ-ଜୀବନରେ ସେ ଅବୈତନିକ ଛାତ୍ରବୃତ୍ତି ଉପଭୋଗ କରୁଥିଲେ । ଏଭଳି ତରୁଣ ବୟସରେ ଏତେଦୂର ଆତ୍ମପ୍ରତ୍ୟୟ ବର୍ତ୍ତମାନ କ୍ବଚିତ୍ ଦେଖାଯାଉଛି । ସେଇ ଆତ୍ମପ୍ରତ୍ୟୟ ଥିଲା ବୋଲି ରତ୍ନାକରବାବୁ ନିଜକୁ ଜୀବନରେ ପ୍ରତିଷ୍ଠିତ କରିପାରିଥିଲେ ।

ରତ୍ନାକର ବାବୁଙ୍କର ଜୀବନୀ ଆମ ଅଞ୍ଚଳରେ ଏକ ଗାଥା ରୂପେ ଲୋକମୁଖରେ ପ୍ରଚଳିତ । ପିଲାମାନେ ଅଭାବ, ଅନାଟନ ବିଷୟରେ ଆପତ୍ତି ଅଭିଯୋଗ କଲେ, ଅଭିଭାବକମାନେ ସାଧାରଣତଃ ରତ୍ନାକର ବାବୁଙ୍କର ଉଦାହରଣ ଦେଇଥା'ନ୍ତି । ବିଳାସ ବ୍ୟସନର ପ୍ରଶ୍ନ ତ ନଥିଲା, ଦୈନନ୍ଦିନ ଜୀବନଯାପନପାଇଁ ଯେତିକି ନିହାତି ନହେଲେ ନଚଳେ, ସେତିକି ମଧ୍ୟ ଦୁଷ୍ପ୍ରାପ୍ୟ । ତଥାପି ସେ ନିଜର ଚେଷ୍ଟାରେ ଅଟଳ । କାରଣ ତାଙ୍କର ଉଦ୍ଦେଶ୍ୟ ଥିଲା ମହତ୍, ଆଦର୍ଶ ଥିଲା ବିରାଟ । ଏ ଉଭୟ ଆଜିର ଛାତ୍ର-ସମାଜ ପାଖରେ ଅପରିଚିତ । ଛାତ୍ରମାନେ ବହୁତ ଶକ୍ତି ଅପଚୟ କରୁଛନ୍ତି । ଆର୍ଥିକ, ଶାରୀରିକ ତଥା ମାନସିକ ଶକ୍ତିର ବ୍ୟୟ ହେଉଛି । କିନ୍ତୁ କୌଣସି ବଳିଷ୍ଠ ଉଦ୍ଦେଶ୍ୟ ନାହିଁ । ଯାହା ଫଳରେ କି ସମାଜ ଅବନତି ପଥରେ ଅଗ୍ରସର ହେଉଛି ।

ସାରସ୍ୱତ ବଂଶଧରମାନଙ୍କ ଉପରେ ପ୍ରତିଷ୍ଠିତ ମାତୃନଗ୍ନମହାଶୀ ପରି-ଚାଳିତ ହୋଇ ରତ୍ନାକରବାବୁ ବଡ଼ ନିରଭିମାନ ଥିଲେ । ନିଜ କାର୍ଯ୍ୟର ଡିଣ୍ଡିମ ସେ ନିଜେ ବଜାଇ ଶିଖି ନଥିଲେ । ସିଦ୍ଧେଶ୍ୱରପୁରର ଗୋପାଳସ୍ମୃତି ବିଦ୍ୟାପୀଠ ତାଙ୍କର କୃତି । କହିବାକୁଗଲେ, ନିଜ ହାତରେ ଇଟା ଉଠାଇ ସେ ଗଢ଼ିଛନ୍ତି ସ୍କୁଲଟିକୁ । ଅବଶ୍ୟ ଏ କାର୍ଯ୍ୟରେ ସେ ଜଣେ ସୁଦକ୍ଷ ସହାୟକ ପାଇଥିଲେ—ଶ୍ରୀଯୁକ୍ତ କେଶବଚନ୍ଦ୍ର ନନ୍ଦଙ୍କୁ । ରତ୍ନାକରବାବୁ ସଭାପତି ଓ ନନ୍ଦ ମହାଶୟ ସମ୍ପାଦକ ଥାଇ ବିଦ୍ୟାଳୟର ସମସ୍ତ କାର୍ଯ୍ୟ ତୁଲାଉଥିଲେ । ସେଥିପାଇଁ ବହୁ ଭଦ୍ରବ୍ୟକ୍ତି ବିଦ୍ୟାଳୟଟିକୁ ରତ୍ନାକର ବିଦ୍ୟାପୀଠରୂପେ ନାମିତ କରିବାପାଇଁ ପ୍ରସ୍ତାବ ଦେଇଥିଲେ । କିନ୍ତୁ ରତ୍ନାକରବାବୁ ଅତି ସହଜଭାବରେ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । 'ଭାଷାକୋଷ'ର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନାମରେ ବିଦ୍ୟା-ଳୟଟିକୁ ନାମିତ କରି ସେ ତାଙ୍କର ମହାନତା ପ୍ରଦର୍ଶନ କରିଛନ୍ତି । ଏବେ ସମାଜରେ ପ୍ରତିଷ୍ଠାଲାଭପାଇଁ ଯେଉଁ ବ୍ୟାକୁଳତା ଏବଂ ଅନ୍ତର୍ନିହିତ ଶକ୍ତି ନଥାଇ ସମାଜ ଆଗରେ ନିଜର ବଡ଼ପଣିଆ ଦେଖାଇ ହେବାରେ ଯେଉଁ ବ୍ୟଗ୍ରତା, ରତ୍ନାକର ବାବୁ ସେ ସବୁର ବହୁଦୂରରେ ଥିଲେ ।

ଆଉ ଗୋଟିଏ କଥା ତାଙ୍କ ଜୀବନରୁ ଶିଖିବାର ଅଛି । ତାଙ୍କର ସଙ୍ଗୀ ବହୁତ କମ । ତାଙ୍କ ମତରେ ଭାବନାର ସାମ୍ୟ ନ ରହିଲେ ବନ୍ଧୁତା ସ୍ଥାୟୀ ହୋଇପାରେନାହିଁ । ତେଣୁ ସେ ସାଧାରଣତଃ ଖୁବ୍ କମ୍ ଲୋକଙ୍କ ସହିତ ଘନିଷ୍ଠତା ରଖୁଥିଲେ । ଏହାର ଅର୍ଥ ନୁହେଁ ଯେ ସେ ଅନ୍ୟମାନଙ୍କୁ ବୈରି ଚକ୍ଷୁରେ ଦେଖୁଥିଲେ । ସେ ସର୍ବଦା ଅଧ୍ୟୟନରତ ରହୁଥିଲେ । ସେ ଅନେକଥର କହିବାର ମନେ ପଡ଼ୁଛି ଯେ ପୁସ୍ତକବନ୍ଧୁ ହିଁ ଶ୍ରେଷ୍ଠ ବନ୍ଧୁ ।

ରତ୍ନାକର ବାବୁଙ୍କର ଜୀବନ ଏକ ଆଦର୍ଶ ଜୀବନ । ଆଦର୍ଶ ଗୃହସ୍ଥ, ଆଦର୍ଶ ଶିକ୍ଷକ ତଥା ଆଦର୍ଶ ମାନବ ହିସାବରେ ତାଙ୍କର ସ୍ଥାନ ଖୁବ୍ ଉଚ୍ଚରେ । ତାଙ୍କ ଜୀବନର ଆଦର୍ଶ ତାଙ୍କର ପରିବାର ଉପରେ ମଧ୍ୟ ଖୁବ୍ ଗଭୀର ଭାବରେ ରେଖାପାତ କରିଥିଲା ।

ଆମ ଦେଶରେ ପୂଜ୍ୟପୂଜାର ଅଭାବ ସର୍ବତ୍ର ପରିଲକ୍ଷିତ । ଯେଉଁ-ମାନେ ପୂଜାର ପାତ୍ର ନୁହନ୍ତି, ସେମାନେ ଆଜି ପୂଜ୍ୟ ଆସନରେ ପ୍ରତିଷ୍ଠିତ । ସାମାଜିକ ମୂଲ୍ୟବୋଧରେ ଆଜି ଯେପରି ଏକ ଝଞ୍ଜାର ସୃଷ୍ଟି ହୋଇଛି ।

ତେବେ ଆମେ ଯଦି ଏହି ବାୟୁ ପ୍ରବାହରେ ନିଜକୁ ଭସାଇଦେଉ, ତେବେ ବାତ୍ୟାବିଧ୍ୱସ୍ତ ଭଳି ଆମର କୌଣସି ସତ୍ତା ରହିବ ନାହିଁ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ଜାମାତା ହୋଇଥିଲେ ମଧ୍ୟ ରତ୍ନାକରବାବୁ ନିଜ ଶ୍ୱଶୁରଙ୍କ ପ୍ରତିଷ୍ଠିତ ଦୈନିକ ସମ୍ବାଦପତ୍ର 'ସମାଜ' ପଇସା ଦେଇ କିଣୁ-ଥିଲେ । ଥରେ ଏହା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପ୍ରଶ୍ନ କରିଥିଲି । କିନ୍ତୁ ସେ ତାଙ୍କର ସ୍ୱଭାବସୁଲଭ ସରଳ ଭଙ୍ଗୀରେ କହିଲେ—"ମୁଁ 'ସମାଜ' ପାଇଁ ପଇସା ଦିଏ" । ଏହା ଅବଶ୍ୟ ମୋ ପ୍ରଶ୍ନର ଉତ୍ତର ମୋତେ ଦେଇ ନଥିଲା ।

———

# ସ୍ମୃତିପଟରୁ ଟିକିଏ

ଶ୍ରୀ ରାଧାନାଥ ରଥ
ସମ୍ପାଦକ, ସମାଜ

ଅଧ୍ୟାପକ, ଦାର୍ଶନିକ, ଶିକ୍ଷାବିତ୍ ଓ ସାହିତ୍ୟିକ ରୂପେ ପରିଚିତ ସ୍ୱର୍ଗୀୟ ରତ୍ନାକର ପତିଙ୍କ କଥା ବିଚାରିଲେ ମନେ ହୁଏ ଯେ ଋଷିମହର୍ଷିମାନଙ୍କ ସାଧନା ପୀଠ ଭାରତର ଜଣେ ଆଦର୍ଶ ବ୍ୟକ୍ତି ଏ ଦେଶରୁ ଗତ ୧୯୬୯ ଫେବୃଆରୀ ୨୨ତାରିଖରେ ଚିରଦିନପାଇଁ ଚାଲିଗଲେ । ସେ ଅବଶ୍ୟ ଶିକ୍ଷକ ଓ ଅଧ୍ୟାପକ ସ୍ୱଭାବରେ ପରିଚିତ ଥିଲେ । ମାତ୍ର ସେ ପ୍ରକୃତରେ ଥିଲେ ଅତି ଉଚ୍ଚ କୋଟୀର ଜଣେ ନୀତିବାଦୀ ଆଦର୍ଶବାଦୀ ଚରିତ୍ରବାନ୍ ଧର୍ମ-ପରାୟଣ ଜ୍ଞାନପିପାସୁ ସାଧକ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ଶାସ୍ତ୍ରାଧ୍ୟୟନ କରୁଥିଲେ ଓ ଜ୍ଞାନ ଆହରଣରେ ବ୍ରତୀ ଥାଇ ତାଙ୍କ ଜ୍ଞାନ ଓ ଶିକ୍ଷାକୁ କେବଳ କଥାରେ ବା ଲେଖାରେ କିମ୍ବିତ୍ ପ୍ରକାଶ କରି ନୁହେଁ, ନିଜ ଜୀବନ ଓ ଆଚରଣରେ ସେ ସବୁର ପ୍ରୟୋଗ ଓ ପ୍ରକାଶର ଅନବରତ ପ୍ରୟାସ କରୁଥିଲେ ।

ତାଙ୍କ ସହିତ ମୋର ପ୍ରଥମ ପରିଚୟ ୧୯୧୯ରେ । ସେହି ବର୍ଷ ଅକ୍ଟୋବର ମାସରେ ମୁଁ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସତ୍ୟବାଦୀରେ ପହଞ୍ଚି 'ସମାଜ' ଓ ସତ୍ୟବାଦୀ ପ୍ରେସର କାର୍ଯ୍ୟଭାର ଗ୍ରହଣ କଲି ଓ ପଣ୍ଡିତ ଗୋପବନ୍ଧୁଙ୍କର ଜଣେ ସହକାରୀ କର୍ମୀରୂପେ କାର୍ଯ୍ୟ କରୁଥିଲି । ଠିକ୍ ତିନିବର୍ଷ ପୂର୍ବରୁ ୧୯୧୬ରେ ପଣ୍ଡିତ ଗୋପବନ୍ଧୁଙ୍କ ବଡ଼ଝିଅ ଡାକନାମ 'ରଙ୍ଗ'ର ବିବାହ ରତ୍ନାକରବାବୁଙ୍କ ସହିତ ଅନୁଷ୍ଠିତ ହୋଇସାଇଥାଏ । ୧୯୧୬ରେ ସେ ରେଭେନ୍‌ସା କଲେଜରେ ଦର୍ଶନ ଶାସ୍ତ୍ରରେ ଅଧ୍ୟାପକ ରୂପେ ନିଯୁକ୍ତ ହୋଇଥାନ୍ତି । ମୁଁ ସତ୍ୟବାଦୀଠାରେ ଗୋପବନ୍ଧୁଙ୍କ ସହିତ ସତ୍ୟବାଦୀ ବିଦ୍ୟାଳୟ ବୋର୍ଡିଂଭିତରେ ଥିବା ଗୋଟିଏ ସ୍ୱତନ୍ତ୍ର ଚାଳଘରେ ରହୁଥାଏ । ରତ୍ନାକରବାବୁ ମଝିରେ ମଝିରେ କଟକରୁ ସତ୍ୟବାଦୀ ଆସିଲେ ସେ

ବଦ୍ୟାଳୟର ଶିକ୍ଷକ ଓ ତାଙ୍କର ପରମବନ୍ଧୁ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ରଙ୍କ ସହିତ ଗ୍ରନ୍ଥାବାସ ଭିତରେ ରହୁଥାନ୍ତି । ବାସୁବାବୁ ଓ ରତ୍ନାକର ବାବୁଙ୍କ ଭିତରେ ଅଭେଦ୍ୟ ପ୍ରୀତି । ରତ୍ନାକରବାବୁ ଘର କଡ଼ାଲୋକ—ନିକଟରେ ତରଳଜଳପରି କଥା କହନ୍ତି । ପ୍ରତି କଥାକୁ ସେ ନୈତିକ ଦୃଷ୍ଟିକୋଣରୁ ବିଚାର କରନ୍ତି ଏବଂ ନିଜ ମତକୁ ଖୁବ୍ ନମ୍ର ଅଥଚ ଅତି ଦୃଢ଼ଭାବରେ ପ୍ରକାଶ କରନ୍ତି । ସେ ମୋହମତ ବା ତୋଷାମଦରେ ପ୍ରଭାବିତ ହେବା ଲୋକ ନ ଥିଲେ । ତାଙ୍କ ବିଚାର ବଡ଼ ଉଚ୍ଚ, କଥା ବଗବର ଖାଣ୍ଟି— ଅଥଚ ବ୍ୟବହାର ଅତି ନମ୍ର ଓ ସ୍ନେହପୂର୍ଣ୍ଣ ଥିବା ସଙ୍ଗେ ସଙ୍ଗେ ମତ ପ୍ରକାଶ ଅତି ଦୃଢ଼ ଏବଂ ଅଟଳବିଶ୍ୱାସ ଓ ନିର୍ଭୀକ ଶକ୍ତିର ପରିଚାୟକ । ସେ ସାମାନ୍ୟ ହସି ହସି କଥା କହିଲାବେଳେ ତାଙ୍କ ହୃଦୟର ସ୍ନେହ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଅତି ଟେକଠୋକ ଅଭିମତ ବେଳେବେଳେ କଡ଼ାକଥାରେ ପ୍ରକାଶ ପାଏ, ଯାହାକୁ ଶୁଣିଲେ ଲୋକ ହୁଏତ ବିଚାରିବ ଯେ ଏ କ୍ରୋଧ ଓ ବିରକ୍ତି-ବ୍ୟଞ୍ଜକ ଭାଷା ବ୍ୟବହାର କରୁଛନ୍ତି । ତାଙ୍କର ପ୍ରକୃତି ହେଲା ନୀତି ପଥରୁ ତିଳେ ହେଲେ ଟଳି ନ ଯିବା । ମୁଁ ତାଙ୍କୁ ଅନେକ ସମୟରେ ଗୋପବନ୍ଧୁଙ୍କ ପାଖରେ ଆସି ଦେଖା କଲାବେଳେ ଦେଖିଛି—ସେ ବେଶୀ କଥା କହନ୍ତି ନାହିଁ । ଶ୍ୱଶୁର ଜ୍ୱାଇଁଙ୍କ ଭିତରେ ସାମାନ୍ୟ ଦେହପା କଥା ଛଡ଼ା ଅନ୍ୟ କୌଣସି କଥାବାର୍ତ୍ତା ପ୍ରାୟ ହୁଏ ନାହିଁ । ମାରବରେ ଶ୍ୱଶୁରଙ୍କୁ ନୁହେଁ, ପୁଣ୍ୟାତ୍ମା ଗୋପବନ୍ଧୁଙ୍କୁ ଶ୍ରଦ୍ଧାଭକ୍ତି ଅର୍ପଣ କରି କିଛି ସମୟ ବସି ନିଜ ବନ୍ଧୁ ବାସୁଦେବବାବୁଙ୍କ କୋଠରୀକୁ ଚାଲିଯାନ୍ତି । ସେହିଠାରେ ସେ ପ୍ରାଣ ଫିଟାଇ କଥାବାର୍ତ୍ତା କରନ୍ତି । କୌଣସି ସ୍ୱାର୍ଥ ବା ସୁଖଦୁଃଖ କଥା ନୁହେଁ— ବିଦ୍ୟାଳୟ, ଛାତ୍ର, ଶିକ୍ଷା, ଆଦର୍ଶ ଚରିତ୍ରବଳ, ମନୁଷ୍ୟ ଜୀବନର ଆଦର୍ଶ— ଏହି ସବୁ ବିଷୟରେ ଆଲୋଚନା ହୁଏ । ସେ ଦିନେ ଓଳିଏ ରହି ପୁଣି କଟକ ଫେରି ଯାଆନ୍ତି । କଟକରେ ସେ ସେତେବେଳେ ରେଲଷ୍ଟେସନ ପାଖ ମାଲଗୋଦାମ ନିକଟବର୍ତ୍ତୀ କେନାଲ କୂଳରେ ଛତାବଜାର ପୋଲ-ଠାରୁ ମାଲଗୋଦାମ ଆଡ଼କୁ ଗଡ଼ିଯିବା ସଡ଼କପାଖ କଲେଜ ଶିକ୍ଷକଙ୍କ ପାଇଁ ତିଆରି ଗୋଟିଏ 'କ୍ୱାଟର' ବା ଘରେ ରହୁଥାନ୍ତି । ମୁଁ ସତ୍ୟବାଦୀରୁ ଅନେକ ସମୟରେ କଟକକୁ ଛାପାଖାନା ପାଇଁ କାମ ନେବାକୁ ଆସେ । ପଣ୍ଡିତ ଆତ୍ମଳ ମିଶ୍ରଙ୍କ ବହିଦୋକାନ ଓ ଅନ୍ୟ କୌଣସି ବହି ଦୋକାନରୁ ବହି ଆଦି ଛପାଇବାପାଇଁ ନିଏ । ଛାପାଖାନା ଓ 'ସମାଜ' ପାଇଁ କିଛି

ଜିନିଷ ଜାଣିବାକୁ ହେଲେ ମୁଁ ଆସି ରତ୍ନାକରବାବୁଙ୍କ ଘରେ ରହି ତାଙ୍କ ସାହାଯ୍ୟରେ, ବିଶେଷତଃ ତେଲେଙ୍ଗାବଜାର ରାମକୃଷ୍ଣ କଟେଜରେ ରହୁଥିବା ପଣ୍ଡିତ ଆକୁଳ ମିଶ୍ରଙ୍କ ସାହାଯ୍ୟ ଓ ପରାମର୍ଶରେ ନିଏ । ରତ୍ନାକର ବାବୁ ଓ ରଙ୍ଗ ଉଭୟଙ୍କୁ ମୁଁ ଦେଖେ ମାତ୍ର ଏ ଦୁହେଁ କ୍ୱଚିତ ପରସ୍ପର କଥାବାର୍ତ୍ତା ହେବା ବା ବସାଉଠା କରିବା ମୁଁ ଦେଖେଁ, । ସ୍ୱାମୀ ରତ୍ନାକରବାବୁଙ୍କୁ ପତ୍ନୀ ରଙ୍ଗ ଅସାଧାରଣ ଭକ୍ତି କରନ୍ତି, ମାତ୍ର ଡରନ୍ତି । ଭରସି କରି କଥା କହନ୍ତି ନାହିଁ । ଘରର ସବୁ କାମ ରଙ୍ଗ ନୀରବରେ କରୁଥାନ୍ତି । ପ୍ରତିଦିନ ତାଙ୍କ ଘରେ କୁଣିଆଁ । ତାଙ୍କ ଗାଁ ବିରବାଟୀ ଆଡ଼ୁ ବହୁତ ଲୋକ ଆସନ୍ତି । ରତ୍ନାକରବାବୁଙ୍କ ଘର ସେମାନଙ୍କର ନିଜ ଘର ପରି, ଅବାରିତ ଦ୍ୱାର । ବାପୁବାବୁ ଓ ମୁଁ ଯେତେବେଳେ ଆସୁ ତାଙ୍କରି ଘରେ ରହୁ । ଘରେ କୁଣିଆଁ ଥିଲେ, କାଳେ ତାଙ୍କର ଚର୍ଚ୍ଚାରେ ତ୍ରୁଟି ହୋଇଯିବ, ଏଥିପାଇଁ ରତ୍ନାକରବାବୁ ଖାଲି ଉଦ୍‌ବିଗ୍ନ । କୁଣିଆଙ୍କର ଯାହା ଲୋଡ଼ା ଠିକ୍ ସମୟରେ ତାଙ୍କୁ ଯୋଗାଇବାକୁ ହେବ—ତିଳେ ବିଳମ୍ବ ହେବ ନାହିଁ କି ଅଭାବ ହେବ ନାହିଁ । ଯଦି ଟିକିଏ ବ୍ୟତିକ୍ରମ ହୋଇଗଲା ତେବେ ସେ ଅସ୍ଥିର । ରଙ୍ଗ ଉପରେ କୋଡ଼ମାଡ଼—କାହିଁକି ତମେ ବୁଝିଲ ନାହିଁ । ଭଗବାନଙ୍କ କୃପାରୁ ରଙ୍ଗଙ୍କର ଅସାଧାରଣ ଧୈର୍ଯ୍ୟ । ଏପରି ପତିବ୍ରତା ପତ୍ନୀ ଓ ପରିଶ୍ରମୀ ନିଃସ୍ୱାର୍ଥପରା ଗୃହିଣୀ କ୍ୱଚିତ ଦେଖାଯାଆନ୍ତି । ଦେଖିବାକୁ ରଙ୍ଗ ଅତି ଛୋଟ—ମାତ୍ର ରନ୍ଧାବଢ଼ାଠାରୁ ବାସନମଜା ପର୍ଯ୍ୟନ୍ତ ସବୁ ସେ କରନ୍ତି । ତିଳେ ଅଳସ ନାହିଁ କି ବିରକ୍ତି ବା ଅନିଚ୍ଛା ନାହିଁ । ନିତି ଘରେ କୁଣିଆ ଚର୍ଚ୍ଚାରେ ସେ ସନ୍ତୋଳ ହୋଇଯାନ୍ତି—ମାତ୍ର ସର୍ବଦା ସେହି ସହାସ୍ୟ ବଦନ, ସେହି କଠୋର ପରିଶ୍ରମ, ସେହି ଭଦ୍ର ଓ ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାର । ଘରର ସମସ୍ତେ ଖାଇ ସାରିଲା ପରେ ରଙ୍ଗ ଯାହା ତାହା ମୁଠାଏ ଖାଇ ପୁଣି କାମରେ ଲାଗିଯାନ୍ତି । ଦିନରେ ବିଶ୍ରାମ ନ ଥାଏ । କେଉଁ ଜିନିଷ କେଉଁଠାରେ ରହିବ, ବିଛଣାପତ୍ର କପରି ସଜଡ଼ା ହୋଇ ରହିବ, ରତ୍ନାକରବାବୁ ଯେତେବେଳେ ଯାହା ଲୋଡ଼ିବେ ତାହା ତାଙ୍କ ପାଖରେ ଥିବାରେ ଯେପରି ବ୍ୟତିକ୍ରମ ନ ହେବ—ସେଥିପାଇଁ ସେ ସଦା ବ୍ୟସ୍ତ । ମାତ୍ର ଏ ସବୁ ସତ୍ତ୍ୱେ ରତ୍ନାକରବାବୁ କୌଣସି କାମପାଇଁ କାହା ଉପରେ ନିର୍ଭର ନ କରି ନିଜେ ସବୁ କାମ କରିବାକୁ ସର୍ବଦା ବ୍ୟାକୁଳ । କୁଣିଆଁଙ୍କର ଗରମ ପାଣି ଲୋଡ଼ା—ରତ୍ନାକରବାବୁ ବୋହିନେଇ ଘରକୁ ଦୌଡ଼ଯାଇ

'ରଙ୍ଗ, ଶୀଘ୍ର ପାଣି ଦିଅ' ବୋଲି ପାଟି କରି ନିଜେ ଚୌଷଦିରୁ ରଙ୍ଗ ହାତରୁ ପାଣି ଡେକ୍‌ଚି ନେଇ ଆସି ଗାଧୁଆଘରେ ରଖିଦେବେ । ଲୁଗା ଗାମୁଛା ନେଇ ଥୋଇଦେବେ । ସେତେବେଳେ ଏମ୍. ଏ. ପାଶ କରିଥିବା ଅଧ୍ୟାପକ ଜଣେ କୁଣିଆଁଙ୍କପାଇଁ ଏପରି ନୌକର କାମ କରିବା କେହି କେବେ କଳ୍ପନା କରିବ ? କିନ୍ତୁ ରତ୍ନାକରବାବୁ ଏକାଧାରରେ ଶିକ୍ଷକ ଓ ସେବକ । ତାଙ୍କର ଅହଂକାର ନାହିଁ, ଗର୍ବ ନାହିଁ, କୃପଣତା ନାହିଁ, ଲୋଭ ନାହିଁ, ନିତି କୁଣିଆଁ ଅଛନ୍ତି ବୋଲି ଡିଳେ ହେଲେ ବିରକ୍ତି ବା ଚିନ୍ତା ନାହିଁ । କୁଣିଆଁଙ୍କ ଚର୍ଚ୍ଚାରେ ତାଙ୍କର କି ଆନନ୍ଦ !

ମୋର ମନେ ଅଛି, ତାଙ୍କ ପତ୍ନୀ ରଙ୍ଗଙ୍କର ଦେହ ଖରାପ ହେଲା । ୧୯୨୨ ରୁ ୧୯୨୪ ଯାଏ ଗୋପବନ୍ଧୁ ହଜାରିବାଗ ଜେଲରେ ରହିଲେ । ତାପରେ ସେ ଖଲାସ ହୋଇ ଆସିଲା ପରେ କଟକ ମ୍ୟୁନିସିପାଲିଟି ହତା ପଡ଼ିଆରେ ବିରାଟ ସମ୍ମିଳନୀ ହେଲା । କଲିକତାରୁ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସେ ସମ୍ମିଳନୀକୁ ଆସିଥାନ୍ତି । ସେ ଦିନ ସେ ସଭାରେ ପନ୍ଦର କୋଡ଼ିଏ ହଜାର ଲୋକ ଜମା ହୋଇଥାନ୍ତି । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ଓ ପଣ୍ଡିତ ଗୋପବନ୍ଧୁଙ୍କୁ ବିରାଟ ପଟୁଆରରେ ସ୍ୱରାଜ୍ୟାଶ୍ରମରୁ ସେଠାକୁ ଅଣାଗଲା । ସେହି ସମ୍ମିଳନୀରେ ଭଦ୍ରଖର ତ୍ୟାଗୀ କର୍ମୀ ଓ କବି ବାଞ୍ଛାନିଧି ମହାନ୍ତି "ଦୁଃଖିନୀ କନକା" କବିତା ଯେତେବେଳେ ଅତି କରୁଣ କଣ୍ଠରେ ବୋଲିଲେ, ସାରା ଜନତାଙ୍କ ଆଖିରୁ ଲୁହ ବୋହିଗଲା । କିଏ ନ କାନ୍ଦିଲା, ବୋଧହୁଏ ଏପରି କେହି ନ ଥିଲେ । ମୋର ମନେ ଅଛି, ମୁଁ ସେତେ-ବେଳେ ରତ୍ନାକରବାବୁଙ୍କ ପାଖରେ ଠିଆ ହୋଇଥାଏ । ଦେଖିଲି, ରତ୍ନାକରବାବୁଙ୍କ ଆଖି ଏକାବେଳେ ଛଳ ଛଳ ହୋଇଗଲା । ସେ ତ ସରକାରୀ ଚାକିରିଆ—କନକାର ଏ ଦୁଃଖକାହାଣୀ ଶୁଣି ସେ ଏପରି ବିଚଳିତ ଓ ବ୍ୟଥିତ ହେଲେ ଯେ ଆଉ ସେଠାରେ ଠିଆ ହୋଇ ପାରିଲେ ନାହିଁ । କାହାକୁ କିଛି ନ କହି ନୀରବରେ ଧୀରେ ଧୀରେ ସେଠାରୁ ଚାଲିଗଲେ । ସେହି ଦିନ ସମ୍ମିଳନୀରେ ଗୋପବନ୍ଧୁ ସୁକବି ଓ ସୁଗାୟକ ବାଞ୍ଛାନିଧିଙ୍କୁ କୁଣ୍ଢାଇ ପକାଇ କହିଥିଲେ—ତୁମେ କେବଳ ମନୁଷ୍ୟଙ୍କୁ ନୁହେଁ, ପ୍ରାଣୀ ଓ ଗଛପତ୍ରକୁ କନ୍ଦାଇ ଦେଲ । ସେହି ସମ୍ମିଳନୀରେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ଗୋପବନ୍ଧୁଙ୍କୁ "ଉତ୍କଳମଣି" ବୋଲି ସମ୍ବୋଧନ କଲେ ଓ ସେହିଦିନଠାରୁ ଗୋପବନ୍ଧୁଙ୍କୁ ଲୋକେ 'ଉତ୍କଳମଣି' ବୋଲି

କହନ୍ତି । ସେ ଦିନ ସମ୍ମିଳନୀ ସରିଯିବା ପରେ ରାତିରେ ମୁଁ ଯେତେବେଳେ ରତ୍ନାକରବାବୁଙ୍କ ବସାରେ ଯାଇ ପହଂଚିଲି, ସେତେବେଳେ ଦେଖିଲି, ରତ୍ନାକରବାବୁଙ୍କ ପାଖେ ଇଏ ଠିଆ ହୋଇଛନ୍ତି । ଉଭୟେ କଣ କଥାବାର୍ତ୍ତା ହେଉଥିଲେ, କେଜାଣି । ମୁଁ ପହଂଚିଯିବାରେ ଇଏ ବଡ଼ ଗମ୍ଭୀର ଭାବରେ ସେଠାରୁ ଧୀରେ ଧୀରେ ଚାଲିଗଲେ । ରତ୍ନାକରବାବୁ ମୋତେ ଭିତର ବାରଣ୍ଡାରେ ଦେଖି ନୀରବରେ ମୋ ପାଖକୁ ଆସି ଦାଣ୍ଡ ଘରେ ମୋ ସଙ୍ଗେ ବସି ପଡ଼ିଲେ । କେଜାଣି କାହିଁକି କିଛି କଥା କହିଲେ ନାହିଁ କି ମୋତେ କିଛି ହେଲେ ପଚାରିଲେ ନାହିଁ । ମୁଁ ମଧ୍ୟ ନୀରବରେ ତାଙ୍କ ଆଡ଼କୁ ଚାହିଁ ରହିଲି । ବିଚାରିଲି, କଣ ହେଲା—ସ୍ୱାମୀ ସ୍ତ୍ରୀ କଥା ହେଉଥିଲେ—ମୋତେ ଦେଖି ଇଏ ମୁହଁ ଭାର କରି ଚାଲିଗଲେ । ରତ୍ନାକରବାବୁ କଥା କହୁନାହାନ୍ତି । ଘଟଣା କଣ ? କିଛି ସମୟ ପରେ ମୋତେ କହିଲେ, "ଆପଣ ଗୋଡ଼ ହାତ ଧୋଇ ପକାନ୍ତୁ, ଡେରି ହେବଣି, ଖାଇବେ ।" ମୁଁ ଉଠି ଗାଧୁଆ ଘରକୁ ଯାଇ ଗୋଡ଼ ହାତ ଧୋଇ ଆସି ଲୁଗା ପାଲଟିଲି । ରତ୍ନାକରବାବୁ ସେହି ଦାଣ୍ଡ ଘରେ ଚୌକିଟିରେ ବସିଥାନ୍ତି । ଏଣେ ଭିତର ବାରଣ୍ଡାରେ ଆସନ ପକାଇ ଇଏ ଦୁଇଜଣଙ୍କ ପାଇଁ ଭାତ ବାଢ଼ିଲେ । ଆମେ ଚାହିଁ ଥାଉଁ । ରତ୍ନାକରବାବୁ ମୋତେ ଡାକି ନେଇ ଆସନରେ ବସାଇଲେ, କିନ୍ତୁ ନିଜେ ଆଉ ବସିଲେ ନାହିଁ । କହିଲେ, ମୁଁ ଏଇକ୍ଷଣି ଖାଇବି ନାହିଁ । ମୁଁ ଜିଗର କଲି । ପୁଣି କହିଲେ, ଆପଣ ଖାଇ ପକାନ୍ତୁ, ମୁଁ ଏଇକ୍ଷଣି ଖାଇବି ନାହିଁ । ତାଙ୍କ ଜିଗରରେ ମୁଁ ଖାଇଲି । ସେ ମୋ ପାଖରେ ବସିଥାନ୍ତି । ଖାଇ ସାରି ହାତ ଧୋଇ ଆସିଲି, ପଚାରିଲି—ଏତେ ରାତି ହେଲାଣି, ଆପଣ କେତେବେଳେ ଖାଇବେ ? ସେ ହସି ଦେଲେ । ମୋ ପାଇଁ ଥିବା ଶେଯ ଉପରେ ମଶାରିଟି ଟାଣି ଦେବାକୁ ସେ ଆଗଭର ହେଲା ବେଳକୁ ମୁଁ ତାଙ୍କ ହାତରୁ ଛଡ଼ାଇ ନେଇ ବାନ୍ଧିଲି । ସେ ଗୋଟାଏ ପଟ ବାନ୍ଧିଲେ—ମୁଁ ଆର ପଟ ବାନ୍ଧିଲି । ମୋତେ କହିଲେ —ଶୋଇ ପଡ଼ନ୍ତୁ । ବହୁତ ରାତି ହେଲାଣି । ମୁଁ ପୁଣି କହିଲି—ଆପଣ ଖାଇବେ ନାହିଁ ? ସେ ପୁଣି ହସି ଦେଇ ବାହାରିଗଲେ । ମୁଁ ଶୋଇ ପଡ଼ିଲି ।

ପରଦିନ ସକାଳୁ ଉଠିବାବେଳକୁ ରତ୍ନାକରବାବୁ ଉଠି ତାଙ୍କ ନିତ୍ୟକର୍ମ ସାରିଲେଣି । ତାଙ୍କୁ ଦେଖିଲି, ସେହିପରି ନୀରବ ରହି କଣ ଭାବୁଥାନ୍ତି । ମୁଁ ଇଙ୍କୁ ଏକୁଟିଆ ଦେଖି ପଚାରିଲି—ରତ୍ନାକରବାବୁ

କାହିଁକି ଏପରି ନୀରବ ? ରଙ୍ଗ କିଛି କହିଲେ ନାହିଁ—ପୁଣି ପଚାରିଲି, କଣ ହୋଇଛି କି ? ରଙ୍ଗ ବଡ଼ ଅନିଚ୍ଛାସତ୍ତ୍ୱେ କହିଲେ—କାଲି ସମ୍ମି-ଳନୀରୁ ଫେରିଲା ପରେ ସେ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ । ମୋତେ କହୁଥିଲେ, ଆଉ ସରକାରୀ ଚାକିରୀ କରିବେ ନାହିଁ । ବୋଧହୁଏ ସେଇ କଥା ବିଚାରୁଛନ୍ତି । ଏତିକି କହି ରଙ୍ଗ ଚାଲିଗଲେ । ରତ୍ନାକରବାବୁ କିଛି ସମୟ କଣ ପଢ଼ା ଶୁଣା କରି ହଠାତ୍ କଲେଜକୁ ଚାଲିଗଲେ । ମୁଁ କିଛି ସମୟ ପରେ ଆଶ୍ରମକୁ ଗଲି ।

ପୁଣି ରାତିକୁ ଫେରିଲି । ଶୁଣିଲି ସେ ଦିନ ତମାମ ସେ ଖାଇ ନାହାନ୍ତି । ସେଇଭଳି ଚିନ୍ତାକୁଳ । ମାତ୍ର ରାତିରେ ମୁଁ ପୁଣି ଖାଇବାକୁ ଯିବାବେଳେ ସେ ନ ଖାଇଲେ ମୁଁ ଖାଇବି ନାହିଁ ବୋଲି ଜିଗର ଧରିବାରୁ ସେ ମୋ ସଙ୍ଗେ ଖାଇ ବସିଲେ । ମାତ୍ର ତାଙ୍କ ମନ ଘୋର ଆନ୍ଦୋଳନ ଭିତରେ ଥିବା ବେଶ୍ ଜଣା ପଡ଼ୁଥାଏ । ସେ ମନେ ମନେ ସ୍ଥିର କରୁଥିଲେ, ଚାକିରି ଛାଡ଼ିବେ । ଠିକ୍ ତା ପରଦିନ ସକାଳେ ତାଙ୍କ ଗାଁରୁ ଲୋକ ଆସି ପହଞ୍ଚିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତାବେଳେ କଣ ହେଲା କେଜାଣି—ଅତି ବ୍ୟସ୍ତ ହୋଇ ପଡ଼ିଲେ । ଶୁଣିଲି, ତାଙ୍କୁ ସେ ଚାକିରି ଛାଡ଼ିବା କଥା କହିବାରେ ସେ କହିଲେ,—ଆମ ଗାଁ ଲୋକଙ୍କ ଭେଳା ବୁଡ଼ିବ—ଗାଁ ସ୍କୁଲ୍ ଭାଙ୍ଗିବ—ଆପଣ ଏ କଥା କଲେ ଆମର ସର୍ବନାଶ ହେବ !

ସେ ଦିନ ସେତିକିରେ କଥା ଅଟକି ରହିଲା । ମୁଁ ସେଇ ଦିନ ସତ୍ୟବାଦୀ ଫେରି ଆସିଲି । ଦାସେ ଆପଣେ ସତ୍ୟବାଦୀ ଆସିଲା ପରେ ଏ ଘଟଣା ତାଙ୍କୁ କହିଲି । ଦାସେ ଆପଣେ ଶୁଣିଲେ—ମୁଁ ଟିକିଏ ରଙ୍ଗଙ୍କୁ ଦେଖିବାକୁ ଯାଇ ପାରିଲି ନାହିଁ ବୋଲି କହି ନୀରବ ହେଲେ । ପରେ ଶୁଣିଲା, ରତ୍ନାକରବାବୁଙ୍କୁ ଗାଁ ଲୋକେ ଏପରି ଅନୁନୟ ବିନୟ ହୋଇ ଚାପ ଦେଲେ ଯେ କିଛି ଦିନ ପାଇଁ ସେ ଇସ୍ତଫା କଥା ଘୁଞ୍ଚାଇଦେଲେ ।

ରତ୍ନାକରବାବୁ ଗୁପ୍ତରେ ବହୁ ଛାତ୍ରଙ୍କୁ ପ୍ରତିମାସରେ ଆର୍ଥିକ ସାହାଯ୍ୟ ଦେଉଥାନ୍ତି । ଚାକିରି ଛାଡ଼ିଲେ ଏ ଗରିବ ଛାତ୍ରମାନେ କଣ କରିବେ ? ଛାତ୍ରବନ୍ଧୁ ସ୍ନେହୀ ଶିକ୍ଷକ ରତ୍ନାକରଙ୍କ ପକ୍ଷରେ ଏହାହିଁ ଚାକିରି ଛାଡ଼ିବାର ପ୍ରଧାନ ଅନ୍ତରାୟ । ଅଧ୍ୟାପକ ରତ୍ନାକର କେବଳ ଶିକ୍ଷକ ନ ଥିଲେ—ଯଥାର୍ଥରେ ସେ ଦରିଦ୍ର ଛାତ୍ରଙ୍କର ପିତା ଓ ପାଳନକର୍ତ୍ତା ଥିଲେ । ପରୋପ-କାରସ୍ୟ ସ୍ୱର୍ଗାୟ—ଏହାହିଁ ତାଙ୍କ ଜୀବନର ବ୍ରତ ଥିଲା । ଆଜି ଏତିକି ।

# ସାର୍ ଆଉ ନାହାନ୍ତି

୧୯୩୦ ମସିହା ମଇ ମାସ, ଲବଣ ସତ୍ୟାଗ୍ରହ, ନିଶାଦୋକାନ ପିକେଟିଂ ଇତ୍ୟାଦି ଅହିଂସାତ୍ମକ ସଂଗ୍ରାମ ଜୋରସୋରରେ ଚାଲିଥାଏ । ମୁଁ ପୁରୀରେ ଥାଏ; ଦିନେ ସନ୍ଧ୍ୟାରେ ମୁରାରି ଭାଇନା (ସ୍ୱର୍ଗୀୟ ମୁରାରି ତ୍ରିପାଠୀ) ମତେ ଖବର ଦେଲେ, "କକେଇ କହିଛନ୍ତି ତୁ କାଲି ସକାଳେ ତାଙ୍କୁ ରେଳ ଷ୍ଟେସନରେ ଦେଖା କରିବୁ, ସେ ହାବଡ଼ା ପାସେଞ୍ଜରରେ କଟକ ଯିବେ ।" କକେଇ (ଶ୍ରୀ କୃପାସିନ୍ଧୁ ହୋତା) ସ୍ୱାଧୀନତା-ଆନ୍ଦୋଳନରେ ଏତେ ବ୍ୟସ୍ତ ଥାଆନ୍ତି ଯେ, ମୁଁ ପ୍ରାୟ ମାସେ ହେବ ତାଙ୍କୁ ଦେଖିବାର ସୁଯୋଗ ପାଇ ନ ଥାଏ ।

ସକାଳୁ ରେଳ ଷ୍ଟେସନକୁ ଗଲି; ଗାଡ଼ି ପ୍ଲାଟଫର୍ମରେ ଠିଆ ହୋଇଥିଲା । ମୁଁ ଡବା ଭିତରକୁ ଚାହିଁ ଚାହିଁ ଯାଉଥାଏ । ହଠାତ୍ ପାଟି ଶୁଭିଲା, "ଆରେ ମୁଁ ଏଠି ବସିଛି" । ଥ୍ରୋଟ ତୃତୀୟ ଶ୍ରେଣୀ ଡବାଟିଏ । କବାଟ ପାଖେ ଜଣେ ଉଚ୍ଚକାୟ ପୁଲିସ କନେଷ୍ଟବଳ ଠିଆ ହୋଇଥିଲେ । ତେଣୁ ମତେ କକେଇ କେଉଁଠି ବସିଥିଲେ ଦିଶୁ ନ ଥିଲା । ମୁଁ ଡବା ଭିତରକୁ ଯିବାକୁ ବସିଲାରୁ କନେଷ୍ଟବଳ ଆଡ଼େଇଗଲେ । କକେଇଙ୍କ ହାତରେ କଡ଼ି ଓ ଅଣ୍ଟାରେ ଦଉଡ଼ି ବନ୍ଧା ହୋଇଥିବା ଦେଖି ସ୍ତମ୍ଭୀଭୂତ ହୋଇଗଲି । ମୁଁ ଚୁପ୍ ମାରିଯିବା ଦେଖି କକେଇ ହସ ହସ ମୁହଁରେ କହିଲେ, "ଆରେ ବାବୁ, ଆମେ ତ ଏ ପୁରସ୍କାର ପାଇଁ ନିଜକୁ ପ୍ରସ୍ତୁତ କରୁଥିଲୁ । ଏତେ ବଡ଼ ଦେଶ ସ୍ୱାଧୀନ ହେବ କିପରି, ବିନା ତ୍ୟାଗ ଓ ବିନା କଷ୍ଟ ସ୍ୱୀକାରରେ ?" ଇତ୍ୟାଦି ।

କକେଇ ପରୀକ୍ଷାଫଳ କଥା ପଚାରିଲେ ଓ କହିଲେ, "ନ ପଢ଼ିବାଠାରୁ ପଢ଼ିବା ଭଲ, ତୁ କଲେଜରେ ପଢ଼ିବୁ । ମୁଁ ରତ୍ନାକର ପତିଙ୍କୁ ତୋ କଥା କହିଛି । ତୁ ତାଙ୍କ ପାଖକୁ ଯିବୁ ।" କଥାବାର୍ତ୍ତା ହେଉ ହେଉ ଗାଡ଼ି

କେତେବେଳେ ଛାଡ଼ିଦେଲା । ମୁଁ ପର ଷ୍ଟେସନ ମାଳଗୋପାଳପୁରଠାରେ ଓହ୍ଲାଇ ପୁଣି ଫେରିଲି ।

ଜୁନ ମାସରେ କଟକ ଆସି କେନାଲ କୂଳ ସରକାରୀ ବସାରେ ସାର୍‌ଙ୍କ (ଦର୍ଶନ ଅଧ୍ୟାପକ ରତ୍ନାକର ପତି) ସଙ୍ଗେ ଦେଖା କରିବାକୁ ଗଲି । ଦିନ ପ୍ରାୟ ବାରଟା ହେବ । ମୋର ଡାକ ଶୁଣି ଭିତରୁ ଖଡ଼ମ୍‌ର ଶବ୍ଦ ପାଇଲି ଓ ସାମନାରେ ସାର୍‌ଙ୍କୁ ଦେଖିଲି । ମୋର ପରିଚୟ ପାଇ ଶ୍ରଦ୍ଧା ସହାନୁଭୂତି ସହିତ କହିଲେ: "ପଣ୍ଡିତ ମହାଶୟ କହିଯାଇଛନ୍ତି, ତୁମେ ଆସିବ, କଲେଜରେ ପଢ଼ିବ । ମୋ ବସାରେ ଆଗ ରହିବ, ତାପରେ ଦେଖିବା ।"

ଠିକ୍ ସମୟରେ ସାର୍‌ଙ୍କ ବସାରେ ପହଞ୍ଚିଲି ଓ କଲେଜରେ ନାମ ଲେଖା ହେଲା । ତାଙ୍କ ଘରେ ସ୍ୱାଧୀନ ଓ ସ୍ୱଚ୍ଛନ୍ଦ ଭାବରେ ଚଳିବାକୁ କୌଣସି ଚେଷ୍ଟା କରିବାକୁ ପଡ଼ିଲା ନାହିଁ । ସେତେବେଳେ ସାର୍‌ଙ୍କର କନ୍ୟା ପ୍ରଭା ଚାରି ବର୍ଷର ଓ ପ୍ରଥମ ପୁଅ ନିବେଦନ ମାତ୍ର କେତେ ମାସର । ସାର୍‌ଙ୍କ ଘରେ ପ୍ରାୟ ସବୁଦିନ ଅତିଥି ଥାଆନ୍ତି । ଯେଉଁମାନେ ଆସନ୍ତି, ତାଙ୍କ ଭିତରୁ କ୍ୱଚିତ୍ ଭାତ ବା ଜଳଖିଆ ନ ଖାଇ ଫେରନ୍ତି । ଘରେ ଥିଲାବେଳେ ସାର୍‌ଙ୍କର ପ୍ରାୟ ସବୁ ସମୟ ପଢ଼ାପଢ଼ି ବା ସେ ସମ୍ପର୍କୀୟ ଆଲୋଚନାରେ କଟେ ।

ମୁଁ ପ୍ରାୟ ସାର୍‌ଙ୍କ ସାଙ୍ଗେ ଏକାଠି ଖାଇ ବସେ । ସେ ଭାତରେ ଘିଅ ଖାଆନ୍ତି ନାହିଁ । ତା ବଦଳରେ ଲେମ୍ବୁ ଭାତରେ ଚିପୁଡ଼ି ଦେଇ ହସି ହସି କହନ୍ତି, 'ଏହି ମୋର ଘିଅ' ।

ଦିନକର ଘଟଣା, ତାଙ୍କ ଗାଁର ଜଣେ ବୃଦ୍ଧ ଆସି ଚାଦରଟିଏ ମାଗିଲେ । ସାର୍ ମୋତେ ଚାଦର ଖଣ୍ଡିଏ ତାଙ୍କ ଚକଆ ପାଖରୁ ଆଣିବାକୁ କହିଲେ । ଚକଆ ପାଖରେ ତିନ ଖଣ୍ଡି ଏଣ୍ଡି ଚାଦର ଥିଲା । ଖଣ୍ଡିଏ ନୂଆ ଓ ଦୁଇ ଖଣ୍ଡି ପୁରୁଣା । ମୁଁ ଖଣ୍ଡିଏ ପୁରୁଣା ଚାଦର ଆଣିଲି । ସେ ମୋ ହାତରୁ ସେ ଖଣ୍ଡି ନେଇଯାଇ ନିଜେ ନୂଆ ଚାଦରଟି ଆଣି ବୃଦ୍ଧଙ୍କୁ ସମ୍ମାନ ଭାବେ ଦେଇ ବିଦାୟ କଲେ । ସାର୍ ଏକାଡେମୀ ସ୍କୁଲରେ ପଢ଼ିଲାବେଳେ କପିଳ ସହାଳୁଆ ସ୍କୁଲକୁ ଖରାଦିନେ ନିଜ ଗାଁ ତଅଁରପାରୁ ଆଠ ମାଇଲ ବାଟ ଆସନ୍ତି ଓ କ୍ଲାସ ସରିଲା ପରେ ପ୍ରାୟ ଚାରିଟାବେଳକୁ ଘରକୁ ଫେରନ୍ତି ଓ ପଖାଳ ଖାଇ ଶୋଇପଡ଼ନ୍ତି, ସେକଥା ତାଙ୍କ ମୁହଁରୁ ଯେ କେହି

ଶୁଣିଲେ ଭାବବ ଯେ, ପିଲାଦିନରୁ ତାଙ୍କଠାରେ ଅସାଧାରଣ ଓ ବଳିଷ୍ଠ ବ୍ୟକ୍ତିତ୍ୱର ସୂଚନା ନିଶ୍ଚିତ ଭାବରେ ଥିଲା ।

ସାର୍‌ଙ୍କ ବସାକୁ ବହୁତ କଲେଜ ଛାତ୍ର ଆସୁଥିଲେ । କେଉଁ କେଉଁ ବିଷୟରେ କି କି ବହି ପଢ଼ିବେ, ସେହି କଥା ସାର୍‌ଙ୍କଠୁ ପରାମର୍ଶ ନଅନ୍ତି । ଅନେକ ଛାତ୍ର ଆର୍ଥିକ ସାହାଯ୍ୟ ପାଇଁ ମଧ୍ୟ ଆସୁଥିଲେ । ମୋର ମନେହୁଏ, କୌଣସି ଛାତ୍ର ଖାଲି ହାତରେ ଫେରୁ ନ ଥିଲେ । ତେବେ କାହାକୁ କେତେ ଦିଆଯାଉଥିଲା ସେକଥା ମୁଁ ବା ଘରର ଅନ୍ୟକେହି ଜାଣୁ ନ ଥିଲେ । ପ୍ରକୃତରେ ଦାନର ଶାସ୍ତ୍ରୀୟ ଫଳ୍ପା ଯାହା ସେହିପରି ଦାନ କରାଯାଉଥିଲା ।

କିଛି ବର୍ଷ ପରେ ମୁଁ ପାଟନାରୁ ଏମ୍. ଏ. ପାଶ କରି ଓକିଲାତି ପଢ଼ିବାପାଇଁ ତାଙ୍କର ପରାମର୍ଶ ନେଉଥିଲି । ସେ କହିଲେ, "ଆଗ ଏଠାରେ ରହ, ପରେ ପଢ଼ା କଥା ବିଚାରିବା ।" ପରେ କଥାପ୍ରସଙ୍ଗରେ ଓକିଲାତି ପଢ଼ିବାକୁ ମନାକଲେ । କିଛିଦିନ ପରେ ମୋର ଖଣ୍ଡେ ଚାକିରି ହୋଇଗଲା । ମୁଁ ସରକାରୀ ଆଦେଶ ୧୯୩୭ ଜାନୁୟାରୀ ଶେଷ ଆଡ଼କୁ ପାଇଲି । ସାର୍‌ଙ୍କ ଆନନ୍ଦ କହିଲେ ନ ସରେ । ସେହିଦିନ ସନ୍ଧ୍ୟାର ଗୋଟିଏ ଘଟଣା ମୋର ଖୁବ୍ ମନେ ଅଛି । ହଠାତ୍ ମୋର କକେଇ ଆସି ସାର୍‌ଙ୍କ ବସାରେ ପହଞ୍ଚିଲେ ଓ ପ୍ରଥମେ ପ୍ରଭାତର ବୋଉଙ୍କୁ ଦୁଇଟି ଟଙ୍କା ମାଗିଲେ । ମାସ ଶେଷ । ପଇସାଟିଏ ନାହିଁ ବୋଲି ତାଙ୍କଠାରୁ ଶୁଣି ସାର୍‌ଙ୍କୁ ମାଗିଲେ । ସାର୍ ଚୁପ୍ ହୋଇଗଲେ ଓ ତରତର ହୋଇ ମୁଁ ଥିବା କୋଠରୀକୁ ଆସି ମତେ ଚୁପ୍ କରି ଦୁଇଟି ଟଙ୍କା ମାଗିଲେ । ମୁଁ ନାହିଁ କରୁଛି, ଏପରି ସମୟରେ କକେଇ ବଡ଼ ପାଟି କରି କହିଲେ, "ରତ୍ନାକରବାବୁ, ତୁମକୁ ପ୍ରଫେସର କିଏ କଲା ? ତୁମେ ପାଞ୍ଚ ଶହ କି ଛ'ଶହ ଟଙ୍କା ପ୍ରତି ମାସରେ ପାଉଛ କିନ୍ତୁ ତୁମ ଘରେ ଦୁଇଟି ଟଙ୍କା ନାହିଁ ! ଏ ସବୁ ଅବ୍ୟବସ୍ଥା । ମୁଁ ଚାଙ୍କୁ (ପ୍ରଭାତଙ୍କ ବୋଉ) ମଧ୍ୟ ଦୋଷ ଦେବି ।" ସେତେବେଳକୁ ରାତି ପ୍ରାୟ ନ'ଟା ହେବ । ରାଣୀହାଟର କମ୍ପାଉଣ୍ଡର (ସାର୍‌ଙ୍କ ସାଙ୍ଗ)ଙ୍କ ଠାରୁ ପାଞ୍ଚ ଟଙ୍କା ଧାର ଆସି କକେଇଙ୍କ କାମ ଚଳିଲା । ସାର୍‌ଙ୍କ କଥା ପଡ଼ିଲେ ଏହିପରି ଅନେକ ମଧୁର ସ୍ମୃତି ମନକୁ ଆସେ ।

ଶ୍ରୀବାଞ୍ଛାନିଧି ହୋତା

# କର୍ମବୀର ରତ୍ନାକର

ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ

ଅଧ୍ୟାପକ ରତ୍ନାକର ପତି ବର୍ଷେ ହେଲା ଗଲେଣି । ତାଙ୍କ ତିରୋଧାନ ହେତୁ ଯେଉଁ ସ୍ଥାନ ଶୂନ୍ୟ ହୋଇଛି ତାହା ପୂରଣ ହେବାର ନୁହେଁ ଏବଂ ପୂରଣ ହୋଇନାହିଁ । ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କର୍ତ୍ତବ୍ୟ ସାଧନରେ ବ୍ୟାପୃତ ଥିଲେ । ବିଶ୍ୱବିଦ୍ୟାଳୟର ଦର୍ଶନ ପରୀକ୍ଷା ସମିତି ବୈଠକରେ ଯୋଗ ଦେଇସାରି ଜଣେ ବନ୍ଧୁଙ୍କ ସହିତ ସାକ୍ଷାତ କରିବାକୁ ଯିବା ଅବସ୍ଥାରେ ସେ ରିକ୍ସାରେ ବେହୋସ ହୋଇ ପଡ଼ିଲେ । ତାପରେ ସେ ଆଉ ଉଠିନାହାନ୍ତି କିମ୍ବା ସ୍ନେହମୁଗ୍ଧ ଛାତ୍ରଛାତ୍ରୀମାନଙ୍କୁ ଦେଖିନାହାନ୍ତି ।

ମୁଁ ଅଧ୍ୟାପକ ପତିଙ୍କର ପ୍ରଥମ ଦଳର ଛାତ୍ରମାନଙ୍କ ମଧ୍ୟରୁ ଅନ୍ୟତମ । ରାଞ୍ଚି କଲେଜର ଉପାଧ୍ୟକ୍ଷ ଓ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କରିବା ପରେ ୧୯୩୬ ମସିହା ସେପ୍ଟେମ୍ବର ମାସରେ ସେ ରେଭେନ୍ସା କଲେଜରେ ଯୋଗଦାନ କଲେ । ସେ ଆସିବା ପୂର୍ବରୁ ଅଧ୍ୟାପକ ମୋହିନୀ ମୋହନ ସେନାପତି ଦର୍ଶନ ଓ ନ୍ୟାୟଶାସ୍ତ୍ର ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ । ସେତେବେଳେ ମୁଁ ସେ କାଳର ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଥାଏ ଏବଂ ଅଧ୍ୟାପକ ସେନାପତି ଆମ ନ୍ୟାୟ ଶାସ୍ତ୍ରର ଟିଉଟୋରିଆଲ କ୍ଲାସ ନେଉଥାନ୍ତି । ସେ ୧୯୩୬ ଅଗଷ୍ଟ ମାସରେ ଅବସର ଗ୍ରହଣ କଲେ ଏବଂ ଅଧ୍ୟାପକ ବିପିନ ବିହାରୀ ରାୟ ମୁଖ୍ୟ ଅଧ୍ୟାପକ ହେଲେ । ଅଧ୍ୟାପକ ରାୟଙ୍କ ସ୍ଥାନରେ ଅଧ୍ୟାପକ ପତି ରେଭେନ୍ସା କଲେଜକୁ ସ୍ଥାନାନ୍ତରିତ ହେଲେ । ୧୯୩୬ ମସିହା ଜୁଲାଇ ମାସରେ ରେଭେନ୍ସା କଲେଜରେ ନାମ ଲେଖାଇସାରି ମୁଁ ଚେଲେଙ୍ଗା ବଜାରରେ ଥିବା ବାଉରି ପଣ୍ଡା ହୋଷ୍ଟେଲରେ ଥାଏଁ । ଅଗଷ୍ଟ ପନ୍ଦର ତାରିଖ ଦିନ ସେଠାରେ ମୋତେ ହଇଜା ହେଲା ଏବଂ ମୁଁ ଓଡ଼ିଶା ମେଡ଼ିକାଲ ସ୍କୁଲ ହାସପାତାଳକୁ ଅଚେତ ଅବସ୍ଥାରେ ବୁହାହୋଇ ଗଲି । ହାସପାତାଳରେ

ଦଣ୍ଡଦାନ ରହିବାପରେ ମୁଁ ପ୍ରାୟ ମାସେ କାଳ ଘରେ ରହି ଫେରିଆସି ଦେଖେଁ ଯେ ଆମ ନ୍ୟାୟଶାସ୍ତ୍ର ଶ୍ରେଣୀରେ ଆଜି ଜଣେ ନୂଆ ଅଧ୍ୟାପକ ଅଧ୍ୟାପନା କରୁଛନ୍ତି । ସେ ଖାଣାକଣା ସ୍ୱର ଏବଂ Syllogism ଅଧ୍ୟାପନା-ବେଳେ All horses are quadruped. Bucephalus was a horse. So it is quadruped. ଅଧ୍ୟାପନା ଏ ପର୍ଯ୍ୟନ୍ତ ମନେଅଛି । ସେ ଥିଲେ ଅଧ୍ୟାପକ ରତ୍ନାକର ପତି, ଯାହାଙ୍କୁ ଆମେ ଉତ୍କଳମଣି ଗୋପବନ୍ଧୁଙ୍କ ଜ୍ୟେଷ୍ଠ ଜାମାତାରୂପେ ଆଗରୁ ଜାଣିଥିଲୁ ।

ରେଭେନ୍‌ସା କଲେଜର ଦର୍ଶନ ବିଭାଗରେ ମୋଟେ ଦୁଇଗୋଟି ଅଧ୍ୟାପକ ପଦ ଥିଲା । ମୁଖ୍ୟ ଅଧ୍ୟାପକ ଥିଲେ ଶ୍ରୀଯୁକ୍ତ ବିପିନ ବିହାରି ରାୟ । ସରକାର ରେଭେନ୍‌ସା କଲେଜିଏଟ ସ୍କୁଲର ତଦାନୀନ୍ତନ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଶରତଚନ୍ଦ୍ର ଘୋଷାଲଙ୍କୁ ଦର୍ଶନ ବିଭାଗର ଦ୍ୱିତୀୟ ଅଧ୍ୟାପକ ରୂପେ ଅବସ୍ଥାପିତ କରିବା ଫଳରେ ଅଧ୍ୟାପକ ପତିଙ୍କ ଲାଗି ଶୂନ୍ୟ ସ୍ଥାନ ମିଳିଲା ନାହିଁ । ସେ ହୁଏତ ପୁଣି ଥରେ ପ୍ରଧାନ ଶିକ୍ଷକ ପଦକୁ ଫେରି ଯାଇଥାନ୍ତେ, କିନ୍ତୁ କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ ତାଙ୍କୁ ଛାଡ଼ିବାକୁ ଅରାଜି ହୋଇ ଦର୍ଶନ ବିଭାଗରୁ ଓଡ଼ିଆ ବିଭାଗକୁ ତାଙ୍କୁ ବଦଳାଇ ଦେଲେ । ଫଳରେ ଅଧ୍ୟାପକ ରତ୍ନାକର ପତି ହେଲେ ଓଡ଼ିଆବିଭାଗର ଜଣେ ଅଧ୍ୟାପକ, ସେ ବିନାକେତେ ଓଡ଼ିଆ ବି ପଢ଼ାଇଛନ୍ତି । ଏବେ ଯେଉଁମାନେ ଓଡ଼ିଆରେ ଏମ୍. ଏ. ଉପାଧି ନଥିଲେ ଜଣେ ଲୋକ ଓଡ଼ିଆ ଅଧ୍ୟାପକ ହୋଇପାରିବ ନାହିଁ ବୋଲି ଦାବୀ ଉପସ୍ଥାପିତ କରୁଛନ୍ତି, ଅଧ୍ୟାପକ ପତିଙ୍କ ଦୃଷ୍ଟାନ୍ତ ସେମାନଙ୍କ ଦାବୀର ପ୍ରତ୍ୟକ୍ଷ ବିରୁଦ୍ଧାଚରଣ । ଅଧ୍ୟାପକ ପତି ତାଙ୍କ ପର ଜୀବନରେ ଯେଉଁ ପ୍ରବନ୍ଧାବଳୀ ରଚନାକରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି, ତାହା ପଢ଼ି ଯେକୌଣସି ପାଠକ କହିବ ଯେ, ତାଙ୍କ ଓଡ଼ିଆ ଅଧ୍ୟାପନା ନିଶ୍ଚୟ କୁଶଳ ହୋଇଥିବ ।

ଅଧ୍ୟାପକ ପତି ଜଣେ କର୍ମନିରତ ଓ ଛାତ୍ରବତ୍ସଳ ଅଧ୍ୟାପକ ଥିଲେ । ଘଣ୍ଟା ବାଜିବାମାତ୍ରକେ ସେ ଶ୍ରେଣୀ ପ୍ରକୋଷ୍ଠରେ ପହଞ୍ଚି ଯାଉଥିଲେ । କଲେଜ ବାରଣ୍ଡାରେ ତାଙ୍କୁ କେହି କେବେ ବୁଲିବାର ଦେଖି ନାହାନ୍ତି । ସେ ସର୍ବଦା ଦଉଡ଼ୁଥାନ୍ତି । ଯେଉଁ ଛାତ୍ରମାନେ ସାଧାରଣତଃ କୌଣସି କାରଣରୁ ହେଉ କିମ୍ବା କେବଳ ବଡ଼ପଣିଆଁ ଦେଖାଇବା ଲାଗି ହେଉ, ଦଶ ପନ୍ଦର ମିନିଟ ଡେରିରେ ଶ୍ରେଣୀ ପ୍ରକୋଷ୍ଠକୁ ଆସନ୍ତି, ସେମାନଙ୍କୁ

ଅଧ୍ୟାପକ ପତି କେବେକେହେଲେ ତିରସ୍କାର କରି ନ ଥିଲେହେଁ ତାଙ୍କ ନିଜର ସମୟାନୁବର୍ତ୍ତିତା ଲକ୍ଷ୍ୟ କରି ଛାତ୍ର ନିଜ ଆଚରଣକୁ ସଂଶୋଧନ କରିନିଏ । ଆଧୁନିକ ଯୁଗରେ ଉଚ୍ଚସ୍ଥାନାଧିଷ୍ଠିତ ଜଣେ ଦୁଇଜଣ ସହପାଠୀଆରମ୍ଭରେ ଶ୍ରେଣୀକୁ ଆସିବାରେ ଏହିପରି ଡେରି କରୁଥିଲେ । ଅଧ୍ୟାପକ ପତିଙ୍କ ଆଗମନ ପରେ ସେମାନେ ନିଜେ ନିଜେ ସଂଶୋଧିତ ହୋଇଗଲେ । ଅଧ୍ୟାପକ ପତି ନିଜେ ପ୍ରସ୍ତୁତ ହୋଇ ଶ୍ରେଣୀକୁ ଆସୁଥିଲେ ଏବଂ ଛାତ୍ରମାନେ ପ୍ରସ୍ତୁତ ହୋଇ ଆସନ୍ତୁ ବୋଲି ତାଙ୍କର ଇଚ୍ଛା ଥିଲା । ଅଧ୍ୟାପକ ଶ୍ରୀଯୁକ୍ତ ସେନାପତିଙ୍କ ପରେ ସେ ନେଲେ ଆମ ଟିଉଟୋରିଆଲ କ୍ଲାସ । ଥରେ ମୁଁ Method of Agreement ବିଷୟରେ ଲେଖିବାବେଳେ Agreement ଶବ୍ଦକୁ ଦୁଇଟା 'g' ଲେଖି ଅଶୁଦ୍ଧ କରି ଦେଇଥିଲି । ସେ ଦିନର ଦୃଶ୍ୟ ଓ ଅଭିଜ୍ଞତା ଏବେ ବି ମୋ ମନରେ ସଜୀବ ହୋଇ ରହିଛି । ସେ ଭଲ ପଢ଼ୁଥିବା ଛାତ୍ରମାନଙ୍କୁ ଅତି ଶ୍ରଦ୍ଧା କରୁଥିଲେ । ତାଙ୍କ ଶ୍ରଦ୍ଧା ପାଇବାରେ ମୋ ଭାଗ ଟିକିଏ ବେଶୀ ଥିଲା । କିନ୍ତୁ ସେ ମୋଠାରୁ ଏତେ ବିଶୁଦ୍ଧତା ଆଶା କରୁଥିଲେ ଯେ, ଏହି ସାମାନ୍ୟ ଭୁଲଟିପାଇଁ ସେ ମୋତେ ପ୍ରବଳ ତିରସ୍କାର କରିଥିଲେ । ତିରସ୍କୃତ ହେବା ପରେ ମୁଁ ସେହି ଶ୍ରେଣୀ କକ୍ଷରେ କାନ୍ଦିଲି । ମୋର ଅଧିକ କୋହ ଉଠିବା ମାତ୍ରକେ ଅଧ୍ୟାପକ ପତିଙ୍କ ଚକ୍ଷୁ ଅଶ୍ରୁଳ ହୋଇଗଲା । ସେ ମୋତେ ପ୍ରଥମ ବାର୍ଷିକ ଶ୍ରେଣୀର ବାର୍ଷିକ ପରୀକ୍ଷାରେ ନ୍ୟାୟ ଶାସ୍ତ୍ରରେ ଶହେ ନମ୍ବରରୁ ଅନେଶ୍ୱତ ନମ୍ବର ଦେଇଥିଲେ । ଅଧ୍ୟକ୍ଷ ତ୍ରିପାଠୀ ମୋ ସମ୍ମୁଖରେ ତାଙ୍କୁ ଏକଥା ପଚାରିବାରୁ ସେ କହିଥିଲେ, ମୋ ଉତ୍ତରପୁସ୍ତିକା ଅମ୍ବିକାଚରଣ ମିଶ୍ରଙ୍କ ଅବରୋହ ନ୍ୟାୟଶାସ୍ତ୍ରର ଅବିକଳ ଉଦ୍ଧାର ଭିନ୍ନ ଆଉ କିଛି ନୁହେଁ । ଏବକାଳ ହୋଇଥିଲେ ଶିକ୍ଷକମାନେ ହୁଏତ ଭାବିଥାନ୍ତେ, ମୁଁ ବହି ପକାଇ ନକଲ କରିଛି । ଏହି ଦିନକର ଶାସ୍ତି ମୋ ପାଇଁ ଯଥେଷ୍ଟ ଥିଲା । ସେ ମୋଠାରୁ ବଡ଼ କଥା ଆଶା କରୁଥିଲେ । ଆଇ. ଏ. ପରୀକ୍ଷାରେ ପାଟଣା ବିଶ୍ୱବିଦ୍ୟାଳୟରେ ପ୍ରଥମସ୍ଥାନ ଅଧିକାର କରି ମୁଁ ତାଙ୍କ ଆଶାକୁ କିଛିତ ପରିମାଣରେ ଚରିତାର୍ଥ କରିଥିଲି ବୋଲି ସେ ମୋତେ କହିଥିଲେ ।

ସଂସାରରେ ଘର କରି ରହିଲେ ବହୁ କ୍ଷେତ୍ରରେ ମାନବିକ ଦୁର୍ବଳତାର ଗଣ୍ଠି ଭିତରେ ଆତଯାତ ହେବାକୁ ହୁଏ । କେତେବେଳେ କେଉଁ କଥାରେ ଭୁଲ ଭଟକା ହୋଇଯାଏ, ସେ କଥା ସହଜରେ ଜଣା ପଡ଼େ

ନାହିଁ । ତେଣୁ ଆସେ ବ୍ୟକ୍ତି ଯେତେବେଳେ ନିଜ କୃତକର୍ମ ଲାଗି ଅନୁତପ୍ତ ହୁଏ । ଋଷୋଙ୍କ କହିବାନୁସାରେ ବ୍ୟକ୍ତିକୁ ନିଜ ଦୋଷ ଲାଗି ଅନୁତପ୍ତ କରିବା ନିମିତ୍ତ ରାଷ୍ଟ୍ରଶକ୍ତିର ସୃଷ୍ଟି । କିନ୍ତୁ ଆମ ସମସାମୟିକ ଛାତ୍ରସମାଜ ଅଧ୍ୟାପକ ରତ୍ନାକର ପତିଙ୍କୁ ଅନୁତପ୍ତ କରାଇବା ଲାଗି ଜୀବନ୍ତ ଶକ୍ତିରୂପେ ବିବେଚନା କରୁଥିଲେ । ଯଦି କେହି କେବେ ଦୋଷ କରିଥାଏ ବୋଲି ଅଧ୍ୟାପକ ପତିଙ୍କ କର୍ଣ୍ଣଗୋଚର ହୋଇଥିବା କଥା ଜଣାପଡ଼େ, ଦୋଷୀ ଛାତ୍ର ତତ୍‌କ୍ଷଣାତ୍ ନିଜକୁ ତାଙ୍କ ଦୃଷ୍ଟିର ଅଗୋଚରରେ ରଖିବାକୁ ସତତ ଚେଷ୍ଟା କରେ । ବ୍ୟକ୍ତିଗତ ଦୋଷଲାଗି ଅଧ୍ୟାପକ ପତି ତାଡ଼ନା କରନ୍ତି ନାହିଁ । ତାଙ୍କ ଅଗ୍ନିଗର୍ଭା ଦୃଷ୍ଟି ଓ ପ୍ରତ୍ୟକ୍ଷ ଉଦାସୀନତା ଦୋଷୀକୁ ଦଗ୍‌ଧ କରେ । ତାଙ୍କୁ ଗ୍ରୀକ୍ ସଭ୍ୟତାର ଆଚରଣ ନିୟନ୍ତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାରେ ଯେଉଁ ତିନିଜଣ ପ୍ରଥମ ଦର୍ଶନ ଅଧ୍ୟାପକ ରୂପେ ସୁବିଦିତ, ସେମାନଙ୍କୁ ଭୁଲିଯିବା କାହାରି ପକ୍ଷରେ ସମ୍ଭବପର ନୁହେଁ । ସେ ତିନିହେଁ ହେଲେ ଅଧ୍ୟାପକ ମୋହିନୀମୋହନ ସେନାପତି, ଅଧ୍ୟାପକ ବିପିନ ବିହାରୀ ରାୟ ଓ ଅଧ୍ୟାପକ ରତ୍ନାକର ପତି । ସାମାଜିକ ସଂଗଠନ ବିଷୟରେ ଅଧ୍ୟାପକ ସେନାପତିଙ୍କ ମୌଳିକ ଦୃଷ୍ଟିକୋଣ ଏବଂ ବିଶେଷ ପାରମ୍ପରିକ ବିବାହ-ବନ୍ଧନ ପ୍ରତି ତାଙ୍କ ତୁଚ୍ଛ ତାଚ୍ଛଲ୍ୟ ଏବେ ବି ଆଲୋଚନାର ବସ୍ତୁ । ଅଧ୍ୟାପକ ରାୟ ଛାତ୍ରବତ୍ସଳତାର ମୂର୍ତ୍ତିମନ୍ତ ଅବତାର । ଦୀର୍ଘ ତିରିଶ ବର୍ଷ କାଳ କେତେ ସହସ୍ର ଛାତ୍ର ଯେ ତାଙ୍କଦ୍ୱାରା ଉପକୃତ ହୋଇଛନ୍ତି ତାହା ସୁମାରି କରି ହେବନାହିଁ । ଅଧ୍ୟାପକ ପତି ଥିଲେ ବ୍ୟକ୍ତି-ଗତ ଜୀବନର ନିୟନ୍ତା । ତାଙ୍କ ଛାତ୍ର-ବତ୍ସଳତା ଅସ୍ପଷ୍ଟ ଓ ଅପ୍ରକାଶିତ ହେଲେହେଁ ନିଜ ଶୃଙ୍ଖଳା ଦାଣେ ଆପଣଙ୍କ ପରି ସେ ଦୀନବନ୍ଧୁ । ତିନିହେଁ ଥିଲେ ଉଚ୍ଚ ଚିନ୍ତାର ବାହକ । ତିନିଜଣଯାକ ନିଜ ଚିନ୍ତାଧାରାକୁ ପୁସ୍ତକା-କାରରେ ଲିପିବଦ୍ଧ କରି ଜାତୀୟ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

---



ମୋର ପ୍ରୌଢ଼ାବସ୍ଥାରେ ବିଧିର ଅନୁକୂଳରେ ୰ ପଣ୍ଡିତଙ୍କ ସଙ୍ଗେ ୧୨ ବର୍ଷ ଧରି ଏକତ୍ର ସତ୍‌କାର୍ଯ୍ୟରେ ଗତି କରିବାର ସୁବିଧା ପାଇ ଓ ବେଳେ ବେଳେ ତାଙ୍କ ସଙ୍ଗେ ଏକାଠି ତାଙ୍କ ଘରେ ରହିବା, ଖାଇବା ଓ ବିଭିନ୍ନ ବିଷୟରେ ଆଲୋଚନା କରିବାର ସୁବିଧା ପାଇ ମୋର ପ୍ରକୃତି ଓ ସାଧାରଣଜ୍ଞାନ ଗୋଟିଏ ଉନ୍ନତସ୍ତରକୁ ଆସିଯିବାର ଅନୁଭୂତି ମୁଁ ଲାଭ କରିପାରିଛି। ତେଣୁ ମୋର ପ୍ରଥମ ଅନୁଭୂତି ହେଲା ଯେ ତାଙ୍କ ପରି ଆଦର୍ଶଗାମୀ ଲୋକର ସାହଚର୍ଯ୍ୟ ପାଇପାରିଲେ ଲୋକର ଆତ୍ମ-ବିଶ୍ୱାସ ବଢ଼େ ଓ ଲୋକ ସମର୍ଥତା ଲାଭ କରେ।

ଏପରି ଲୋକର ସାହଚର୍ଯ୍ୟ ବହୁ ଲୋକ ପାଇ ପାରନ୍ତି ନାହିଁ କାହିଁକି ? କାରଣ ସେ ଲୋକର ବ୍ୟବହାର ସରସ ନୁହେଁ, କଠିଣ; ପ୍ରଥମ ଚୋଟ୍ ଯେ ସମ୍ଭାଳି ପାରିବ ସେ ରସଆସ୍ୱାଦନ କରିବାରେ ସମର୍ଥ ହେବ ଓ ଲାଭ ପାଇ ପାରିବ।

ମୁଁ ଓ ଗୋପାଳ ସ୍ମୃତି ବିଦ୍ୟାପୀଠ କରିବାରେ ମୋର ପ୍ରଥମ ଉତ୍ସାହୀ ବନ୍ଧୁ ଓ ଗାଁବାଲା ଶ୍ରୀ ଉପେନ୍ଦ୍ର ନାରାୟଣ ଆଚାର୍ଯ୍ୟ ଦୁହେଁ ସ୍କୁଲ କରିବା ପ୍ରସ୍ତାବ ନେଇ ୰ ରତ୍ନାକର ବାବୁଙ୍କ ନିକଟକୁ ଯାଇଥିଲୁ। ଯଦି ଆମେ ତାଙ୍କର ପ୍ରଥମ ନିରୁତ୍ସାହ ନାସ୍ତିବାଣୀରେ ଫେରି ଯାଇଥାନ୍ତୁ, ତେବେ ବିଦ୍ୟାପୀଠ ଗଢ଼ିବା ଆଡୁରି ପଛେଇ ଯାଇଥାନ୍ତା; କିନ୍ତୁ ତା ସତ୍ତ୍ୱେ ପୁନର୍ବାର ତାଙ୍କ ସମ୍ମୁଖୀନ ହେବାରୁ ସମସ୍ତପ୍ରକାର ସାହାଯ୍ୟ ଓ ସହାନୁଭୂତି ହାସଲ କରିପାରିଲୁ। ବିଦ୍ୟାପୀଠ ଘରଟି, ପ୍ରଥମ ତିଆରି ପରେ ୧୯୪୮ର ଗୋଟିଏ ବାତ୍ୟାରେ ଭାଙ୍ଗି ପଡ଼ିଲା ଓ ଉଡ଼ିଗଲା। ଆଉ ଟଙ୍କା ନାହିଁ—ପୁଣି ତାକୁ ତିଆରି କରିବାକୁ। ୰ ପଣ୍ଡିତ ମହାଶୟଙ୍କ ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ଆଦେଶ ହେଲା—"ଯାଅ, ସାତଦିନ ମଧ୍ୟରେ ପୁଣି ସେ ଘର ତିଆରି କର, ପିଲାଏ ସେଇ ଘରେ ପଢ଼ିବେ।" ଶ୍ରାବଣର ଅବିଶ୍ରାନ୍ତ ବର୍ଷା। କାଠ ଖୁଣ୍ଟ ଠାକବ ନାହିଁ। ମୂଲିଆ ମିଳିବେ କାହୁଁ ? ମତେ ସଙ୍ଗେ ସଙ୍ଗେ ବୋଧେ ଟ୩୦୦୲ କାଢ଼ି ଦେଲେ ଓ ଦୈନିକ ଖାଇବା ସହିତ ଟ୩୲ ବା ଟ୫୲ ମଜୁରିରେ ଖରଚରେ ପିଗରିବା

ଗ୍ରାମରୁ ୧୨ ଜଣ ମୂଲିଆ ଜଣେ ଠିକାଦାରଙ୍କ ଦ୍ଵାରା ମଗାଇ ଘର ଠିଆ କରିବାକୁ ପଠାଇଲେ । ସବୁ ଅସୁବିଧା ସତ୍ତ୍ୱେ ୭ ଦିନ ମଧ୍ୟରେ ଗୋଡ଼ ସିମେଣ୍ଟ ଖୁଣ୍ଟମାନ ଦେଇ ପୁଣି ଘର ଠିଆ ହେଲା । ଲୋକେ ଦେଖିଲେ ଏ କାମ ଭାଙ୍ଗିବି ନାହିଁ । ୵ପଣ୍ଡିତ ମହାଶୟ କହିଲେ, ଘର ନ ଥିଲେ ପିଲାଙ୍କ ନୈତିକତା ନଷ୍ଟ ହୋଇ ଯାଇଥାନ୍ତା ।

ମୋର ତାଙ୍କ ବିଷୟରେ ଅନୁଭୂତ ହେଲା, ''ସେଇ ଗୋଟିଏ ବ୍ୟକ୍ତି, ଯେ କି ଆବାଲ୍ୟରୁ ଅଭାବ ଓ ଅସୁବିଧାର କଷଟି ପଥରରେ ଘଷା ହୋଇ ଉଜ୍ଜ୍ୱଳ ଓ ବଳିଷ୍ଠ ଆତ୍ମବିଶ୍ୱାସ ଦେଇ ଗଢ଼ି ଉଠିଛନ୍ତି, ବାଧାପୂର୍ଣ୍ଣ ସମୁଦ୍ରରେ ନିର୍ଭୀକ ଭାବରେ ପହଁରିବାକୁ ସୁଖ ପାଆନ୍ତି ।''

ପୂଜ୍ୟ ଉତ୍କଳରତ୍ନ ପଣ୍ଡିତ ଆଧୁନିକ ଶତ ଶତ ନେତାଙ୍କ ପରି ଆଦର୍ଶ ଗପିଲା ଲୋକ ନ ଥିଲେ । ସେ ଥିଲେ ଆଦର୍ଶଜୀବୀ ବ୍ୟକ୍ତି । ଟିକିଏ ଆଦର୍ଶ ପଥରୁ ବିଚ୍ୟୁତ ହେଲେ ତାଙ୍କର ସର୍ବାଙ୍ଗ ଥରିଉଠେ— ମାରିବ କି ମରିବ ହୋଇ ଉଠେ । ଏହା ମୁଁ ଅନେକ ଥର ଲକ୍ଷ୍ୟ କରିଛି ।

କୌଣସି ଜଣେ ଧନୀ ବ୍ୟକ୍ତିର ବଦାନ୍ୟତାରେ କୃପା ଭିକାରୀ ହୋଇ ସାଧାରଣ କାର୍ଯ୍ୟ କରିବାରେ ସେ ସୁଖ ଅନୁଭବ କରୁ ନ ଥିଲେ । ଜନତା ପ୍ରାଣରେ ଦେଶମାତୃକାଭାବ ଜାଗ୍ରତ କରି ମୁଠିଭିକ୍ଷାଦ୍ୱାରା ସମୂହ କାର୍ଯ୍ୟ ତୁଲାଇବାରେ ଆନନ୍ଦ ଅନୁଭବ କରୁଥିଲେ । ଶୋକ ଶୋଷ ଭୁଲି ଯାଇଥିଲେ । ଚାନ୍ଦା ମାଗିବାକୁ ଯାଇ କେତେ କଥା ଯେ ତାଙ୍କ ଠାରୁ ଶିଖିଛୁ ତାର ସୀମା ନାହିଁ । ଗୋଟିଏ ସାଧାରଣ ବିଧବାକୁ ବୁଝାଇ ତାଠାରୁ ଅଣାଏ ପଇସା ବା ଗିନିଏ ଚାଉଳ ସ୍କୁଲ ପାଇଁ ଆଦାୟ କରିବାରେ ଘଣ୍ଟା ଘଣ୍ଟା ଧରି ତାର ବାରଣ୍ଡାରେ ବସି ରହିବା ମୁଁ ଦେଖିଛୁ । ପୁଣି ୵ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଜ୍ୱାଇଁ ରାଏ ବାହାଦୁର ଲୋକନାଥ ମିଶ୍ର ୫୨୦୦ ଚାନ୍ଦା ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ଦ୍ୱିତୀୟଥର ଯିବାରେ ବର୍ତ୍ତମାନ ନାହିଁ ବୋଲି କହି ଫେରାଇ ଦେବାରେ ୵ପଣ୍ଡିତ କ୍ରୋଧରେ ଛଳନା କରି କହିବାର ଶୁଣିଛୁ—''ଆସ ହେ କେଶବ ! There are platitudes to avoid payment'' । ଶ୍ରୀ ଶ୍ୟାମସୁନ୍ଦର ମିଶ୍ର (ଭାରତ ସେବକ ସମାଜ) ସଙ୍ଗରେ ଥିଲେ । ରାଏ ବାହାଦୁର ଲୋକନାଥ ମିଶ୍ର ତତ୍‌କ୍ଷଣାତ୍ ଚେକ୍ ବହି ଆଣି ଚେକ୍ କାଟି ଦେବାର ମଧ୍ୟ ଦେଖିଛୁ ।

ରାଜନୈତିକ ବ୍ୟକ୍ତିଙ୍କ ଶିକ୍ଷାନୁଷ୍ଠାନକୁ ଆଣି ଅତ୍ୟଧିକ ସମ୍ମାନ ଦେଖାଇବାର ଆଦୌ ପକ୍ଷପାତୀ ପଣ୍ଡିତମହାଶୟ ନ ଥିଲେ । ତେଣୁ ଗୋପବନ୍ଧୁ ସ୍ମୃତି ବିଦ୍ୟାପୀଠକୁ ବହୁ ଆର୍ଥିକ ଅସୁବିଧା ଦେଇ ଗତି କରିବାକୁ ପଡ଼ିଥିଲା । କାରଣ ଗାଲବାଜି କଥା କହିବା ତାଙ୍କର ପ୍ରକୃତି ନ ଥିଲା । ଯାହା କରିପାରିବାର ବିଶ୍ୱାସ ଥିଲା, ତାର ଅଧେମାତ୍ର ବ୍ୟକ୍ତ କରୁଥିଲେ । ତେଣୁ ସେ ରାଜନୈତିକ ବାକ୍ୟବୀରଙ୍କୁ ଛାତ୍ରମାନଙ୍କ ଚକ୍ଷୁରେ ଆଦର୍ଶସ୍ଥାନ ଦେବାକୁ ପସନ୍ଦ କରୁ ନ ଥିଲେ । ସେ ଥିଲେ କର୍ମବୀର ଓ ଆଦର୍ଶଜୀବୀ । ଯାହା କରିବା ସ୍ଥିର ହେଉଥିଲା, ତାହା ତତ୍‌ସଙ୍ଗେ ସଙ୍ଗେ ନାନା ଅସୁବିଧା ସତ୍ତ୍ୱେ କାର୍ଯ୍ୟରେ ପରିଣତ ହେଉଥିଲା । ଏ ଗୁଣଟି ତାଙ୍କଠାରୁ କିଞ୍ଚିତ୍ ମାତ୍ରାରେ ଶିକ୍ଷା କରିବାକୁ ଯାଇ ଜୀବନରେ ଅନେକ କାମ କରିବାରେ ସମର୍ଥ ହୋଇଛି । କାରଣ ହେଳାରେ ପ୍ରବୃତ୍ତିର ଉଷ୍ଣତା ନଷ୍ଟ ହୁଏ ।

ଆଉ ଗୋଟିଏ କଥା – ଅନେକ ଲୋକ କହିବାର ଶୁଣିଛି ଯେ ରତ୍ନାକର ପତି ଏକବାଗିଆ ଲୋକ – କାହାରି କଥା ଶୁଣିବେ ନାହିଁ । ନିଜ କଥାଟି କରିବେ । ଯେ ରତ୍ନାକର ପତିଙ୍କୁ ନିଜ ସୁବିଧା ଆଡ଼କୁ ଟାଣିବାକୁ ଚେଷ୍ଟା କରିଛନ୍ତି ସେମାନେ ତାଙ୍କର ଏହି ଛବିର ନମୁନା ଦେଖିଛନ୍ତି । କିନ୍ତୁ ମୋ ଜୀବନର ଅନୁଭୂତି—ସେ ସବୁ ଶୁଣନ୍ତି—ସମସ୍ତଙ୍କୁ ଧୁହାଇଲା ଭଳି କରନ୍ତି—କେବଳ ବ୍ୟକ୍ତି-ସ୍ୱାର୍ଥପାଇଁ କାହା କଥା ଶୁଣିଲା ବାଲା ୯ ପତି ମହାଶୟ ନ ଥିଲେ । ସମୂହସ୍ୱାର୍ଥସାଧନ ହେବାକୁ ସେ ଅକ୍ଳାନ୍ତ ଚେଷ୍ଟା କରିଯାଇଛନ୍ତି । ତାଛଡ଼ା ଅନ୍ୟାୟରେ ନ୍ୟାୟକୁ ବାଟେଇଲା ଭଳି କାମ କରିବା ତାଙ୍କ ବିବେକ ଅନୁମୋଦିତ କରୁ ନ ଥିଲା ।

ଆଉ ଗୋଟିଏ କଥା ନ କହି ରହି ପାରୁ ନାହିଁ । ଧନ୍ୟ ସେ ଘର, ଧନ୍ୟ ସେ ଘରଣୀ । ଯେ ଆସିଲା ସେ ଖାଇଲା । ଆଗରୁ ନୋଟିସ୍ ଦେବା ନ ଥିଲା । ସମାନ ବଢ଼ା ନ ଗଲେ ୯ ପଣ୍ଡିତମହାଶୟ ଉଠି ଯିବେ । କିନ୍ତୁ ଏପରି ଲୋକକୁ ସମ୍ଭାଳିବାପାଇଁ ତାଙ୍କରି ସହଧର୍ମିଣୀ ୯ ସାରଙ୍ଗିଣୀ ଦେବୀଙ୍କୁ ବିଧାତା ଗଢ଼ିଥିଲା । ଅଦ୍ଭୁତ ସେ ନାରୀମୂର୍ତ୍ତି, କର୍ମତତ୍ପରତାର ପ୍ରତୀକ ।

୯ ରତ୍ନାକର ବାବୁଙ୍କ ସଙ୍ଗେ ସ୍କୁଲ ଗଢ଼ିବାର ବହୁ କାହାଣୀ ଅଛି । ହଠାତ୍ ଲେଖିବାକୁ ସମୟ ପାଇଲି ନାହିଁ । ଆଦର୍ଶର ଉତ୍ସ ସେ । କେବେ କେବେ କହିବାର ଶୁଣିଛି—"କେଶବ ! ଆଗରୁ କେହି ଯଦି

ଏ ସ୍କୁଲ୍ ଫୁଲ୍ ଗଢ଼ିବା ଭାବ ମୋ ମନରେ ଆଣିପାରିଥାନ୍ତା, ତେବେ କେତେ କଥା ହୋଇ ପାରିଥାନ୍ତା । କିନ୍ତୁ ମୁଁ ଅନ୍ୟ ଆଡ଼େ ଭାସିଗଲି ।"

ପାଠକମାନେ ଜାଣିଥିବେ, ଅନ୍ୟ ଆଡ଼ ଭାସିଗଲି ମାନେ ; ବ୍ୟକ୍ତି-ଦୁର୍ଦ୍ଦଶା ମୋଚନରେ ୯ ପତ୍ରିଙ୍କର ଦାନ କମ୍ ନୁହେଁ । ତାର ଲେଖା ନାହିଁ ବା ପାଇବା ବ୍ୟକ୍ତି ଭିନ୍ନ ଅନ୍ୟ କେହି ଜାଣେନା । ସେ ବିରାଟ ହୃଦୟ ପରଦୁଃଖ ଦେଖି ଛଳ ଛଳ ହେବାର ବହୁବାର ମୁଁ ଦେଖିଛି । ଗୋଟିଏ ସାଧାରଣ କଥା—

ରତ୍ନାକର ବାବୁ ରିକ୍ସାରେ ବସିଲେ ରିକ୍ସାବାଲା ମୂଲ କରନ୍ତି ନାହିଁ । ଆଶାରୁ ଅଧିକ ମିଳେ ।

ରାଜନୈତିକ ବ୍ୟବହାର ଦେଖି ମୁଁ କେତେବାର କହିଛି, "ଆପଣଙ୍କ ଭଳି ଲୋକ ରାଜନୀତି ଭିତରକୁ ଆସିଲେ ଭଲ ହୁଅନ୍ତା ନାହିଁ ?" ଉତ୍ତର ମିଳିଛି, "କେଶବ, ଏ ହାତ ଟେକା ଯୁଗର ସେହି କାମକୁ ବ୍ୟବସାୟ କରିବା ମୋର ପସନ୍ଦ ହୁଏ ନାହିଁ ।"

ବହୁବାର ଲେଖିବାର ପ୍ରବୃତ୍ତି ତାଙ୍କର ଆସିଛି । ମତେ କହିବାର ଶୁଣିଛି, "କିଏ ଜଣେ ମୋ ପାଖରେ ବସି ଲେଖନ୍ତା କି, ମୁଁ କେତେ କଣ ଲେଖନ୍ତି ।" ଏକୁଟିଆ ଲେଖା ତାଙ୍କଦ୍ୱାରା ହୋଇ ପାରିଲା ନାହିଁ ବୋଲି ମୋର ଅନୁମାନ । ଗାଁ ଉନ୍ନତିରେ ଲାଗିବା, ସାଧାରଣ ଲୋକର ଉନ୍ନତି କରିବାରେ ସମୟ ଦେବା – ତାଙ୍କର ପସନ୍ଦ ଥିଲା । ସେ ଗାଁ ଲୋକଙ୍କ ସଙ୍ଗେ ସୁଖ ଦୁଃଖ କଥାବାର୍ତ୍ତା ହେବାରେ ଆନନ୍ଦ ଅନୁଭବ କରୁଥିଲେ ।

ସେ ଆଜୀବନ ଖାଦ୍ୟପେୟ ବିଷୟରେ ବଡ଼ ସଂଯତ ଥିଲେ । ତାଙ୍କର ପ୍ରିୟ ଜଳଖିଆ ସକାଳେ ଖଇ ଓ ଦହି । ସେ କମ ଖାଉଥିଲେ କିନ୍ତୁ ବହୁବାର ବଡ଼ ଫୁର୍ତ୍ତିରେ ବୁଲିପାରୁଥିଲେ । ବେଶ ବଡ଼ ନିରାଡ଼ମ୍ବର ଥିଲା । ପିଲାଙ୍କୁ ପଢ଼ାଇବାରେ ସେ ବଡ଼ ସୁଖ ଅନୁଭବ କରୁଥିଲେ । ତାଙ୍କ ପରି ବ୍ୟକ୍ତି ବଡ଼ ବିରଳ । ଯେତେ ଦାରୁଣ ଦୁଃଖର ରେଖାପାତ ତାଙ୍କ ହୃଦୟରେ ହେଉନା କାହିଁକି ସେ ତାହା ଆବୃତ୍ତ କରି ରଖିବା ପସନ୍ଦ କରୁଥିଲେ । ତେଣୁ ତାଙ୍କର ଦୁଃଖର ଛବି ବହୁ କମ୍ ଲୋକ ଦେଖି ପାରିଛନ୍ତି ।

**ଶ୍ରୀ କେଶବଚନ୍ଦ୍ର ନନ୍ଦ**

———

# ସ୍ନେହୀ ଗୁରୁଜନ

ଦୁର୍ଗାପ୍ରସାଦ ଆଚାର୍ଯ୍ୟ

## ପ୍ରଫେସର ପଣ୍ଡା

ରତ୍ନାକର ବାବୁ ଚାଲିଗଲେ । କଏ କହିଲା ବଡ଼ ପ୍ରଫେସର ଚାଲିଗଲେ । ଶିକ୍ଷିତ ଓ ମୂର୍ଖ ସ୍ତ୍ରୀ ଓ ପୁରୁଷ ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା—'ରତ୍ନାକର ବାବୁ ଚାଲିଗଲେ ।'

ଠିକ୍ ଏହିପରି ସମୟରେ ମୁଁ ପ୍ରଫେସର ପଣ୍ଡା ରାସ୍ତାର ପଥିକ । ମୁଁ ଯାଉଥିବା ବେଳେ ମୋର ଚିହ୍ନା, ଅଚିହ୍ନା ଯିଏ ମୋତେ ବାଟରେ ଦେଖିଲେ କହିଲେ ରତ୍ନାକର ବାବୁ ଚାଲିଗଲେ । ରତ୍ନାକର ବାବୁଙ୍କ ଘର ଫାଟକ ପାଖରେ ପହଞ୍ଚି ଦେଖେ ତ ଶହ, ଶହ ଲୋକଙ୍କ ଭିଡ଼ । ସମସ୍ତଙ୍କ ମୁଖ ମଣ୍ଡଳରେ ଦୁଃଖର କାଳିମା ।

ମୋର ବିଗତ ଦିନର କେତୋଟି ଘଟଣା ମନେ ପଡ଼ିଗଲା । ମୋ' ଘର ରତ୍ନାକର ବାବୁଙ୍କ ଘର ପାଖରେ । ଥରେ ନନା (ବାପା) ମୋତେ କୋଦାଳ ପାଇଁ ପଠାଇଥିଲେ, ମୁଁ ଯାଇ ରତ୍ନାକର ବାବୁଙ୍କ ପଢ଼ାଘର ଦୁଆର ମୁହଁରେ ଠିଆ ହେଲି । ସେ ବହି ପଢୁଥିଲେ । ଦୃଷ୍ଟି ଫେରାଇ ମୋ ଆଡ଼େ ଚାହିଁ ପଚାରିଲେ, "କିଏ ?" ମୁଁ ପରିଚୟ ଦେଲି । ପଚାରିଲେ, "କଣ ପାଇଁ ଆସିଥିଲ ?" କୋଦାଳ ପାଇଁ ଆସିଥିଲି ବୋଲି କହିଲାରୁ ସେ କହିଲେ, "ବଗିଚାରେ ଥିବ, ଦେଖିକରି ନିଅ" ଆସିଲା ବେଳେ ପଚାରିଲେ,"କୋଦାଳ ପାଇଲ ?" ମୁଁ କହିଲି, ଆଜ୍ଞା ହଁ । ତା'ପରେ ପଚାରିଲେ "କେଉଁ ଶ୍ରେଣୀରେ ପଢ଼ୁଛ" ? "ଆଜ୍ଞା ନବମ ଶ୍ରେଣୀରେ ।" ସେ ପଚାରିଲେ, "ତୁମର ଇଂରାଜୀ କେଉଁ ବିଷୟ ସବୁ ପଢ଼ା ହେଲାଣି ?" ମୋଠାରୁ ଶୁଣିବାପରେ ସେ ପଚାରିଲେ, "What is the moral of the parable of the prodigal son" ମୁଁ ନିର୍ଭୁଲ ଭାବରେ ତାଙ୍କ ପ୍ରଶ୍ନର ଉତ୍ତର ଦେଇଥିଲି । ସେ ଶୁଣି ଖୁସି ହେଲେ ଏବଂ Tinder Boxରୁ ମୋତେ ଆଉ ଗୋଟିଏ ପ୍ରଶ୍ନ କଲେ । ମୁଁ କହି ପାରିଲି ନାହିଁ । ସେ କହିଲେ, "ଏ ବିଷୟଟି ପଢ଼ି ନାହଁକି । ମୁଁ କିଛି ନ କହି ଠିଆ ହୋଇ

ରହିଲି । ସେ ପୁଣି ଧୀର ଭାବରେ କହିଲେ, "ପଢ଼ିଥିଲ" ? ମୁଁ କହିଲି, "ହଁ ପଢ଼ିଥିଲି" । ସେ କହିଲେ "ପଢ଼ିଥିବ କିନ୍ତୁ ଯେଉଁଦିନ ଏ ବିଷୟଟି ପଢ଼ାହୋଇଛି, ସେଦିନ ତୁମେ ସ୍କୁଲ ପଢ଼ିନାହଁ ।" ସେ ମୋତେ ଉପଦେଶ ଦେଇ କହିଲେ, "ଯେଉଁ ଦିନ ଯେଉଁ ବିଷୟ ପଢ଼ାହେବ, ତାକୁ ସେହିଦିନ ଘରେ ଆସି ପଢ଼ିବ, ତାହେଲେ ସବୁଦିନ ପାଇଁ ସେ ବିଷୟ ତୁମର ମନେ ରହିବ ।"

ଆଜି ଦିନକର ଘଟଣା । ସେ ଖଣ୍ଡିଏ ବେତ ଚୌକିରେ ବସିଥାନ୍ତି । ଅତି ଆନନ୍ଦରେ ତାଙ୍କ ନିକଟକୁ ଯାଇ ପ୍ରଣାମ କଲି । ମୋତେ ଚୌକି ଦେଖାଇ ଦେଇ କହିଲେ, "ତୁମେ ବସ ।" ଭାବିଲି ତାଙ୍କ ଆଗରେ ଚୌକିରେ ବସିବି କିପରି, ପୁଣି ଭାବୁଥାଏ, ତାଙ୍କ କଥା ଅମାନ୍ୟ କରିବି କିପରି । ମୁଁ ଏହି ଦ୍ୱନ୍ଦ୍ୱରେ ପଡ଼ିଥିବା ବେଳେ କୁନ୍ଦୁ ଭାଇନା ମତେ ରକ୍ଷା କରିଦେଲେ । ସେ ମୋ ପରିଚୟ ଦେଇ କହିଲେ— "ଆଚାର୍ଯ୍ୟ ବାବୁ ।" ରତ୍ନାକର ବାବୁ କହିଲେ, "କେଉଁ ଆଚାର୍ଯ୍ୟ ବାବୁ, ଏଇ ବିରବାବୁଙ୍କ ପୁଅ ।" ଟିକିଏ ରହି କହିଲେ—"ବାପା, ମୋତେ ଆଜି ଦିଶୁନାହିଁ । ମୁଁ ତୁମକୁ ଚିହ୍ନି ପାରିଲି ନାହିଁ । ତା'ପରେ କହିଲେ, "ଜେଜେ ବାପା ( ପୀତାମ୍ବର ଆଚାର୍ଯ୍ୟ ) ଆସିଥିଲେ କି ? ଆସିଲେ କହିବି ମୋ ପାଖକୁ ଟିକିଏ ଆସିବେ" । ମୁଁ ଉତ୍ତର ଦେଲି—ଆଜ୍ଞା ।

---

# "ଋଣୀଙ୍କ ପାଖରେ ସୁଝି ତାଙ୍କର ସ୍ମରଣ...??"

ଅଧ୍ୟାପକ—ଦାମୋଦର ଶର୍ମା
ରେଭେନ୍ସା କଲେଜ ।

ଆଜକୁ ଠିକ୍ ତେରବର୍ଷ ତଳର କଥା । ଆମେ କେତେଜଣ ଏମ୍: ଏ: ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ମୁଣ୍ଡ ଗୁଞ୍ଜିଥାଉଁ । ସେ କଥା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଜାଣି ନଥାନ୍ତି । ଜାଣିଥାନ୍ତି ଉକ୍ତ ଲାଇବ୍ରେରୀର କେତେଜଣ କର୍ମଚାରୀ ବାବୁ, ଯେଉଁମାନେ କି ଆମ୍ଭମାନଙ୍କ ସେହି ଲାଇବ୍ରେରୀରେ ଶୋଇ ପଡୁଥାନ୍ତି । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ ଥାଏ କଟକରେ । ଏହି ସମୟରେ ଦର୍ଶନରେ ଏବଂ ସଂସ୍କୃତରେ ସ୍ନାତକୋତ୍ତର ଶ୍ରେଣୀ ଦୁଇଟି ଖୋଲିଥାଏ । ମୁଁ ଦର୍ଶନଶାସ୍ତ୍ରର ଛାତ୍ର । ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଥାନ୍ତି ଶ୍ରୀଯୁକ୍ତ ରତ୍ନାକର ପତି, ମୋ ସାର୍ । କ୍ଲାସ ହେଉଥାଏ ବର୍ତ୍ତମାନ କୋଠିରେ । ଯେଉଁଠି ଆଇନ୍ କଲେଜ ଏବେ ହେଉଛି । ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ ମଧ୍ୟ ବର୍ତ୍ତମାନ କୋଠିରେ ଥାଏ । ସେହି ଲାଇବ୍ରେରୀଟା ଥାଏ ଆମର ଆଡ୍ଡାସ୍ଥଳୀ ।

ଖରାଦିନ ଆସିଯାଇଥାଏ । ହୋଷ୍ଟେଲ୍‌ରେ ଖିଆ ପିଆଙ୍କୁ ବାରଣ୍ଡା-ଶୁଆ ଆମର ଚାଲିଥାଏ । ବେଳେ ବେଳେ ଫ୍ୟାନ୍ ଖୋଲି କ୍ଲାସ ରୁମ୍‌ରେ ଆମେ ଶୋଉଥାଉଁ ।' ନାଲୁ ( ନୀଳମାଧବ ଦାସ, ବର୍ତ୍ତମାନ ଅନୁଗୁଳ କଲେଜର ଦର୍ଶନ ଅଧ୍ୟାପକ ) ଦିନେ ଆସି ଗୋଟିରେ କହିଲା, "ହଇରେ ଦାମ, ଚାଲି ପେଡ଼ ପୁଟୁଳା ବାନ୍ଧ, ଏଥର ରଥ ଆମ ରଥ ଉଠାଇଲେ ।" ଆରେ କଥା କଣ··· ? କଥା କ'ଣ କି, ଗୋପବନ୍ଧୁ ରଥ ( ତତ୍କାଳୀନ ରେଜିଷ୍ଟ୍ରାର ) ଏକଥା ଜାଣିଲେଣି ଯେ ଆମେ ଏଠି ଆଡ୍ଡା କରୁଛୁ ୭।୮ ମାସ ଧରି । ଆମେ କ'ଣ କରିବୁ ଭାବି ମୁଣ୍ଡ ଘୁରି ଯାଉଥାଏ, 'ଦେଖାଯିବ'—ଏହି ଶବ୍ଦଟି ଅସ୍ତ୍ର ଥାଏ ଆମର ସମ୍ବଳ ।

ଦିନେ ଆମ କ୍ଲାସ ରୁମ୍‌ରେ ଟେବୁଲ ଉପରେ ଚିତ୍‌ପଟାଙ୍ଗ ହୋଇ ମୁଁ ଶୋଇଯାଇଥାଏଁ, ହଠାତ୍ କବାଟ ଖୋଲିଗଲା—ମୋ ନିଦ ଭାଙ୍ଗିଗଲା । ଦେଖିଲାବେଳକୁ ସାର୍···'କ'ଣ ଦାମ, ଏଠି ଶୋଇଛ ?' ନିଦ ବାଉଳାରେ ଉଠିପଡ଼ିଲି—ପ୍ରଣାମ କଲି । 'ଏଠି ପରା ଓଡ଼ିଆ ଜ୍ଞାନକୋଷ ମିଟିଂ ଅଛି, ସେ କହିଲେ । 'ମିଟିଂ ପରେ ଟିକିଏ ଦେଖା କରିବ'—ବୋଲି ମତେ କହିଲେ ।

ମିଟିଂ ତ ସେଇ ରୁମ୍‌ରେ ହେବ । ସଙ୍ଗେ ସଙ୍ଗେ ମୁଁ ବାହାରି ଉଠାଇ ଲାଇବ୍ରେରୀ ଭିତରେ ପଶିଲି ।

ଇଆଭିତରେ ମିଟିଂ ସାରି ସାର୍ ଆସି ମୋତେ ଖୋଜି ଖୋଜି ଲାଇବ୍ରେରୀ ଭିତରେ ପହଞ୍ଚିଗଲେ । ସେ ମୋତେ ବାହାରକୁ ଡାକିନେଲେ । ପଚାରିଲେ—ତୁମେ କେଉଁଠି ରହୁଛ ? କ'ଣ କହିବି, ଖାଲି କହିଲି ଏଇଠି ଶୋଇପଡ଼ୁଛି । "ଏହିପରି କେତେଦିନ କରିବ ?" ସେ କହିଲେ । ମୁଁ ଆଉ କିଛି କହିଲି ନାହିଁ । ତାପରେ ସାର୍ ଆଉ କିଛି ନ କହି ଗୋଟିଏ ରିକ୍ସା ଡକାଇ ବସିଲେ । ମୋତେ କହିଲେ, 'ଆସ ବସ ।' ପୁଣି କହିଲେ—'ଯାଅ, ତମର ବେଡ଼ିଂ ପତ୍ର ନେଇଆସ ।'—ସାର୍ କୁଆଡ଼େ ଯିବ ? –"ଆମ ଘରକୁ ।" ସାର୍ କହିଲେ । ମୁଁ ମୂକଭଳି ଠିଆହୋଇ ରହିଲି । ସେ ପୁଣି ଥରେ ଡାକିଲେ ତାଙ୍କ ସଙ୍ଗରେ ଯିବା ପାଇଁ । ଜଣେ ଅବସରପ୍ରାପ୍ତ ପ୍ରଫେସର, ସେ ପୁଣି ଜ୍ଞାନର ପ୍ରତିମୂର୍ତ୍ତି, ସ୍ୱୟଂ ରତ୍ନାକର ପଣ୍ଡା । ତାଙ୍କ ରିକ୍ସାରେ ମୁଁ ଯିବି, ପୁଣି ବେଡ଼ିଂ ଟ୍ରଙ୍କ ନେଇ । ମନେ ଅଡୁଆ ଲାଗୁଥାଏ । ସେ କିନ୍ତୁ ନଛୋଡ଼ବନ୍ଧା । ରିକ୍ସା ଗଲା ତାଙ୍କ ଘରକୁ । ସେହି ଦିନଠାରୁ ତାଙ୍କ ଘରେ ରହିଲି । ମୋର ଏମ୍.ଏ. ଏବଂ ଆଇନ ପଢ଼ା ତାଙ୍କରି ଘରେ ଶେଷ ହେଲା । ଏହାହିଁ ମୋ ପକ୍ଷରେ ତାଙ୍କର ପ୍ରଥମ ଆଶୀର୍ବାଦ ।

ଆଜି ଏତିକି କଥା ମନେପଡ଼ିଲେ ପ୍ରାଣ ଉଦୁଳି ବିକଳ ହେଉଛି, ଛାତି ଫାଟିଯାଉଛି, ଆଖିରେ ଲୁହ ଜମା ହୋଇଯାଉଛି, କି ମହାମାନ୍ୟ ହୃଦୟବତ୍ତା, କି ଅନାବିଳ ସ୍ନେହ, କି ତ୍ୟାଗ ତାଙ୍କର । ପର ମନକଥା ବୁଝିବାରେ ସେ ଥିଲେ ଅତି ନିପୁଣ । ତାଙ୍କଭଳି ମହାନ୍ ହୃଦୟ କେତେଜଣଙ୍କର ଅଛି । ମୋତେ ହଠାତ୍ ତାଙ୍କ ଘରେ ରହିବାପାଇଁ କହିବା ଏବଂ ସେଥିପାଇଁ ସମସ୍ତ ତ୍ୟାଗକୁ ବିନା ଦ୍ୱିଧାରେ ସ୍ୱୀକାର କରିନେବାର ଆଶୁ ସିଦ୍ଧାନ୍ତ କ'ଣ କମ୍ କଥା । କେତେଜଣ ଶିକ୍ଷକ ଆଜି ଏପରି କରିପାରୁଛନ୍ତି ?

ତାଙ୍କ ସମ୍ବନ୍ଧରେ ମୋର ଆଜି ବହୁ ହୃଦୟସ୍ପର୍ଶୀ ଘଟଣା ମନେ-ପଡ଼ୁଛି । ସେ ଚାଲିଗଲେ । କିନ୍ତୁ ବହୁ ଲୋକଙ୍କ ମନରେ ବହୁ ଅଲିଭା ସ୍ମୃତିର ଦାଗ ଚିରଦିନ ପାଇଁ ରଖିଗଲେ । ସେ ବହୁ ଲୋକଙ୍କୁ ମଣିଷ କରି ଗଢ଼ିଥିଲେ । ତାଙ୍କ ସାନିଧ୍ୟ ଯିଏ ପାଇଛି, ତାଙ୍କ ସମ୍ପର୍କରେ ଯିଏ ଆସିଛି ସେ ନିଶ୍ଚୟ ଏକ ଅଲଗା ମଣିଷ ହୋଇ ଗଢ଼ିଉଠିଛି ।

# ମହାଜୀବନ ଗାଥା

ସରଳା ଦେବୀ

ଏବେ ରାଜନୈତିକ ବ୍ୟକ୍ତିମାନଙ୍କ ଜୀବନ ଯେତେ ଲେଖାହେଉଛି, ସେହି ଅନୁପାତରେ ମହାନ୍ ବ୍ୟକ୍ତି ଧାର୍ମିକ, ନିରାସକ୍ତ ବ୍ୟକ୍ତିମାନଙ୍କ ଜୀବନକଥା ଲୋକ-ଗୋଚରୀଭୂତ ହେଉନାହିଁ । ଦେଶ ଓ ସମାଜର ନୈତିକ ଅଧୋଗତିର ଏହା ଏକ ବିଶିଷ୍ଟ କାରଣ ।

ଉତ୍କଳମଣି ଗୋପବନ୍ଧୁ ଓ ଉତ୍କଳଗୌରବ ମଧୁସୂଦନଙ୍କ ଜୀବନକଥା ଶିକ୍ଷିତ ଜନତା ଜାଣନ୍ତି କାରଣ ସେମାନେ ଉତ୍କଳର ଜାତୀୟ ଜୀବନ ଗଠନ କରିବାରେ ପ୍ରାଣ ଦେଇଛନ୍ତି । କିନ୍ତୁ ଆମେ ଆଜି ଯେଉଁ ବ୍ୟକ୍ତିଙ୍କ ସ୍ମରଣ କରୁଛୁଁ ସେ ସେହିପରି ଚିନ୍ତା ଓ କର୍ମରେ ଜୀବନଦେଇ କାର୍ଯ୍ୟକରି ଯାଇଛନ୍ତି । ତାଙ୍କର ସାଧନା ଏବଂ ପରୋପକାର ଚିନ୍ତା ଓ ନିଃସ୍ୱାର୍ଥପର ଜୀବନର ରୂପ ଏ ଯୁଗର ଲୋକେ ଅନୁଧ୍ୟାନ କରିବା ଉଚିତ ବୋଲି ଆମେ ତାଙ୍କୁ ସ୍ମରଣ କରୁଛୁଁ । ସେ ଚିରନମସ୍ୟ । ଶ୍ରୀ ରତ୍ନାକର ପତି ନିଜକୁ ନିଶ୍ଚିହ୍ନ କରି ଦେବାର ସାଧନା କରିଥିଲେ ।

ସେ ବିଂଶ ଶତାବ୍ଦୀର ବିଜୁଆତି ଲଗ୍ନରେ ଜନ୍ମହୋଇ ନ ଥିଲେ ବେ ଲି ତାଙ୍କ ଭିତରେ ପ୍ରାଚୀନ ଭାରତୀୟ ଜୀବନଯାପନ ସଂସ୍କୃତି, ସଦାଚାର, ଶ୍ରଦ୍ଧାଶୀଳ ନୈତିକ ସଭ୍ୟତା ମୂର୍ତ୍ତିମନ୍ତ ହୋଇଥିଲା । ସେ ତାଙ୍କର ବଂଶ ପରଂପରାକୁ ଅତ୍ୟନ୍ତ ଶ୍ରଦ୍ଧାର ସହିତ ପାଳନ କରୁଥିଲେ । ସେ ନିୟମିତ ସନ୍ଧ୍ୟା ଉପାସନା, ଗାୟତ୍ରୀ ସାବିତ୍ରୀ ଜପ ଧ୍ୟାନ, ଭଗବତ ସ୍ତୁତି ପ୍ରାର୍ଥନା କରୁଥିଲେ । ତାଙ୍କର ଅଧ୍ୟାୟନସ୍ପୃହା ଓ ଏଥିପାଇଁ କଷ୍ଟପୂର୍ଣ୍ଣ ଅଧ୍ୟବସାୟ ଓ ଜୀବନର କୃଚ୍ଛ୍ର ସାଧନା, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଲାଲବାହାଦୁର ଶାସ୍ତ୍ରୀ ପ୍ରଭୃତି ବ୍ୟକ୍ତିମାନଙ୍କ ଜୀବନ ସାଧନାର ପ୍ରତିଚ୍ଛବି ଭଳି ଜଣାଯାଏ । ସେ ବେଦପାଠ କରୁଥିଲେ । ଶିଶୁମାନଙ୍କ ପ୍ରତି ତାଙ୍କର ପ୍ରବଳ ସ୍ନେହ ଥିବାରୁ ସେ ପାଖରେ ବସାଇ ପାଠ ପଢ଼ାଉଥିଲେ । ଅତି ମନୋରଞ୍ଜକ ଭାବରେ ପିଲାଙ୍କୁ ବୁଝାଉଥିଲେ । ତେଣୁ ତାଙ୍କ ଗ୍ରାମର ପିଲାମାନଙ୍କର ପାଠଶାଳୀ ହୋଇଥିଲା ପତିଙ୍କ ଘର । ବିଭିନ୍ନ ଅଞ୍ଚଳରୁ ଗରିବ ଛାତ୍ରମାନେ ତାଙ୍କ ପାଖେ ପାଠ ପଢ଼ୁଥିଲେ ଓ ତାଙ୍କର ଘରେ ଖାଇପିଇ ମନୁଷ୍ୟ ହେଉଥିଲେ । ଯିଏ ଯେତେ ଭଲ ପଢ଼ୁଥିଲେ, ସେମାନଙ୍କୁ ପତି ପ୍ରାଣଦେଇ ଭଲ ପାଉଥିଲେ । ଏହି ଢଙ୍ଗ କଲେଜରେ ଅଧ୍ୟାପନା କଲାବେଳେ ତାଙ୍କଠି ଦେଖା ଯାଇଥିଲା । ଯେଉଁ ଛାତ୍ର ମେଧାବୀ,

ଶିକ୍ଷାଗ୍ରହୀ, ସେମାନଙ୍କୁ ସେ ଘରକୁ ଡକାଇ ବିଦ୍ୟା ବୁଝାଉଥିଲେ ଓ ଅତ୍ୟନ୍ତ ସ୍ନେହ କରୁଥିଲେ । ବୋଲି ବାତ୍ସଲ୍ୟ, ସେ କେବେ ପରୀକ୍ଷା ଖାତା ଦେଖି ପାଶ୍ ନମ୍ବର ବସାଇବାକୁ କି ପିଲାଙ୍କୁ ପଢ଼ାଇବାରେ ସାହାଯ୍ୟ କରିବାପାଇଁ ପଇସା ଲାଞ୍ଚ ନେଇ ନ ଥିଲେ । ସେ ବିଦ୍ୟା ବିକ୍ରି କରୁନଥିଲେ । ତେଣୁ ଟିଉସନ୍ କଥା ତାଙ୍କୁ ସ୍ପର୍ଶ କରିନଥିଲା । ବୈଦିକ ଯୁଗର ଗୁରୁଗୃହ ପରି ସେ ନିଜ ଗୃହକୁ ଶିକ୍ଷାପ୍ରତିଷ୍ଠାନରେ ପରିଣତ କରିଥିଲେ । ସେ ଶିଶୁଶିକ୍ଷା ପ୍ରଣାଳୀ ସମ୍ବନ୍ଧେ ଖଣ୍ଡିଏ ବହି ଲେଖିଥିଲେ । ପିଲାଙ୍କୁ ଉପଯୁକ୍ତ ମନୁଷ୍ୟ କରିବାପାଇଁ ତାଙ୍କର ସ୍ୱାର୍ଥ ତ୍ୟାଗର ସୀମା ନଥିଲା । ଦରମା ଯାହା ପାଉଥିଲେ, ନିଜର ସରଳ ନିରାଡ଼ମ୍ବର ସାତ୍ତ୍ୱିକ ନିରାମିଷ ଆହାର ଓ ଅତି ନିରାଡ଼ମ୍ବର ବସ୍ତ୍ର କିଣିବା ଛଡ଼ା ସବୁ ଟଙ୍କା ଗରିବମାନଙ୍କୁ ଦେଇ ଦେଉଥିଲେ । —ଠିକ୍ ଶ୍ୱଶୁର ଉତ୍କଳମଣି ଗୋପବନ୍ଧୁ ଓ ଉତ୍କଳଗୌରବ ମଧୁସୂଦନଙ୍କ ପରି ତାଙ୍କର ଦାନ ଅକୁଣ୍ଠ ଓ ନିଷ୍କାମ ଥିଲା । ନିଜ ଗ୍ରାମରେ ଓ ଅନ୍ୟ ଗ୍ରାମରେ ରାସ୍ତା ନ ଥିବାରୁ ସେ ଜମିଦାରଙ୍କୁ ରାସ୍ତା ଦେବାପାଇଁ ପ୍ରବର୍ତ୍ତାଇ ଥିଲେ । ମାତ୍ର ତାଙ୍କ ଅନୁରୋଧ ଜମିଦାର ପ୍ରତ୍ୟାଖ୍ୟାନ କରିବାରୁ ସେ କୋର୍ଟରେ ଲୋକମାନଙ୍କ ପ୍ରତିନିଧିତ୍ୱ କରି ମକଦ୍ଦମା କରି ଜିଣିଥିଲେ ଓ ଲୋକେ ଉପକୃତ ହୋଇଥିଲେ । ଏହି ମକଦ୍ଦମାର ସମସ୍ତ ଖରଚ ଓ ଅସୁବିଧା ତାଙ୍କୁହିଁ ବହନ କରିବାକୁ ପଡ଼ିଥିଲା । ଅବଶ୍ୟ ଗ୍ରାମବାସୀ ତାଙ୍କର ସହାୟକ ଥିଲେ । ସେ ଗୁ’ ବିଡ଼ି ସିଗାରେଟ ଖାଉ ନଥିଲେ । ସେ ସର୍ବଦା ଅଧ୍ୟୟନ ଅଧ୍ୟାପନା ଓ ପୁସ୍ତକ ଲିଖନରେ ରତ ଥିବାରୁ ନିଜର ଗୃହ ଜଞ୍ଜାଳ ବୁଝୁ ନ ଥିଲେ । ପୂଜା ଉପାସନା, ଭଗବତ ଭଜନ ସ୍ମରଣ ତାଙ୍କ ଜୀବନକୁ ଋଷିକଳ୍ପ କରିଥିଲା । ପୁସ୍ତକ ତାଙ୍କର ସାଥି ଥିଲା । ଗୃହଜଞ୍ଜାଳ ସମ୍ଭାଳିବାରେ ତ୍ରୁଟି ବିଚ୍ୟୁତି ହେବାରୁ ଯେଉଁ ପ୍ରତିକ୍ରିୟା ତାଙ୍କ ମନରେ ହେଉଥିଲା, ତାହା ତାଙ୍କ ସ୍ତ୍ରୀଙ୍କୁ ନୀରବରେ ସହ୍ୟ କରିବାକୁ ହେଉଥିଲା । ତାଙ୍କୁ କେବେ କର୍ତ୍ତବ୍ୟର ଅବହେଳା କରିବାର ଦେଖାଯାଇ ନାହିଁ । ସରକାରୀ ଅର୍ଥ ବିନିମୟରେ, ସେ ସର୍ବଦା ଦାୟିତ୍ୱସମ୍ପନ୍ନ, ସାଧୁ, ସଚ୍ଚରିତ୍ର, ଶୃଙ୍ଖଳିତ ସଞ୍ଜମୀ ଜୀବନର ଧାରା ସମ୍ବନ୍ଧେ ସଚେତନ ଥିବାରୁ କେବେ ନିନ୍ଦନୀୟ ହୋଇ ନଥିଲେ । ସେ ଅତ୍ୟନ୍ତ ସ୍ୱାଧୀନତାପ୍ରିୟ ଥିଲେ । ମାତ୍ର ସାଂସ୍କୃତିକ ନୈତିକ ଜୀବନ ଧାରାକୁ ତାଙ୍କର ସ୍ୱାଧୀନ ମନୋବୃତ୍ତି କଦାପି ଅତିକ୍ରମ କରି ନଥିଲା । ଆଧୁନିକ ଯୁଗର ନାରୀଶିକ୍ଷାର ବିରୋଧିତା ସେ କରୁନଥିଲେ କିନ୍ତୁ ସେହି ଶିକ୍ଷା ଫଳରୁ ଯେ କର୍ତ୍ତବ୍ୟ ଅବହେଳା,

ଗ୍ରମ ବିମୁଖ, ସହଜିଆ ଜୀବନ ନାରୀଙ୍କୁ ଅନୁସରଣ କରିବାକୁ ପଡ଼ୁଥିଲା ଓ ନାରୀ ସ୍କୁଲରେ, ଅଫିସରେ ଚାକିରୀ କରିବାକୁ ପଡୁଥିଲା, ତାହା ସେ ପସନ୍ଦ କରୁନଥିଲେ । ତାଙ୍କର ହୃଦୟ ପୁଷ୍ପପରି କୋମଳ ଥିଲା । ମାତ୍ର ତାହା ସେ ପ୍ରକାଶ କରୁନଥିଲେ । ଶିଷ୍ଟ, ଦୁଷ୍ଟ ସବୁ ଶ୍ରେଣୀର ଲୋକଙ୍କ ସହିତ ସେ ଅବାରିତ ଭାବରେ ମିଶି ସମସ୍ତଙ୍କ ବିପଦ ଆପଦରେ ସାହାଯ୍ୟ କରୁଥିଲେ—ବିନା ପ୍ରତ୍ୟାଶାରେ । ସେ ଅଶିଷ୍ଟ ଲୋକମାନଙ୍କ ସହିତ ମିଶୁଥିଲେ ।—ମାତ୍ର ନିଜର ଆତ୍ମରକ୍ଷା କରି ବନ୍ଧୁତା କରୁଥିଲେ । କଦାପି ଅଶିଷ୍ଟ ଲୋକମାନଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷରେ ସମାଲୋଚନା କରୁନଥିଲେ । ତେଣୁ ସେ ସମସ୍ତଙ୍କର ପ୍ରିୟ ଓ ଅଜାତ ଶତ୍ରୁ ଥିଲେ । ବାହାଦୁରୀ ଦେଖାଇବାକୁ ସେ ନିଜ ସ୍ୱାର୍ଥ ସାଧନପାଇଁ ନିଜର ବ୍ୟକ୍ତିତ୍ୱକୁ ଖର୍ବ କରି ମନ୍ତ୍ରୀ କି ହାକିମମାନଙ୍କୁ କେବେ ଖୁସାମତ କରିବାକୁ ଯାଉନଥିଲେ । ବିଶିଷ୍ଟ ଗୁଣ ତାଙ୍କର ବହୁତ ଥିଲା । ତାଙ୍କର ଶତ୍ରୁମାନଙ୍କୁ କ୍ଷମା କରିବା, ଦୟା କରିବା ଗୋଟିଏ ପ୍ରଧାନ ଗୁଣ ଥିଲା । ସେ ମୁହଁରେ ଗାଳି ଦେଇଥାନ୍ତି ମାତ୍ର ଅନ୍ତରରେ କ୍ରୋଧ କଣ୍ଟକର କେବେ ପ୍ରତିକ୍ରିୟା ନ ଥାଏ । ତାଙ୍କର ଆତ୍ମସମ୍ବରଣ କରିବାର ଅସୀମ କ୍ଷମତା ଥିଲା । ଏହା ଏ ଯୁଗର ଉତ୍ତେଜନା ବଶବର୍ତ୍ତୀ ଯୁବକମାନେ କଳନା କରିବା ଅସମ୍ଭବ ।

ସେ ତାଙ୍କର ଶିକ୍ଷକମାନଙ୍କୁ ପ୍ରଗାଢ଼ ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ବୃଦ୍ଧ ବୟସରେ ମଧ୍ୟ ଏହାର ତାରତମ୍ୟ ନଥିଲା । କେବଳ କି ସେ ନିଜ ଶିକ୍ଷକ ପରିବାରର ଲୋକମାନଙ୍କୁ ମଧ୍ୟ ସ୍ନେହ ଭକ୍ତି କରୁଥିଲେ । ଏ ଯୁଗରେ ନିତ୍ୟ ଅପମାନିତ ଲାଞ୍ଛିତ ଶିକ୍ଷକ ଅଧ୍ୟାପକମାନେ ନିଜ ନିଜର ଶିଷ୍ୟଙ୍କଠାରୁ ଏହା ଆଶା କରିବା ଅସମ୍ଭବ । ସେ ଇଂରେଜ ସରକାରୀ ଚାକିରୀ କରି ମଧ୍ୟ ଧୋତି କାମିଜ, ବେକବୁଜା କୋଟ, ପେଣ୍ଟ ପିନ୍ଧି ଚଳୁଥିଲେ । କେବେ ଟାଇ କଲର ମୋଜା ପିନ୍ଧୁନଥିଲେ ।

ତାଙ୍କର ପ୍ରବନ୍ଧ ଓ ଆଲୋଚନା ଅତି ଉଚ୍ଚକୋଟୀର । ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ଅର୍ଥଦେଇ ସମ୍ମାନିତ କରିଥିଲା; କିନ୍ତୁ ପ୍ରଶଂସାପତ୍ର ଦେଇଥିଲା । ତାଙ୍କର ବିବର୍ତ୍ତନବାଦ, ସ୍ୱପ୍ନ ତତ୍ତ୍ୱ ବହି ଦୁଇଖଣ୍ଡି ଓଡ଼ିଆ ସାହିତ୍ୟ ଏକାଡେମୀ ଗ୍ରହଣ କରିଛନ୍ତି ସତ୍ୟ, ମାତ୍ର ତାଙ୍କର ଅନ୍ୟ ଗ୍ରନ୍ଥ ଓ ପ୍ରବନ୍ଧାବଳୀ ଇତ୍ୟାଦି ରତ୍ନାକର ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କଲେ ମୃତଙ୍କ ପ୍ରତି ଓଡ଼ିଶା ସରକାର ଓ ଉତ୍କଳ ସାହିତ୍ୟ ଏକାଡେମୀ ଯଥାର୍ଥ

କର୍ତ୍ତବ୍ୟ କରିବେ ବୋଲି ଆଶା । ତାଙ୍କର ପ୍ରବନ୍ଧ ବିଶ୍ୱବିଦ୍ୟାଳୟର ପାଠ୍ୟରୂପେ ନିର୍ବାଚିତ ହେବା ବିଧେୟ ।

ଉତ୍କଳ ସାହିତ୍ୟ ସମାଜରେ ପଣ୍ଡିତ ମହାଶୟ ବହୁକାଳ ସଭାପତି ଥିଲେ ଓ ମୁଁ ସମ୍ପାଦକ ଏବଂ ବିଚ୍ଛନ୍ଦ ପଟ୍ଟନାୟକ ସହକାରୀ ସମ୍ପାଦକ ଥିଲୁ । ତାଙ୍କର ଉତ୍ସାହରେ ମୁଁ ସାହିତ୍ୟ ସପ୍ତାହ ଅତି ସମାରୋହ ସହିତ କରାଇଥିଲି ଓ ଏକହଜାର ଟଙ୍କା ଉଠାଇ ଉତ୍କଳଗୌରବ ଲାଇବ୍ରେରୀପାଇଁ ବହି କିଣିଥିଲି । ଘର ମଧ୍ୟ ତୋଳାଇଥିଲି । କୌଣସି କାରଣରୁ ବିରକ୍ତ ହୋଇ ମୁଁ ସମ୍ପାଦକୀ ପଦରୁ ଇସ୍ତଫା ଦବାପାଇଁ ବସିବାରୁ ସେ କହିଲେ, "ମା' ଙ୍କୁ ଛାଡ଼ିଗଲେ ମୁଁ ଚାଲିଯିବି । ଏ କାମ ଆରମ୍ଭ କରି ତୁ ନ ତୁଲାଇଲେ ମୁଁ ପାରିବି ନାହିଁ ।" ତାଙ୍କୁ ଆମେ ସମସ୍ତେ ଡରୁଥିଲୁ ଓ ଭକ୍ତି କରୁଥିଲୁ, ତେଣୁ ମୁଁ ତାଙ୍କୁ ଏଡ଼ିଦେଇ ଇସ୍ତଫା ଦେଇ ନଥିଲି । ସେ ବଡ଼ ବିନୟୀ ମାତ୍ର ବଡ଼ ଦୃଢ଼ସଂକଳ୍ପ ଥିଲେ । ସେ ଜୀବନକୁ ନିଷ୍କାମ କର୍ମଯୋଗରେ ପରିଣତ କରିଥିଲେ । କର୍ମର ଅଭ୍ୟାସ ପାଠାଭ୍ୟାସ ତାଙ୍କୁ ଅଭ୍ୟାସ ଯୋଗୀରେ ପରିଣତ କରାଇଥିଲା । ନିୟମାନୁବର୍ତ୍ତିତା ଏକ କେନ୍ଦ୍ରିକ ଚିତ୍ତ ଓ ବୁଦ୍ଧିର ଅଧ୍ୟବସାୟ ତାଙ୍କ ଜୀବନକୁ ମହୀୟାନ୍, ଗରୀୟାନ କରିଥିଲା ।

ତାଙ୍କ ମୃତ୍ୟୁର କିଛିଦିନ ଆଗରୁ ରୋଗ ଶଯ୍ୟାଶାୟୀ ଥିବା ଅବସ୍ଥାରେ ମୁଁ ତାଙ୍କର ଶେଷଦର୍ଶନ ପାଇଥିଲି । ସ୍ତିମିତ ଆଲୋକ ରେଖାରେ ତାଙ୍କର ମୁଖ କ୍ଲାନ୍ତ ପାଣ୍ଡୁର ଦିଶୁଥିଲା । ଝିଅ ପ୍ରଭା କହିଲା, ସରଳା ଦେଈ ମାଉସୀ ଆପଣଙ୍କୁ ଦେଖିବାକୁ ଆସିଛନ୍ତି । ପଣ୍ଡିତ ମହାଶୟ ସେହି ଅବସ୍ଥାରେ ଶଯ୍ୟାରୁ ଉଠିବସି ମତେ ଚଉକି ଦେବାକୁ ପ୍ରଭାମୟୀଙ୍କୁ କହିଲେ । ମୁଁ ପାନ ଖାଏ ବୋଲି ବୋହୂକୁ ଗୁହା ପାନ ଦବାକୁ କହିଲେ । ସଂକୋଚରେ ମୋର ମୁଣ୍ଡ ନଇଁଗଲା । ଏ ଅବସ୍ଥାରେ ଅତିଥିଚର୍ଯ୍ୟା---ତାଙ୍କ ଆତ୍ମାର ସଚେତନ ଭାସ୍ୱରତା ଅନୁଭବ କରି ନିଜର କ୍ଷୁଦ୍ରତାକୁ ମାପିବାକୁ ଲାଗିଲି । ତାଙ୍କର ସହଜଶାଳୀନତା ସଂସ୍କୃତିସଂପନ୍ନ, ମଧୁର ବିନୟ ବ୍ୟବହାର, ଅହମିକାଶୂନ୍ୟ ଆତ୍ମୀୟତା – ଅମାୟିକତା, ସମଦର୍ଶିତା ପାଶୋରିବାର ନୁହେଁ । ସେ ଯଥାର୍ଥରେ ଲୋକଗୁରୁ—ଋଷିତୁଲ୍ୟ ନିର୍ବିକାର, ବ୍ରହ୍ମଦର୍ଶୀ ମହାମନୀଷୀ । ଓଡ଼ିଶା—ଓଡ଼ିଆ ଏ ଯୁଗରେ ତାଙ୍କର ବ୍ୟକ୍ତିତ୍ୱର ମାହାତ୍ମ୍ୟ ଭୁଲି ପାରିବ ନାହିଁ ।

———

# ତାଙ୍କ ସହ କେତୋଟି ମୁହୂର୍ତ୍ତ

ଶ୍ରୀ ପତିତପାବନ ନାୟକ, ବାଣୀବିହାର
( ପୁରାତନ ଛାତ୍ର, ବରିବାଟି ହାଇସ୍କୁଲ )

ଦାରିଦ୍ର୍ୟର କଶାଘାତ ଯେ ଅନ୍ତର୍ନିହିତ ମେଧାକୁ ସାମାନ୍ୟତମ ଦଳନ କରିପାରେ ନାହିଁ—ଏହି ସତ୍ୟ ଯେଉଁମାନଙ୍କ ଜୀବନରେ ପ୍ରତିପାଦିତ ହୋଇଛି, ସ୍ୱର୍ଗତଃ ଅଧ୍ୟାପକ ରତ୍ନାକର ପତି ସେମାନଙ୍କ ମଧ୍ୟରେ ଅନ୍ୟତମ । କେତୋଟି ଘଟଣା ଏବେ ମଧ୍ୟ ମୋର ସ୍ମୃତିପଟରେ ଜାଗ୍ରତ ରହିଛି । ଆମ ଶ୍ରେଣୀରେ ମୁଁ ସର୍ବଦା ପ୍ରଥମ ହେଉଥିଲି ବୋଲି ତାଙ୍କର ମୋ'ପ୍ରତି ବିଶେଷ ସ୍ନେହ ଥିଲା ।

## ପେନ୍‌ସିଲ କଣିବୁ

ମୋର ସପ୍ତମ ଶ୍ରେଣୀ ହୋଇଥାଏ । ସେତେବେଳେ ବର୍ତ୍ତମାନ ପରି ଚତୁର୍ଥ ଶ୍ରେଣୀରୁ ଇଂରାଜୀ ପଠନ ଓ ପରୀକ୍ଷା ହେଉ ନ ଥାଏ । ଚତୁର୍ଥ ଏବଂ ପଞ୍ଚମ ଶ୍ରେଣୀ ମାନଙ୍କରେ ଇଂରାଜୀ ବିଷୟରେ ଛାତ୍ରମାନଙ୍କୁ ପ୍ରାଥମିକ ଜ୍ଞାନ ଦିଆଯାଉ ଥାଏ, କିନ୍ତୁ ସେଥିପ୍ରତି ବିଶେଷ ଜୋର ଦିଆଯାଉ ନ ଥାଏ ବା ବର୍ଷ ଶେଷରେ ଇଂରାଜୀ ପରୀକ୍ଷା ହେଉ ନ ଥାଏ, ଇଂରାଜୀ ପରୀକ୍ଷା ଆରମ୍ଭ ହେଉଥାଏ ଷଷ୍ଠ ଶ୍ରେଣୀରୁ । ସପ୍ତମ ଶ୍ରେଣୀରେ ତିନୋଟି ସ୍କୁଲର ସାଧାରଣ ପରୀକ୍ଷା ହେଉଥାଏ ଶିଦ୍ଧେଶ୍ୱରପୁରର ଗୋପାଳ ସ୍ମୃତି ବିଦ୍ୟାପୀଠରେ । ଇଂରାଜୀରେ ସ୍ୱଳ୍ପ ଜ୍ଞାନ ଯୋଗୁ ସେହି ପରୀକ୍ଷାରେ ବହୁ ଛାତ୍ର ଅକୃତକାର୍ଯ୍ୟ ହେଉଥିଲେ । ତେଣୁ ପିଲାମାନେ କିପରି ଇଂରାଜୀରେ ଯଥେଷ୍ଟ ଜ୍ଞାନ ଅର୍ଜନ କରିବେ, ସେଥିପାଇଁ ଅଧ୍ୟାପକ ପତି ବିଶେଷ ଚେଷ୍ଟିତ ଥିଲେ ଏବଂ ସାମୟିକ ସ୍କୁଲ ପରିଦର୍ଶନ ସମୟରେ ପିଲାମାନଙ୍କୁ ଇଂରାଜୀ ପ୍ରଶ୍ନ ପଚାରୁଥିଲେ । ସେଦିନ ଗୋଟିଏ ପ୍ରଶ୍ନ ପଚାରି ସେ କହିଲେ, 'Raise your hands" ଖୁବ୍ କମ୍ ଯେଉଁ କେତେ ଜଣ ପିଲା ହାତ ଟେକିଲେ ସେମାନଙ୍କ ଭିତରେ ମୁଁ ଥିଲି । ପ୍ରଶ୍ନଟା ମୋ ଉପରକୁ ଆସିବା ପୂର୍ବରୁ ଆଉ ଜଣେ ପିଲା ତା'ର ଉତ୍ତର ଦେଇଦେଲା । ତା'ପରେ ତାଙ୍କର ପ୍ରଶ୍ନ ହେଲା Spell the word 'Raise' ଏଥରକ କିନ୍ତୁ ମାତ୍ର ଦୁଇଟି ହାତ ଉଠିଲା । ପ୍ରଥମ ଜଣକ ଭୁଲକରି ବନାନ କଲେ । ତା'ପରେ ପଡ଼ିଲା ମୋ' ପାଳି । ମୁଁ ଠିକ୍ କରି ବନାନ କରି ଦେବାରୁ ସେ ଅତ୍ୟନ୍ତ ଖୁସି ହୋଇଗଲେ ଏବଂ ପକେଟରୁ ଟଙ୍କାଟିଏ କାଢ଼ି ମୋତେ ଦେଇ କହିଲେ, "ପେନ୍‌ସିଲ କଣିବୁ ।"

## ଅନୁବାଦ କର

ହାଇସ୍କୁଲରେ ପଢ଼ିଲାବେଳେ ଥରେ ଆମେ କେତେ ଜଣ ପିଲା ସରସ୍ୱତୀ ପୂଜା ନିମନ୍ତ୍ରଣପତ୍ର ନେଇ ତାଙ୍କ ପାଖକୁ ଯାଇଥିଲୁ । ଆମଠାରୁ

ନିମନ୍ତ୍ରଣ ପତ୍ରଟି ନେଇ ସେ ଥରେ ତା' ଉପରେ ଆଖି ବୁଲାଇ ଆଣିଲେ ଏବଂ ସଙ୍ଗେ ସଙ୍ଗେ କାର୍ଡଟା ଆମ ଆଡ଼କୁ ବଢ଼ାଇଦେଇ କହିଲେ. **Translate it into English** ଆମେ ଚେଷ୍ଟା କଲୁ, କିନ୍ତୁ କେହି ସମ୍ପୂର୍ଣ୍ଣ ସମର୍ଥ ହୋଇ ପାରିଲୁ ନାହିଁ । ତା'ପରେ ସେ ନିଜେ ତା'ର ଅନୁବାଦ କରି ଆମକୁ କହିଲେ ।

## ନମସ୍କାର ନକରି…

ପ୍ରତି ଥର ସେ ସ୍କୁଲ ପରିଦର୍ଶନ କଲାବେଳେ ସ୍କୁଲ ହଷ୍ଟେଲକୁ ଯାଆନ୍ତି ଏବଂ ପିଲାମାନଙ୍କ ସୁବିଧା ଅସୁବିଧା ବୁଝନ୍ତି । ସେଥର ହଠାତ୍ ଆମ ରୁମ୍ ଭିତରକୁ ପଶି ଆସିଲେ ଓ ପଚାରିଲେ "କ'ଣ ସବୁ କରୁଛ ?" ଆମେ ଠିଆ ହୋଇପଡ଼ି ନମସ୍କାର କଲୁ, ସେ ପ୍ରତି ନମସ୍କାର କରି କହିଲେ, "ମୋତେ ନମସ୍କାର ନ କରି ଯଦି ତୁମେମାନେ ସମସ୍ତେ ଭଲ ପଢ଼ନ୍ତ ତା ହେଲେ ମୁଁ ଆହୁରି ଖୁସି ହୁଅନ୍ତି । କିନ୍ତୁ ଭଲ ନ ପଢ଼ି ଖାଲି ନମସ୍କାର କଲେ ତା'ର ମୂଲ୍ୟ କ'ଣ ?"

## ସଂଘ ଓ ମେଳ

ସେ ଦିନ ଥିଲା ୧୯୬୪ ମସିହା ଜାନୁୟାରୀ ମାସ ୧୦ ତାରିଖ । ସ୍କୁଲର ଛାତ୍ରସଂଘର ପ୍ରଥମ ବାର୍ଷିକ ଉତ୍ସବ ପାଳିତ ହେଉଥାଏ । ଅଧ୍ୟାପକ ପତି ସେଥିର ପ୍ରଧାନ ଅତିଥି ଥାଆନ୍ତି । ଆମର ସେତେବେଳେ ଏକାଦଶ ଶ୍ରେଣୀ । ମୁଁ ଛାତ୍ରସଂଘର ପ୍ରଥମ ସାଧାରଣ ସମ୍ପାଦକ ଥିଲି । ଅଧ୍ୟାପକ ପତି ସେ ଦିନ ତାଙ୍କର ଭାଷଣ ପ୍ରସଙ୍ଗରେ ଯାହା କହିଥିଲେ ତାହା ଏବେ ମଧ୍ୟ ମୋର ପରିଷ୍କାର ମନେ ଅଛି । ତାଙ୍କ ଭାଷଣର ପ୍ରଥମ ବାକ୍ୟ ଥିଲା, "ଏ ଛାତ୍ରସଂଘର ବ୍ୟବହୃତ 'ସଂଘ' ଶବ୍ଦର ଅର୍ଥ 'ମେଳ' ନୁହେଁ ।" ସେ କହିଥିଲେ ଯେ, ଛାତ୍ରସଂଘ ସମ୍ପୂର୍ଣ୍ଣଭାବରେ ଏକ ସାଂସ୍କୃତିକ ଅନୁଷ୍ଠାନ । ତାହାର ପ୍ରଧାନ ଉଦ୍ଦେଶ୍ୟ ସଙ୍ଘବଦ୍ଧଭାବରେ ପରସ୍ପରର କଲ୍ୟାଣସାଧନ । 'ମେଳ'ର ଅର୍ଥ ହେଉଛି କୌଣସି ବିଷୟର ବିବେଚନା ନ କରି ଯାହା ମନକୁ ଆଇଲା ତାହା ଭଲ ହେଉ ବା ମନ୍ଦ ହେଉ ସମସ୍ତ ଶକ୍ତିପ୍ରୟୋଗ କରି ସାଧନ କରିବା । ସେଥିପାଇଁ ସେ ଆମକୁ ଉପଦେଶ ଦେଉଥିଲେ ଛାତ୍ରସଂଘକୁ ଗୋଟିଏ ମେଳରେ ପରିଣତ ହେବାକୁ ନ ଦେବାପାଇଁ । ତାଙ୍କର ସେହି ମନ୍ତବ୍ୟ କଲେଜ ୟୁନିୟନମାନଙ୍କ ପ୍ରତି କେତେଦୂର ପ୍ରଯୁଜ୍ୟ ତାହା ଆଜି ହିଁ ହୃଦୟଙ୍ଗମ କରୁଛି ।

---

# ରତ୍ନାକର ପତିଙ୍କ
# ବାର୍ଷିକ ଶ୍ରାଦ୍ଧ ଉପଲକ୍ଷେ

ରେଭେନ୍‌ସା କଲେଜର ଦର୍ଶନ ଅଧ୍ୟାପକ ହିସାବରେ ସ୍ୱର୍ଗତଃ ରତ୍ନାକର ପତି ଥିଲେ ମୋର ଗୁରୁ ଏବଂ ସାମାଜିକ ସଂପର୍କ ହିସାବରେ ସେ ଥିଲେ ମୋର ଶ୍ୱଶୁର । ତାଙ୍କର ଏକମାତ୍ର କନ୍ୟା ବଶିଷ୍ଠ ସମାଜ-ସେବୀ ଶ୍ରୀମତୀ ପ୍ରଭାମୟୀ ଦେବୀ ମୋର ଅଗ୍ରଜ ପିତୃଷୀ ପୁଅ ଭାଇ ଶ୍ରୀଯୁକ୍ତ ନବକୁମାର ଦାଶ (ସରକାରୀ ଓକିଲ)ଙ୍କର ଧର୍ମପତ୍ନୀ । ଏଇ ସମ୍ବନ୍ଧ ଆରମ୍ଭ ହୁଏ ୧୯୪୧ ମସିହାରେ । ସେତେବେଳକୁ ମୁଁ ପଢ଼ୁଥାଏ ରେଭେନ୍‌ସା କଲେଜରେ । ସାମାଜିକ ବନ୍ଧୁତା ଦୃଷ୍ଟିରୁ ମୁଁ ଅନେକଥର ତାଙ୍କ ଘରକୁ ଯାଏ । ସେଇ ସୂତ୍ରରେ ମୋର ତାଙ୍କ ସଙ୍ଗରେ ପରିଚୟ, ଆଳାପ ଓ ଆଳାପରୁ ଘନିଷ୍ଠତା ଗଢ଼ିଉଠେ ।

ତାଙ୍କ ସାଙ୍ଗରେ ମୋର ବହୁତ ସମୟ ଧରି ଆଲୋଚନା ହୋଇଛି । ରାଜନୀତି, ଦର୍ଶନ, ଛାତ୍ରମାନଙ୍କର କର୍ତ୍ତବ୍ୟ ତଥା ସମାଜର ତତ୍କାଳୀନ ଅବସ୍ଥା ପ୍ରଭୃତି ବହୁ ବିଷୟ ନେଇ ସେ ଉପଦେଶ ଛଳରେ କହି ଯାଉଥିଲେ ଏବଂ ମୁଁ ଶୁଣିଯାଏ । ଆଲୋଚନା ସମସ୍ତ ତକ ଖୁବ୍ ଭଲ ଭାବରେ କହି-ଯାଏ । କଥାରେ କୌଣସି ବ୍ୟକ୍ତି ପ୍ରତି ଆକ୍ଷେପ ନ ଥାଏ । ଭାଷା ପ୍ରାଞ୍ଜଳ ଓ ଭାବ ଗର୍ଭକ ।

ତାଙ୍କ ସାଙ୍ଗରେ ଏଇ ଆଲୋଚନା ମୋର ପରବର୍ତ୍ତୀ ଜୀବନରେ ବେଶ୍ ପ୍ରଭାବ ପକେଇଥିଲା । ସବୁଠାରୁ ତାଙ୍କର ବଣବାଟି ଗ୍ରାମରୁ କାପଡ଼ କଟକ ଆସି ଛାତ୍ରଜୀବନ ଆରମ୍ଭ କରନ୍ତି ଏବଂ କୃତିତ୍ୱର ସହ ପରୀକ୍ଷାରେ ପାଶ କରନ୍ତି । ସେ ବିଷୟଟି ବେଶ୍ ଶିକ୍ଷଣୀୟ । ସେ କଷ୍ଟ, ସେ ସାଧନା କାହିଁ ଆଜି ତ କୌଣସି ଛାତ୍ର ଜୀବନରେ ଦେଖିବାକୁ ମିଳୁନାହିଁ ।

ଏତେ ସତ୍ତ୍ୱେ ତାଙ୍କଠାରେ କୌଣସି ଗର୍ବ କିମ୍ବା ଅହଙ୍କାରର ଲେଶ୍ ମାତ୍ର ଚିହ୍ନ ନ ଥିଲା ।

ଏଇତ କାଲି ସକାଳ ଭଳିଆ ମନେ ପଡ଼ୁଛି । ସେ କହନ୍ତି, ରାଜୁ, ଜୀବନ ଗହନବନ, ମାଡ଼ି ଯିବାକୁ ପଡ଼ିବ । ବ୍ୟସ୍ତ ହବାର କୌଣସି ଦରକାର ନାହିଁ । କାରଣ ସବୁର End ବା ଶେଷ ହେଲା ଧ୍ୱଂସ ।

ରତ୍ନାକର ବାବୁ ସ୍ୱରୂପତଃ ଥିଲେ ଆସ୍ତିକ । ଈଶ୍ୱରଙ୍କ ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ଯେଉଁମାନେ ଈଶ୍ୱରଙ୍କ ବିଷୟରେ ନାସ୍ତିକଭାବ ପୋଷଣ କରନ୍ତି ସେ ବିଷୟରେ ସେ କହିବାକୁ ଯାଇ କହନ୍ତି, ନାସ୍ତିକ ମାନେ ଯେତେ ଯୁକ୍ତି କରନ୍ତୁ ପଛକେ, କୌଣସି ସିଦ୍ଧାନ୍ତ ବା Conclusion ରେ ପହଞ୍ଚି ପାରିବେ ନାହିଁ । ମଣିଷକୁ ସବୁବେଳେ ଓ ସବୁକ୍ଷେତ୍ରରେ ଭଗବାନଙ୍କଠାରେ ପଦାର୍ପଣ କରି କର୍ଯ୍ୟ କରିବାକୁ ପଡ଼ିବ ।

ଦାର୍ଶନିକ, ପ୍ରବନ୍ଧ ଲେଖକ ହିସାବରେ ରତ୍ନାକର ବାବୁଙ୍କ ସ୍ଥାନ ଓଡ଼ିଆ ସାହିତ୍ୟରେ ସୁନିର୍ଦ୍ଦିଷ୍ଟ ଓ ସର୍ବବାଦୀ ସମ୍ମତ । "ଶାନ୍ତି ଅନୁପଲଭ୍ୟ ହେଲେହେଁ ଅନଭିଳଷ୍ୟ ନୁହେଁ" ଏଇ ବାକ୍ୟଟି ମୋର କର୍ଣ୍ଣରେ ଗଭୀର ରେଖାପାତ କରିଛି । ଏବେ ବି ମଧ୍ୟ ସେ କଥାଟି କାନରେ ପଡ଼ିଲେ ମୋତେ ଚମତ୍କାର ଲାଗେ ।

ତାଙ୍କର ବ୍ୟକ୍ତିଗତ ତଥା ପାରିବାରିକ ଜୀବନ ବଡ଼ ସରଳ ଥିଲା । ଆଡ଼ମ୍ବର ବା ଅହଙ୍କାର ଚିହ୍ନ ତାଙ୍କର ଦୈନ୍ୟନ୍ଦିନ ଜୀବନରେ ମୋଟେ ନଥିଲା କହିଲେ ଚଳେ । ମୋଟ ଉପରେ ତାଙ୍କର ବାହାର ଯେମିତି ଭିତର ମଧ୍ୟ ଥିଲା ସେମିତି ।

ଏଇଠି ଗୋଟିଏ କଥାକହି ମୋର ଲେଖା ଶେଷ କରୁଛି । ମୃତ୍ୟୁପରେ ତାଙ୍କର "ହେ ବିଶ୍ୱ" ବୋଲି ଯେଉଁ ଲେଖାଟି ସମାଜରେ ବାହାରିଥିଲା ତାକୁ ପଢ଼ିଲେ ରତ୍ନାକର ବାବୁଙ୍କର ଉନ୍ନତ ତଥା ମୌଳିକ ଚିନ୍ତାର ପରିଚୟ ମିଳେ । ଯେଉଁମାନେ ନ ପଢ଼ିଛନ୍ତି, ମୁଁ ସେମାନଙ୍କୁ ପଢ଼ିବାକୁ ଅନୁରୋଧ କରେ । ତାଙ୍କ ଆତ୍ମାର ସଦ୍‌ଗତି ହେଉ ।

ଜୟ ଜଗତ୍

ଶ୍ରୀରାଜକିଶୋର ଆଚାର୍ଯ୍ୟ
୩ । ୩ । ୭୦

# ତାଙ୍କ ସହିତ କେତୋଟି ବର୍ଷ

ଶ୍ରୀ ଘନଶ୍ୟାମ ଶତପଥୀ
ସହକାରୀ ଶିକ୍ଷକ,
ରତ୍ନାକର ବିଦ୍ୟାମନ୍ଦିର, କଟକ

୧୯୪୦ ମସିହାର କଥା । ଜାନୁଆରୀ ଆଠତାରିଖ । ସେଇଦିନ ମୁଁ ବରବାଟି ମିः ଇः ସ୍କୁଲରେ ଦ୍ୱିତୀୟ ଶିକ୍ଷକ ରୂପେ ଯୋଗ ଦେଲି । ସ୍କୁଲର ସଭାପତିଙ୍କ ସହ ସାକ୍ଷାତ କରିବା ପାଇଁ ଶ୍ରୀଯୁକ୍ତ ରତ୍ନାକର ପତିଙ୍କ ପାଖକୁ ଗଲି ।

ପତି ମହାଶୟ ସେତେବେଳେ କଟକ ରେଭେନ୍‌ସା କଲେଜରେ ଜର୍ମନ ଅଧ୍ୟାପକ ଥାଆନ୍ତି । ସ୍କୁଲ ପ୍ରତି ତାଙ୍କର ଏଡ଼େ ମମତା ଯେ, ଅବସର ପାଇବା ମାତ୍ରେ ଆସି ସ୍କୁଲ-କାର୍ଯ୍ୟ ପର୍ଯ୍ୟବେକ୍ଷଣ କରନ୍ତି । ଶ୍ରେଣୀ-ମାନଙ୍କରେ ଶିକ୍ଷକମାନଙ୍କର ଅଧ୍ୟାପନା ବିଶେଷଭାବରେ ତାଙ୍କ ଆଖିରେ ପଡ଼େ । ଦୋଷତ୍ରୁଟି ଦେଖିଲେ ସୁଧାରି ନେଉଥାନ୍ତି । ତାଙ୍କଠାରୁ ଦି'ପଦ ଶୁଣିବା ପାଇଁ ମୁଁ ଏବା କାହିଁକି ପ୍ରତ୍ୟେକ ଶିକ୍ଷକ ଉଦ୍‌ଗ୍ରୀବ ହୋଇ ରହିଥାନ୍ତି ।

ଅଧ୍ୟାପକ ପତି ମହାଶୟ ଥିଲେ ଜଣେ ଶୃଙ୍ଖଳାର ଗ୍ରାହକ । ସେ ଯେପରି ଗୁଣୀ ଏବଂ କର୍ମୀ ଥିଲେ ତାଙ୍କର ଅଧୀନସ୍ଥ ସହକର୍ମୀମାନେ ସେହିପରି ହୁଅନ୍ତୁ ଏହାହିଁ ତାଙ୍କର ଇଚ୍ଛା ଥିଲା ଏବଂ ସେହିପ୍ରକାରେ ସେମାନଙ୍କୁ ଗଢ଼ିବା ପାଇଁ ଆପ୍ରାଣ ଉଦ୍ୟମ କରି ସଫଳତା ମଧ୍ୟ ହାସଲ କରୁଥିଲେ ।

ବିଦ୍ୟାଳୟର ଫଳାଫଳ ସନ୍ତୋଷଜନକ ହେବାକୁ ଲାଗିଲା । ପ୍ରାୟ ପ୍ରତିବର୍ଷ ପିଲାମାନେ ଭଲ ସ୍ତରରେ ବୃତ୍ତି ପାଇଲେ । ଖେଳ, ଡ୍ରିଲ୍ ଏବଂ ବ୍ରତୀର କାମ ଉତ୍ତମରୂପେ କରାଗଲା । ଏସବୁ କାମ ତାଙ୍କ ପ୍ରାଣରେ ଅଧିକ ସନ୍ତୋଷ ଆଣିଦେଲା । କାରଣ ସେ କହୁଥିଲେ—ସନ୍ତୋଷ କଣ ? 'ଅନ୍ତରର ଅନ୍ତରକୁହିଁ ସନ୍ତୋଷ ବୋଲିଯାଏ । ଏହା ପ୍ରାଣ ପ୍ରାଚୁର୍ଯ୍ୟ—fullness of life' ଦିନେ ଦିନେ ରେଭେନ୍‌ସା କଲେଜରୁ କେତେଜଣ ସହକର୍ମୀ ଅଧ୍ୟାପକଙ୍କୁ ନେଇ ସ୍କୁଲରେ ହଠାତ୍ ପହଞ୍ଚିଯାନ୍ତି ଏବଂ ସ୍କୁଲକାର୍ଯ୍ୟ ଚାଲିଥିବାବେଳେ ପିଲାମାନଙ୍କୁ ଖେଳପଡ଼ିଆକୁ ନେଇ mass drill କରିବାକୁ କହନ୍ତି ।

ସେ ଥିଲେ ସ୍ୱାଧୀନ ଚେତା—ଭିକ୍ଷା ହାରି ସ୍କୁଲ କରିବେ ପଛକେ ପର ଦ୍ୱାରରେ ଗୋଡ଼ହାତଙ୍କ ଠିଆହେବାକୁ ତାଙ୍କୁ ସଙ୍କୋଚ ଲାଗୁଥିଲା ।

ତାଙ୍କର ଧାରଣା ଥିଲା ଗୋଠ ସଫା ଥିଲେ ଗାଈ ହମ୍ବାଳ ପଶିବ । ଅର୍ଥାତ୍ ସ୍କୁଲ-କାର୍ଯ୍ୟ ସନ୍ତୋଷଜନକ ହେଲେ ପିଲମାନେ ବହୁସଂଖ୍ୟାରେ ଆସିବେ ଏବଂ ସେଇମାନଙ୍କ ଦ୍ୱାରା ସ୍କୁଲ ଆପଣା ସ୍ୱୟଂ ସ୍ୱୟଂ ଗଢ଼ିଉଠିବ ।

ରତ୍ନାକର ବାବୁ ଥିଲେ ଭାରି ସମୟାନୁବର୍ତ୍ତୀ । ତାଙ୍କର ଗୋଟିଏ ପ୍ରବନ୍ଧରେ ସେ ସମୟକୁ ଅମୂଲ୍ୟଧନ ବୋଲି ଆଖ୍ୟା ଦେଇ ପିଲମାନଙ୍କୁ ସମୟର ଅପବ୍ୟବହାର ନ କରିବା ପାଇଁ ପରାମର୍ଶ ଦେଇଛନ୍ତି ।

୧୯୫୭ ଜୁଲାଇ ୧୧ ତାରିଖ । ସେଇଦିନ ବଡ଼ବାଟି ଠାରେ ଉଚ୍ଚ ବିଦ୍ୟାଳୟର ଶୁଭାରମ୍ଭ । ଅଷ୍ଟମ ଶ୍ରେଣୀ ପାଇଁ ଛାତ୍ର ଛାତ୍ରୀମାନଙ୍କର ଅଭାବ ନ ଥିଲା । ପ୍ରଥମ କରି ବିଦ୍ୟାଳୟଟିଏ ପ୍ରତିଷ୍ଠା କରିବାକୁ ହେଲେ ଅନେକ ପ୍ରତିବନ୍ଧକ ପଡ଼ିଥାଏ । ସେଗୁଡ଼ିକ ମଧ୍ୟରେ ଉପଯୁକ୍ତ ଶିକ୍ଷକ ନିଯୁକ୍ତି ସର୍ବପ୍ରଥମ । ରତ୍ନାକର ବାବୁ ସେଥିପାଇଁ ବିଶେଷ ଚିନ୍ତିତ ହୋଇ ନ ଥିଲେ । ହଠାତ୍ ତାଙ୍କର ଦୃଷ୍ଟି ଯାଇ କେତେଜଣ ଭଦ୍ର ବ୍ୟକ୍ତିଙ୍କ ଠାରେ ନଜର ପଡ଼ିଲା, ଯେଉଁମାନେ ଆପାତତଃ ସ୍କୁଲଟିକୁ ଆଗେଇନେଇ ପାରିବେ । ସେମାନଙ୍କ ମଧ୍ୟରେ ରଘୁନାଥପୁର (ମଥୁରା) ନିବାସୀ ଶ୍ରୀ ଶେଖ୍ ମନ୍ସୁର, ବି. ଏଲ୍ (ଆଜି ଇହଧାମରେ ନାହାନ୍ତି) ପ୍ରଧାନ ଶିକ୍ଷକ ଭାବରେ ସଫିପୁର ନିବାସୀ ଶ୍ରୀ ହରେକୃଷ୍ଣ ନାୟକ (ସେ ମହାଶୟ ମଧ୍ୟ ଜୀବିତ ନାହାନ୍ତି) ସହକାରୀ ଶିକ୍ଷକ ଏବଂ ସଂସ୍କୃତ ଅଧ୍ୟାପନା ପାଇଁ ତିରଣ ନିବାସୀ ପଣ୍ଡିତ ଶ୍ରୀ ଭୋଳାନାଥ ପତି ପ୍ରଭୃତି ।

ନୂତନ ବିଦ୍ୟାଳୟର ନିରୂପିତ କାର୍ଯ୍ୟକ୍ରମ ଆରମ୍ଭ ହେଲା । ପତି ମହାଶୟଙ୍କ ପ୍ରାଣରେ କି ଉନ୍ମାଦ ! ପ୍ରତି ଦୁଇ ତିନିଦିନ ଅନ୍ତରରେ ଥରେ ଆସି ସ୍କୁଲର ପ୍ରତ୍ୟେକ କାର୍ଯ୍ୟ ତନଖି କରି ନିଅନ୍ତି । ତାଙ୍କର ଶାରୀରିକ ଅବସ୍ଥା ଭଲ ନ ଥିଲେ ସୁଦ୍ଧା ମାନସିକ ଶକ୍ତି ଖୁବ୍ ପ୍ରଖର ଥିଲା । ବହୁ ସମୟ ଧରି ଧୈର୍ଯ୍ୟ ସହକାରେ ଅଥଚ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ସମସ୍ତ କାର୍ଯ୍ୟ ଶେଷ କରୁଥିଲେ ।

ବିଦ୍ୟାଳୟର ଅର୍ଥ ବ୍ୟବସ୍ଥା ପାଇଁ ଯୋଜନା କରାଗଲା— ଦଶଟଙ୍କିଆ, ପାଞ୍ଚଟଙ୍କିଆ, ଦୁଇଟଙ୍କିଆ ଏବଂ ପଚିଶିପଇସା । ଏତଦ୍ବ୍ୟତୀତ ଧାନକଟା ସମୟରେ ବିଲରୁ ଦାନ ଏବଂ ନଡ଼ା ସଂଗ୍ରହ । କେଉଁଦିନ କେଉଁ ଗ୍ରାମକୁ ଯିବାକୁ ହେବ ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥାଏ । ତଦନୁଯାୟୀ ଅଧ୍ୟାପକ ମହୋଦୟ ପୂର୍ବରୁ ସ୍କୁଲଠାରେ ପହଞ୍ଚିଥାନ୍ତି । କେତେଜଣ ଉତ୍ସାହୀ ଯୁବକ ସହଯାତ୍ରୀ । ଗୁଲୁଗୁଲୁବେଳେ କ୍ଳାନ୍ତି କି ଅବସାଦ ଆସେନାହିଁ ।

ପଣ୍ଡିତ ମହୋଦୟଙ୍କର ବିଭିନ୍ନ ବିଷୟର ଅବତାରଣା ସବୁ ହିଁ କରିଦିଏ । ତାଙ୍କର ଗଳ୍ପରେ ସତେ ଯେପରି ଉଦ୍ଦାମ ଯୌବନର ଭାବ ଫୁଟିଉଠୁଥାଏ । ଚାନ୍ଦା ସଂଗ୍ରହ କରୁ କରୁ କେବେ କେବେ ବହୁତ ବିଳମ୍ବ ମଧ୍ୟ ଘଟେ ଏବଂ ତାଙ୍କର ଖାଇବା ପିଇବା ଦିଗରେ ବହୁତ ବିଘ୍ନ ପଡୁଛି । ହେଲେ ସେ ସେଥିପ୍ରତି ଦୃକ୍‌ପାତ କରନ୍ତି ନାହିଁ ।

ଦେବାକୁ ଓ ମରିବାକୁ କେହି ସୁଖ ପାନ୍ତି ନାହିଁ —ଏହା ସମସ୍ତେ ଜାଣନ୍ତି । ଯେଉଁମାନେ ଅନୁଷ୍ଠାନ ପ୍ରତିଷ୍ଠାର ମହତ୍ତ୍ୱ ଉପଲବ୍ଧି କରିଛନ୍ତି ସେମାନେ ଯଥାଶକ୍ତି ଚାନ୍ଦା ଦେଇଥିଲେ ଏବଂ କେତେକ କୃପଣ ଲୋକ ଓ ଅଭାବଗ୍ରସ୍ତ ଲୋକଙ୍କ ଠାରୁ ଚାନ୍ଦା ମିଳିବା କଷ୍ଟକର ହୋଇ ପଡ଼ିଲା । 'ନିର୍ଦ୍ଧାରିତ ପରିମାଣର ଚାନ୍ଦା ନ ମିଳିଲେ ଶିକେମାତ୍ର ଘୁଞ୍ଚିବାକୁ ଦେବିନାହିଁ'—ଥିଲା ପଣ୍ଡିତ ମହାଶୟଙ୍କର ସଂକଳ୍ପ । ଅନେକ ସ୍ଥାନରେ ଗାଳିଗୁଲଜ ମଧ୍ୟ ଶୁଣିବାକୁ ପଡ଼ୁଛି; ମାତ୍ର ସେଥିପ୍ରତି ଭ୍ରୂକ୍ଷେପ ନାହିଁ— ବିଚଳିତ ମଧ୍ୟ ହୋଇନାହାନ୍ତି । ସେତୁବନ୍ଧ ନିର୍ମାଣ ବେଳେ ସାମାନ୍ୟ ଗୁଣ୍ଡୁଚି ମୂଷା ମଧ୍ୟ ସାହାଯ୍ୟ କରିଥିଲା । ପଞ୍ଚାୟତର ୧୫ଶହ ଘର ପ୍ରତ୍ୟେକେ ଗୋଟିଏ ଲେଖାଏଁ ଟଙ୍କା ଦେଲେ ଏକାବେଳକେ ଟ ୧୫୦୦ ସଂଗୃହୀତ ହୋଇପାରିବ । ପରର ଦ୍ୱାରସ୍ଥ ହେବା ଆବଶ୍ୟକତା କ'ଣ ଦରକାର ?

ଚାନ୍ଦା ଆଦାୟ କାର୍ଯ୍ୟ ଅନେକ ଦିନ ବ୍ୟାପୀ ଚାଲିଲା । ପଣ୍ଡିତ ମହାଶୟଙ୍କର ସହଯୋଗିତା ପ୍ରତ୍ୟେକ ଥରରେ ରହୁଥିଲା । ଶନିବାର ବା ରବିବାର ଦିନ ଯିବାକୁ ହୁଏ । କାର୍ଯ୍ୟବଶତଃ ଯଦି କୌଣସି ଦିନ ରତ୍ନାକର ବାବୁ ନ ପାରିଲେ ସେଦିନ ଚାନ୍ଦା ଆଦାୟ କାର୍ଯ୍ୟ ସ୍ଥଗିତ ରହୁଥିଲା । ବାଟରେ ଗଲାବେଳେ ନାନାପ୍ରକାର ହସ କୌତୁକ ଏବଂ ଉପଦେଶାତ୍ମକ ଗଳ୍ପ ସବୁ ଅବତାରଣା କରି ସହଯାତ୍ରୀ ମନରେ ଆନନ୍ଦ ଜାତ କରାଉଥିଲା ।

ବରିବାଟି ହାଇସ୍କୁଲ୍ ପ୍ରତିଷ୍ଠା ପରେ ଏ ଅଞ୍ଚଳ ଅଧିବାସୀ ଏକତ୍ରିତ ହୋଇ ଗୋଟିଏ ବୈଠକରେ ମିଳିତ ହେଲେ । ବିଷୟବସ୍ତୁ ଥିଲା ଯେ ଏହି ଅନୁଷ୍ଠାନର ନାମ ରତ୍ନାକର ବାବୁଙ୍କ ନାମରେ ନାମିତ କରି 'ରତ୍ନାକର ବିଦ୍ୟାମନ୍ଦିର' ରଖିବା । ଏ ପ୍ରସ୍ତାବ ଆଗତ ହେଲାକ୍ଷଣି ରତ୍ନାକର ବାବୁ ଅଗ୍ନିଶର୍ମା ହୋଇ ଉଠିଲେ ଏବଂ ତତ୍‌କ୍ଷଣାତ୍ ସ୍କୁଲ୍ ପରିତ୍ୟାଗ କରିବାକୁ ବସିଲେ ।

ଏଣେବାଟି ଆସିବାକୁ ହେଲେ ନିଜ ଗ୍ରାମ ତିଁରପା ଆସିବାକୁ ହୋଇଥାଏ । ବାଟରେ ଆସିଲାବେଳେ ପ୍ରତ୍ୟେକ ବ୍ୟକ୍ତି ଯେ ବାଟରେ ଦେଖାହୁଅନ୍ତି ତାଙ୍କର ଭଲମନ୍ଦ ପଚାରି ବୁଝନ୍ତି ଓ ଅସୁବିଧା ଦୂରୀକରଣ ପାଇଁ ସାହାଯ୍ୟ ମଧ୍ୟ କରନ୍ତି । ଗ୍ରାମର କଞ୍ଚକେଶ୍ୱରୀ ଓ ନୀଳକଣ୍ଠେଶ୍ୱର ମନ୍ଦିର ନିର୍ମାଣ ତାଙ୍କରି କୃତି । ଠାକୁରାଣୀଙ୍କ ଘର ଖଣ୍ଡିକ ଜୀର୍ଣ୍ଣାବସ୍ଥାକୁ ଆସିଗଲା ପରେ ଦିନେ ଆମ୍ଭମାନଙ୍କୁ ଡାକି ମନ୍ଦିର ନିର୍ମାଣ ବିଷୟରେ ଆଲୋଚନା କଲେ । ଗ୍ରାମରୁ ପ୍ରାପ୍ତ ଛଅହଜାର ଟଙ୍କା ସଂଗୃହୀତ ହେଲା – ତାଙ୍କର ଏଥିପାଇଁ ଦାନ ଖୁବ୍ ବେଶୀ । କାର୍ଯ୍ୟ ଆରମ୍ଭ ପରେ ଘନ ଘନ ତଦାରଖ କରୁଥାନ୍ତି ଏବଂ କେଉଁଠି କି ପ୍ରକାର କାମ ହେଲେ ଭଲହେବ ବିବାଦ କରୁଥାନ୍ତି । ତାଙ୍କ ତରଫରୁ ଚାପ ପଡ଼ି ନ ଥିଲେ ହୁଏତ ଏ କାର୍ଯ୍ୟ କେବେ ହୋଇପାରି ନ ଥାନ୍ତା ।

ସେ ଥିଲେ ବଡ଼ ଭକ୍ତିପରାୟଣ । ଜଣେ ନିଷ୍ଠାପର ହିନ୍ଦୁ ବ୍ରାହ୍ମଣ ହିସାବରେ ତାଙ୍କ ଠାରେ କୌଣସି ବ୍ୟତିକ୍ରମ ଲକ୍ଷ୍ୟ କରାଯାଉ ନ ଥିଲା । ଗ୍ରାମକୁ ଆସିଲାକ୍ଷଣି ଠାକୁରାଣୀଙ୍କ ପାଦ ପୀଠରେ ବିନମ୍ର ପ୍ରଣତି ଜଣାନ୍ତି । ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଓଡ଼ିଆରେ ଏବଂ ସଂସ୍କୃତରେ ସ୍ତୋତ୍ରମାନ ରଚନା କରି ଗ୍ରାମବାସୀଙ୍କୁ ଶୁଣାନ୍ତି ।

ଉହ୍ନାକର ବାବୁ ଥିଲେ ଦୁର୍ବାସାଙ୍କ ପରି କ୍ଷଣକୋପୀ । ଟିକିଏ ବ୍ୟତିକ୍ରମ ଦେଖିଲେ ଏତେ ରାଗିଯାଉଥିଲେ ଯେ କହିଲେ ନ ସରେ । ତାଙ୍କର ଇଚ୍ଛା ଥିଲା ସମସ୍ତେ ତାଙ୍କପରି କର୍ମଠ, ନିରଳସ ଏବଂ କାର୍ଯ୍ୟ-ତତ୍ପର ହୁଅନ୍ତୁ । ତାଙ୍କର ମନ, ବଚନ ଏବଂ କାର୍ଯ୍ୟକଳାପ ନିର୍ମଳ ଏବଂ ପବିତ୍ର ଥିଲା—କବି କହିଛନ୍ତି—

"ବଚନ ମନନ ଯାର ସତ୍ୟପୂତ ପୁଣି ସୁସଂଯତ,
ପ୍ରଶାନ୍ତ ଯାହାର ମନ ପୁଣ୍ୟକର୍ମ ସର୍ବଦା ନିରତ,
ଅଧର୍ମର ଭାବ ଯେହୁ ହୃଦୟରେ ନ ପୋଷଇ କ୍ଷଣେ,
ପବିତ୍ର ଜୀବନ ତାର ଧନ୍ୟ ଧନ୍ୟ ଏ ମର୍ତ୍ତ୍ୟ ଭୁବନେ ।"

ଉହ୍ନାକର ବାବୁଙ୍କର ଜୀବନ ପବିତ୍ର ଜୀବନ । ସେ ମରିଯାଇଥିଲେ ସୁଦ୍ଧା ତାଙ୍କର କାର୍ଯ୍ୟ ତାଙ୍କୁ ଚିରଦିନ ଅମର କରି ରଖିବ ।

———

# ରତ୍ନ ସ୍ମୃତି

ଡକ୍ଟର ମାୟାଧର ମାନସିଂହ

ସ୍ୱର୍ଗତଃ ଅଧ୍ୟାପକ ରତ୍ନାକର ପତିଙ୍କର ସହସ୍ର ଛାତ୍ରଙ୍କ ମଧ୍ୟରୁ ଏହି ଲେଖକ ଏକତମ । ଏହାର ବିଶେଷ ବ୍ୟଞ୍ଜନା ଅଛି ବୋଲି ମନେ ହୁଏ ନାହିଁ । କାରଣ ଆଜି କାଲିର ଛାତ୍ର ଅଧ୍ୟାପକ ସଂପର୍କ କେବଳ ବିଦ୍ୟାନୁଷ୍ଠାନର ଶ୍ରେଣୀ କକ୍ଷରେ ବଚନ ଶ୍ରବଣରୂପକ ଏକ ବାହ୍ୟ ବିଷୟ ମାତ୍ର । ସେଠି ଆତ୍ମାର ବିନିମୟ ନାହିଁ ଯାହା ଭାରତୀୟ ପରଂପରାରେ ଗୁରୁ-ଶିଷ୍ୟ ଭିତରେ ସଂପର୍କର ଆଦର୍ଶ । ଏହି ଲେଖକ ଅନ୍ୟ ସହସ୍ରଙ୍କ ପରି ଅଧ୍ୟାପନାକାରୀ ପତିଙ୍କି ତ ଜାଣିଥିଲି, କିନ୍ତୁ ଯାହାଯୋଗୁଁ ପ୍ରାଣର ଶ୍ରଦ୍ଧା ଆପେ ପ୍ରସାରିତ ହୋଇଯାଏ, ସେହି ଆତ୍ମବାନ 'ମନୁଷ୍ୟ' ପତିଙ୍କି ମଧ୍ୟ ସେ ଉତ୍ତମରୂପେ ଜାଣିଥିଲି । ସେହି ବିଶୁଦ୍ଧାତ୍ମା ପ୍ରତି ଶ୍ରଦ୍ଧା ନିବେଦନରୂପେ ଆଜି କେତୋଟି ମାନବିକତାପୂର୍ଣ୍ଣ ଅଭିଜ୍ଞତାକୁ ଏଠାରେ ଲିପିବଦ୍ଧ କରିଦେଉଛି ।

ଆଦ୍ୟରେ କହିରଖେ ଯେ ରେଭେନ୍‌ସା କଲେଜରେ ଛାତ୍ର ଥିବା ଭିତରେ ଯଦି କିଛି ଦଣ୍ଡ ଭୋଗିଛି ବୋଲି କୁହାଯାଇ ପାରେ ତେବେ ତାହା ମୁଁ ପାଇଥିଲି ଲେକଚରର ରତ୍ନାକର ପତିଙ୍କଠାରୁ । ସେ କାଳର ଆଇ·ଏ ଶ୍ରେଣୀରେ ସେ ଆମକୁ ଲଜିକ୍ ବା ତର୍କଶାସ୍ତ୍ର ପଢ଼ାଉଥିଲେ । କିନ୍ତୁ ତରୁଣ କବି ମାନସ, ତର୍କଶାସ୍ତ୍ରର ନୀରସତା ଓ ଶୁଷ୍କତା ଆଡ଼କୁ ଶ୍ରଦ୍ଧାନ୍ୱିତ ହେବ କିପରି ? ତେଣୁ ଆଇ·ଏ·ର ଦୁଇ ବର୍ଷ ଯାକ ଏହି ଅଧମ ଛାତ୍ରଟି ପତିଙ୍କ ଅନର୍ଗଳ ବଚନ ବିନ୍ୟାସ ପ୍ରତି ସାମାନ୍ୟତମ ମନଯୋଗ ନ ଦେଇ ଶ୍ରେଣୀ କକ୍ଷର ଏକ ଦୂରବର୍ତ୍ତୀ ଆସନରେ ସ୍ଥାନ ଗ୍ରହଣ କରି, ଅଧିକାଂଶ ଦିନ, ମୁଣ୍ଡ ପୋତି କେବଳ କବିତାହିଁ ଲେଖି ଚାଲିଥାଏ । ଯେତେଦୂର ମନେ ପଡ଼ୁଛି ସେ କାଳରେ ରଚିତ ଏହି ଲେଖକର ଅଧିକାଂଶ କବିତାର ଆରମ୍ଭ ବା ପରିଣତି, ହୁଏ ତ ଅଧ୍ୟାପକ ପତିଙ୍କ କ୍ଲାସରେ ।

ଦିନେ ଅଧ୍ୟାପକ ପତି ଲେଖକକୁ ଶ୍ରେଣୀରେ ବହୁକାଳ ଧରି ତଳକୁ ମୁଣ୍ଡ ପୋତି ରହିଥିବାର ଦେଖି ସର୍ବସମକ୍ଷରେ କେତେକ ମିନିଟକାଳ ଠିଆ ରହିବାକୁ ଆଦେଶ ଦେଇଥିଲେ । ମୁଁ ଠିଆ ହୋଇଥିଲି

ରେଭେନ୍‌ସାର ଛାତ୍ର ଜୀବନରେ ତାହା ହିଁ ବୋଧହୁଏ ଏହି ଲେଖକର ଏକମାତ୍ର ଦଣ୍ଡାନୁଭୂତି ।

ଏ ହେଲା ଅମନୋଯୋଗୀ ଛାତ୍ରଭାବରେ ଲେଖକର ଦଣ୍ଡଲାଭ । କିନ୍ତୁ ଏକ ସାମାନ୍ୟ କବି ଭାବରେ ଏ ରାଜ୍ୟରେ ଯେଉଁ ଦୁଇଟି ପରମ ସାର୍ଟିଫିକେଟର ଅଭିଜ୍ଞତା ଏହି ଲେଖକର ଜୀବନର ଘଟିଛି, ସେଥିରୁ ଗୋଟିଏ ଯେ ଏହି ଆପାତମଧୁରସପ୍ରାଣ କଠୋର ମିତବାକ୍‌ ତର୍କଶାସ୍ତ୍ରୀଙ୍କ-ଠାରୁ ହିଁ ମିଳିଛି, ତାହା ହୁଏତ ଅନେକ ପାଠକଙ୍କୁ ବିସ୍ମିତ କରି ପାରେ, ଯେପରି ତାହା ବିସ୍ମିତ କରିଥିଲା ସ୍ୱୟଂ ଏହି ଲେଖକକୁ ।

ରେଭେନ୍‌ସାରୁ ବିଦାୟ ନେବା ପରେ ଜୀବନ-ରଣର କ୍ଷତବିକ୍ଷତ ବର୍ଷଗୁଡ଼ିକ ସମାଗତ ହୋଇ ଚାଲିଲା । ତା ଭିତରେ ଗୁରୁଦେବ ପଣ୍ଡିତଙ୍କ ସହିତ ଆଉ ଦେଖା ସାକ୍ଷାତ ହୋଇପାରି ନ ଥିଲା । ହୁଏତ କୋଡ଼ିଏ ପଚିଶି ବର୍ଷପରେ ନିବେଦମଙ୍କ ବିବାହ ଭୋଜିପାଇଁ ନିମନ୍ତ୍ରଣ ପାଇଲି । ଗୁରୁଦେବଙ୍କ ସମ୍ମାନାର୍ଥେ ପଣ୍ଡିତଙ୍କ ବାସଭବନକୁ ଯାଇଥିଲି । ବହୁ ଲୋକର ସମାଗମ । ପଣ୍ଡିତ ନୀଳକଣ୍ଠ ଆମନ୍ତ୍ରିତମାନଙ୍କ ଭିତରେ ମଧ୍ୟବିନ୍ଦୁ ରୂପେ ବିରାଜିତ । ଭୋଜନ ବ୍ୟାପାର ସରିଲା । ଜନଗହଳିରୁ ଗୁରୁଦେବଙ୍କୁ ଖୋଜି ବ୍ୟକ୍ତିଗତ ବିଦାୟ ଓ ନିମନ୍ତ୍ରଣ ପାଇଁ ଧନ୍ୟବାଦ ଦେବାକୁ ଗଲି । ମୁଁ ଭାବିଥିଲି, ଏହା ଏକ ଆନୁଷ୍ଠାନିକ ବ୍ୟାପାର ମାତ୍ର ହେବ । କିନ୍ତୁ ଦେଖିଲି ଯେ, ଏହା ମୋ ପ୍ରତି ଏକ ଲଜ୍ଜାକର ଓ ସଙ୍କୋଚକ ବ୍ୟାପାର ହୋଇ ଉଠିଲା । ଗୁରୁଦେବ ଯେତେ ମୁଁ ଭୋଜି ଖାଇବାକୁ ଆସିଥିବାରୁ ଏବଂ ବହୁବର୍ଷ ପରେ ଦେଖା ଦେଇଥିବାରୁ ଗଦ୍‌ଗଦ୍‌ଭାବରେ ଏହି ଅଧମ ପ୍ରତି କୃତଜ୍ଞତା ଜଣାଇ ଲାଗିଲେ । କେବଳ ସେତିକି ନୁହେଁ ତାଙ୍କ ବାସଭବନର ଫାଟକ ଆଡ଼କୁ ମୁଁ ସଙ୍କୋଚରେ ଯେତିକି ଯେତିକି ପଳାୟନପର ହେଉଥାଏ ସେ ସେତିକି ସେତିକି ମୋ ପିଛା ଧରି ଚାଲିଲେ;—ଅନ୍ୟ ସକଳ ଆମନ୍ତ୍ରିତ ମାନଙ୍କୁ ପଛକୁ ପକାଇ ଦେଇ । ଶେଷରେ ଫାଟକ ପାଖରେ ଏହି ସଙ୍କୋଚଜନକ ଅବସ୍ଥାରୁ ସଦ୍ୟ ଉଦ୍ଧାର ପାଇବା ପାଇଁ ଓଲଟିପଡ଼ି ଯେତେବେଳେ ତାଙ୍କୁ ବିଦାୟର ନମସ୍କାର ଜଣାଇଲି •ସେ ଆଶୀର୍ବାଦ-ସହିତ କହିଲେ—"ତମର କବିତା ମୁଁ ବରାବର ପଢ଼େ । ସେଥିରୁ ମୁଁ ଆନନ୍ଦ ପାଏ; କାରଣ ସେଥିରେ ରସ ଅଛି ।"

ଫାଟକ ବାହାରକୁ ଆସିଯାନ୍ତେ ଏହି ଲେଖକର ସେହି ଅବସ୍ଥା ହେଲା, ଯାହା ରାଧାନାଥ ବର୍ଣ୍ଣନା କରିଛନ୍ତି ଚିଲିକାରେ—"ଅସିତା ବସୁନ୍ଧେ ହେଲା ନମଗନ ।"

ଆଶ୍ଚର୍ଯ୍ୟ ଘଟଣା ! ଏହି ଶୁଷ୍କ ନୀରସ, କଠୋର ମିତବାଦୀ, ତାର୍କିକ ଓ ଦାର୍ଶନିକ ଅଧ୍ୟାପକ ପୁଣି କବିତାର, ରସିକ-ଗ୍ରାହକ ହୋଇପାରନ୍ତି ! ଏତ କଳ୍ପନାତୀତ ବ୍ୟାପାର ! ଭାବିଲି, କବିତାର ବା ଏହି ଅଧମର, ସ୍ୱାଠ୍ ବଡ଼ ସାର୍ଟିଫିକେଟ ତ କଳ୍ପନା କରାଯାଇ ନ ପାରେ ।

ରତ୍ନାକରଙ୍କ ଆପାତକଠୋର ମିତବାଦୀ ଦେହ ତଳେ ଯେ ଉଷ୍ମ ମାନବିକତାର ପ୍ରବାହ ବୋହି ଚାଲିଥିଲା, ତାର ଅଭିଜ୍ଞତା ମଧ୍ୟ ଲେଖକ ଜୀବନରେହିଁ ପାଇ ସାରିଥିଲି । ସେହି ଘଟଣାଟି ଏଠି କହି ରଖେ ।

ଯେଉଁ ବର୍ଷ ଖୋର୍ଦ୍ଧା ହାଇସ୍କୁଲରୁ ଯେଉଁ ତିନି ଜଣ ବୃତ୍ତି ପାଇ ରେଭେନ୍‌ସାରେ ଯୋଗ ଦେଲୁ, ସେ ଭିତରେ, ନିମ୍ନତମ ଦଶଟଙ୍କିଆ ଜିଲ୍ଲା ବୃତ୍ତି ପାଇଥିଲେ ମୀନକେତନ ମହାପାତ୍ର । ସେ ଆଜି ନାହାନ୍ତି ବୋଲି ଶୁଣିଛୁ । ସେ ଭାରି ଗରିବ ପିଲା ଥିଲେ । ଶସ୍ତାକାଳ ହେଲେ ମଧ୍ୟ ଦଶଟଙ୍କାରେ ବା ଚଳନ୍ତେ କିପରି ? ତେଣୁ ସେ ମାଗିଯାଚି ଯାଉଥିଲେ । ଗରିବଛାତ୍ରଙ୍କୁ ସାମାନ୍ୟ ସାମାନ୍ୟ ସାହାଯ୍ୟ ଦେବାରେ ଅଧ୍ୟାପକ ପତିଙ୍କର ସୁନାମ ସମସ୍ତଙ୍କୁ ଜଣାଥିଲା । ମୀନକେତନ ଦୁଇଏକ ଦିନ ତାଙ୍କୁ ଯାଇ କିଛି ସାହାଯ୍ୟ ମାଗିଥିଲେ । ପତି ମୀନକେତନଙ୍କୁ ଅମୁକ ଦିନ ଏତେଟା ବେଳେ ତାଙ୍କ ଘରକୁ ପୁଣି ଆସିବାକୁ କହି ରଖିଥିଲେ । ସେ ତାରିଖ ଓ ସମସ୍ତ କଥା ମୀନକେତନ କିନ୍ତୁ ଭୁଲିଯାଇଥିଲେ । ଯେତେବେଳେ ତାଙ୍କର ଖିଆଲ ହେଲା, ସେ ତରତର ହୋଇ ତାଙ୍କର ପଶ୍ଚିମ ଛାତ୍ରାବାସର କକ୍ଷରୁ ପତିଙ୍କ ଘରକୁ ଯିବା ପାଇଁ ବାହାରିପଡ଼ନ୍ତେ ସ୍ୱୟଂ ଅଧ୍ୟାପକ ପତି ତେଣୁ ଆସୁଥିବାର ସେ ଦେଖିଲେ । ମୀନକେତନ ନିର୍ଦ୍ଦିଷ୍ଟ ସମୟରେ ନ ଯିବାରୁ ଅଧ୍ୟାପକ ପତି, ଇତିମଧ୍ୟରେ ତାଙ୍କ ଘର ପଶ୍ଚିମ ଛାତ୍ରାବାସକୁ ଆସି ଏବଂ ପିଲଙ୍କୁ ପଚାରି ପଚାରି, ତଳୁ ଉପରକୁ ମୀନକେତନଙ୍କୁ ତାଙ୍କର ନିଜ କକ୍ଷରେ ଭେଟିବାକୁ ଆସୁଥିଲେ । ସେ ବର୍ତ୍ତମାନ ମୀନକେତନଙ୍କୁ, ତାଙ୍କର ତ୍ରୁଟି ନେଇ ସାମାନ୍ୟ ଭର୍ତ୍ସନା ମଧ୍ୟ ନ କରି, ତାଙ୍କର ଯାହା ଦେବାର କଥା, ତାହା ବଢ଼ାଇ ଦେଇ ନୀରବରେ ପ୍ରତ୍ୟାବର୍ତ୍ତନ କଲେ ।

ଏହି ଘଟଣା ଲେଖକ ମୀନକେତନଙ୍କଠାରୁହିଁ ଶୁଣିଥିଲି । ଆଜି ଏ ଦେଶରେ ଏପରି ମାନବିକତା କଳ୍ପନାତୀତ ନୁହେଁ କି ?

ଗୃହାବସ୍ଥାର ବହୁକାଳ ପରେ, ଓଡ଼ିଆ ଜ୍ଞାନକୋଷ-ସଂକଳନ ସମ୍ପର୍କରେହିଁ ଶ୍ରୀ ପତିଙ୍କ ସହିତ, ଲେଖକର ସମ୍ପର୍କ ଘନିଷ୍ଠ ଅବସ୍ଥାକୁ ଆସିଥିଲା । ସେ ପରାମର୍ଶଦାତା-ସବ୍-କମିଟିର ଏକ ସଭ୍ୟ ଭାବରେ ପ୍ରାପ୍ତ ଜ୍ଞାନକୋଷ ଅଫିସକୁ ଆସନ୍ତି । ବରାବର ଠିକ୍ ନିର୍ଦ୍ଦିଷ୍ଟ ବେଳରେ, ବା କିଛିକାଳ ପୂର୍ବରୁ ଆସିଥାନ୍ତି । ତାଙ୍କୁ ବିଳମ୍ବରେ ଆସିବାର କେବେ ଦେଖିନାହିଁ କି କୌଣସି ମିଟିଂକୁ ସେ ନ ଆସିବାର ମଧ୍ୟ ମନେ ପଡ଼ୁନାହିଁ ବରଂ ଥରେ ଅନ୍ୟ ମେମ୍ବରମାନେ ନ ଆସିଥିବା ହେତୁ ଓ ବାହାରେ ଖରାଯୋଗୁଁ ଅଫିସରେ ତାଙ୍କୁ ବହୁଘଣ୍ଟା ଅଟକାଇ ରଖିଲୁ ଏବଂ ସେହି ଅବସରରେ ତାଙ୍କ ଜୀବନର ବହୁ ଅଭିଜ୍ଞତା ମୁଁ ପ୍ରଥମ କରି ଜାଣିବାକୁ ପାଇଥିଲି ।

ସେହିଦିନ ପ୍ରଥମ କରି ଜାଣିଲି ଯେ ପଣ୍ଡିତ ଗୋଦାବରୀଶ ତାଙ୍କ ଆତ୍ମଚରିତରେ ଗୋପବନ୍ଧୁ ତାଙ୍କ ପରି ଅନ୍ୟମାନଙ୍କୁ "ତ୍ୟାଗ" ଶିଖାଇ ନିଜ ଜୁଆଇଁ ( ରତ୍ନାକରପତି ) ଙ୍କର ସରକାରୀ ଚାକିରି ବ୍ୟବସ୍ଥା କରାଇ ଦେଲେ ବୋଲି ଯାହା ଲେଖିଛନ୍ତି, ସେଥିରେ ସେ ଗଭୀର ମର୍ମାହତ । ସେ କହିଲେ ଯେ, ସେ ମର୍ମାହତ, ଦୁଇଟି କାରଣରୁ । ଏକେ ଏ ପ୍ରସଙ୍ଗର ଏକାନ୍ତ ମିଥ୍ୟା ଓ ଭିତ୍ତିହୀନ । ଦ୍ୱିତୀୟରେ ବାର୍ଦ୍ଧିକାବସ୍ଥା ଗାନ୍ଧି ଆନ୍ଦୋଳନ ଭିତରେ ମଧ୍ୟ ଅସହଯୋଗୀ ଗୋଦାବରୀଶ ତାଙ୍କ ଘରେ ବରାବର ଆତିଥ୍ୟ ପାଉଥିଲେ, ଅଥଚ ଦିନେ ହେଲେ ଏକଥା 'ମତେ ବ୍ୟଞ୍ଜନାରେ ମଧ୍ୟ ଜଣାଇଲେ ନାହିଁ କାହିଁକି ?' କମ୍ବା ଜୀବନକାଳ ଭିତରେ ସେ ଏହା ଅନ୍ୟ କେଉଁଠି ପ୍ରକାଶ କଲେନାହିଁ କାହିଁକି ? ତା ହେଲେ ମୁଁ ତାର ଯଥାର୍ଥ ଉତ୍ତର ଦେଇଥାନ୍ତି । ସେ ପୁଣି କହିଲେ—"ମୁଁ ଏମ୍‌ଃ ଏ: ପାସ କରି ବସିଥିଲି । ରେଭେନ୍‌ସାରେ ଭେକାନ୍‌ସି ହେଲା । ଅନ୍ୟ କେହି ନ ଥିଲେ ମୋ ଯୋଗ୍ୟତାର ଲୋକ । ଫକସ୍ ସାହେବ ମତେ ତେଣୁ ଯାଚକରି ଚାକିରି ଦେଲେ । ଏଥିରେ ଗୋପବନ୍ଧୁଙ୍କ ତଦ୍‌ବିର ପ୍ରଶ୍ନ ନାହିଁ । ତ୍ୟାଗ ପ୍ରତି ମୋର ବି ଶ୍ରଦ୍ଧା ଥିଲା । କିନ୍ତୁ ମୁଁ ଋଣଗ୍ରସ୍ତ ଥିଲି । ଋଣଗ୍ରସ୍ତ ଲୋକ ତ୍ୟାଗ କେବେ କରେ ? ମୁଁ ଋଣରୁ ଉଦ୍ଧାର ପାଇଁ ବାଧ୍ୟ ହୋଇ ସରକାରୀ ଚାକିରି ଗ୍ରହଣ କଲି ।"

ବରଂ ଏହି ଚାକିରି ସମ୍ପର୍କରେ ସେ ଆଉ ଏକ ମଜା କଥା କହିଥିଲେ, ଯାହା ହୁଏତ ଅନେକଙ୍କ ଅଜ୍ଞାତ ଥିବ । କିନ୍ତୁ ତାହା ପ୍ରମାଣିକରେ ଗୋପବନ୍ଧୁଙ୍କର ପରମ ମହତ୍ତ୍ୱ ।

କଟକରେ ପଣ୍ଡିତଙ୍କର ସମସ୍ତ ଗୃହ-ଜୀବନରେ ସ୍ୱର୍ଗତଃ ବ୍ରଜସୁନ୍ଦର ଦାସ ତାଙ୍କର ଗାର୍ଡିଆନ୍ ପରି ଥିଲେ । ଭଲ ପଢ଼ୁଥିବା ଓ ଚରିତ୍ରବତ୍ତା ଯୋଗୁଁ, ବ୍ରଜବାବୁ ପଣ୍ଡିତଙ୍କୁ ଖୁବ ଭଲ ପାଉଥିଲେ । ପଣ୍ଡିତ ତେଣୁ ଅନେକ ସମୟରେ ବ୍ରଜବାବୁଙ୍କ ଘରକୁ ଯା'ନ୍ତି । ଏମ୍. ଏ. ପାସ କରି ଓକିଲାତି ଉପାଧି କଢ଼ାଉଥିଲେଣି । ଅଥଚ ବେକାର ଅଛନ୍ତି । ଏହି ସମୟରେ ଦିନେ ପଣ୍ଡିତ ବ୍ରଜବାବୁଙ୍କ ପାଖକୁ ଗଲାବେଳକୁ, ସେ ସେଠି ବ୍ରଜସୁନ୍ଦରଙ୍କ ସଙ୍ଗରେ ପଣ୍ଡିତ ଗୋପବନ୍ଧୁ ଓ ଗଞ୍ଜାମର ହରିହର ପଣ୍ଡାଙ୍କୁ ମଧ୍ୟ ଦେଖିଲେ । ବ୍ରଜବାବୁ ହରିହର ପଣ୍ଡାଙ୍କୁ ଚତୁର୍ଥ ରତ୍ନାକରଙ୍କର ପରିଚୟ ଦେଲେ । ଗୋପବନ୍ଧୁ ନିର୍ବିକାରଭାବରେ ବସିଥାନ୍ତି । ରତ୍ନାକରଙ୍କର ସମସ୍ତ ପରିଚୟ ଶୁଣିସାରି ଗୋପବନ୍ଧୁଙ୍କୁ (ସେତେବେଳକୁ ବିହାର ଏବଂ ଓଡ଼ିଶା କାଉନସିଲ୍ ସଭ୍ୟ) ଲକ୍ଷ୍ୟ କରି ହରିହର ପଣ୍ଡା କହିଲେ, "ତେବେ ଗୋପବନ୍ଧୁ ବାବୁ, ବର୍ତ୍ତମାନ ଏହାଙ୍କ ପାଇଁ ଗୋଟିଏ ଉତ୍ତମ ଚାକିରି ବ୍ୟବସ୍ଥା କରାଇ ଦିଅନ୍ତୁ ।"

ନୀରବତା ଭଙ୍ଗକରି ଏବଂ କଂଚିତ ବିରକ୍ତି ସହିତ, ଗୋପବନ୍ଧୁ ବର୍ତ୍ତମାନ କହିଲେ—"କ'ଣ କହିଲ ପଣ୍ଡେ ? ଗୋଟାଏ 'ଚାକିରି' ଯୋଗାଡ଼ କରି ଦେବି ? ତମକୁ ସ୍ୱାଠୁ ଆଉ କିଛି ଭଲ କଥା ଦେଖାଗଲା ନାହିଁ ? ଛି ! ଛି !"

ପଣ୍ଡିତ କହିଲେ—"ଏ ପ୍ରକାର ଅପ୍ରତ୍ୟାଶିତ ପରିସ୍ଥିତିରେ ମୁଁ ଆଉ ମୁହୂର୍ତ୍ତେ ରହିବାକୁ ଇଚ୍ଛା ନ କରି ସେଠାରୁ ସମସ୍ତଙ୍କୁ ନମସ୍କାର କରି ଶୀଘ୍ର ବିଦାୟ ନେଇ ଚାଲି ଆସିଲି ।"

ସରକାରୀ ଚାକିରିରେ ପଶିଲେ ମଧ୍ୟ, ରତ୍ନାକର ପଣ୍ଡିତଙ୍କୁ ଭୋଗ ବିଳାସ ବା ସମ୍ପତ୍ତିର ମୋହ ଆଦୌ ସ୍ପର୍ଶ କରି ନଥିଲା । ବରଂ ଯେଉଁମାନେ "ତ୍ୟାଗ" କଲେ ବୋଲି ଏ ଦେଶରେ ଧରିଯାଉଛି ସେ ସମସ୍ତଙ୍କଠାରୁ ସେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସରଳତର ଓ ହୀନତର ଜୀବନ ଯାପନ କରି ଚାଲିଥିଲେ । ଚାକିରି ଜୀବନର ବହୁକାଳ ପର୍ଯ୍ୟନ୍ତ ତାଙ୍କର ହୀନହୀନ ପୈତୃକ ଗ୍ରାମବାସ ଖଣ୍ଡିକର ମଧ୍ୟ ସେ ଉତ୍ତମ ମରାମତି କରି ପାରି ନ ଥିଲେ । ଛୁଟି ହେଲେ ପଣ୍ଡିତ ଗାଁକୁ ଯାଇ, ଛପର ଉଡ଼ିଯାଇଥିବା ଗୁହାଳ ଘରର ଏକ କୋଣରେ ଗୋଟିଏ କାନ୍‌ଭାସ୍ ଚେୟାର ପକାଇ ପଡ଼ିଥାନ୍ତି । ଦିନେ ଗାଁର ଜଣେ ବୃଦ୍ଧ ବେଢ଼ବି ପଣ୍ଡିତଙ୍କୁ ସେହି ଗୁହାଳରେ

ଭେଟି, ତାଙ୍କର ଗୃହାଳରେ ବସି ପଢ଼ିବାଟା ତ କୁ କପଟ ଲଜ୍ଜା ଲାଗୁଥିବ ତାହା ସେ ବଖାଣି ବସିଲ ।

ପଣ୍ଡିତଙ୍କ ଗାଁରେ କୁଆଡ଼େ ଦୁଇଟି ଲିଙ୍ଗ ମହାଦେବ ବିରାଜମାନ ଅଛନ୍ତି । ଗୋଟିଏ ଅଛନ୍ତି ଏକ ମନ୍ଦିରରେ; ଆଉଟି କିନ୍ତୁ ଥାନ୍ତି ଏକ ଗଛ ତଳେ ଯଥାର୍ଥରେ ବ୍ୟୋମକେଶ । ଆଶ୍ଚର୍ଯ୍ୟର କଥା ଏହି ଯେ, ଭକ୍ତମାନେ ବେଶୀ ସଂଖ୍ୟାରେ ରୁଣ୍ଡ ହୁଅନ୍ତି ଏହି ଗଛତଳ ଶିବଙ୍କ ପାଖରେ । କାରଣ ତାଙ୍କର "ପ୍ରତିଷ୍ଠା" କୁଆଡ଼େ ଅଧିକ ।

ପଣ୍ଡିତ ବେଢ଼େବାବୁଙ୍କୁ ତାଙ୍କ ଗାଁର ଏହି ଦୁଇ ଶିବଙ୍କ ଭିତରେ ଦେଖାଇ ଦେଇ କହିଲେ—"ଦେଖ, ବେଢ଼େବାବୁ ଏହି ଗୃହାଳ ନ ଥାଇ ମୋର କୋଠା ଘର ଥିଲେ ତମେ ମୋ ପାଖେ ବସିପାର ନଥାନ୍ତ । ତମେ ଦାଣ୍ଡରେ ଠିଆ ହୋଇଥାନ୍ତ । ପୁଣି, ଗାଁରେ ଅମୁକ ଅମୁକର ତ କୋଠା ଅଛି, ମୁଁ ସେହିମାନଙ୍କ ପର ହୋଇଯାଏ ବୋଲି କ'ଣ ତମେ ଚାହୁଁଛ ? ମୋର ମୂଲ୍ୟ ଥିଲେ, ମୁଁ ଯେଉଁଠି ବସେ ସେ ସ୍ଥାନର ମୂଲ୍ୟ ଥିବ । କୋଠାଘର ନେଇ ମୋର ମୂଲ୍ୟ ବଢ଼ାଇବାକୁ ମୁଁ ଚାହେଁନା ।"

ଏହି ହେଉଛନ୍ତି ପ୍ରକୃତ ଉତ୍କଳର ପଣ୍ଡିତ, ଯେ ଥିଲେ ବହୁ ତଥାକଥିତ "ତ୍ୟାଗୀ"ଙ୍କ ଠାରୁ ପ୍ରକୃତରେ ତ୍ୟାଗଶୀଳ । ପୁଣ୍ୟଶ୍ଳୋକ ଗୋପବନ୍ଧୁଙ୍କର ଉପଯୁକ୍ତ ଜାମାତା ଏହି ସରଳାତ୍ମା, ତ୍ୟାଗପୂତାତ୍ମା ଓ ବିଶୁଦ୍ଧାତ୍ମା ବ୍ରାହ୍ମଣ ଅଧ୍ୟାପକ ପ୍ରତି ଏହି ଲେଖକର ମସ୍ତକ ଚେଣୁ ଚିରକାଳ ଶ୍ରଦ୍ଧାରେ ଅବନତ ରହିବ । ସେ ଯଥାର୍ଥରେ ସାର୍ଥକନାମା । କାରଣ ସେ ପ୍ରକୃତରେ ମନୁଷ୍ୟତାର ଏକ ବିଶୁଦ୍ଧ ରତ୍ନ ଥିଲେ ।

— – —

# ପଣ୍ଡିତ ଆଉ ନାହାନ୍ତି

ଶ୍ରୀ ଇ. ବି. ସାମୁଏଲ

କିଏ କହିଲା ପଣ୍ଡିତ ଆଉ ନାହାନ୍ତି ? 'ରତ୍ନାକର ବାବୁ ନାହାନ୍ତି' ଏକ ମର୍ମନ୍ତୁଦ ସମ୍ବାଦ । ଏହା ସତ୍ୟ ଯେ ସେ ଇହଧାମରୁ ଗଲେ, କିନ୍ତୁ ତାଙ୍କ ସ୍ମୃତି, ଚରିତ, ଯଶ, ମାନବସେବା ଓ କାର୍ଯ୍ୟାବଳୀ ଚିରସ୍ମରଣୀୟ ।

ଅନେକ ଦିନ ତଳର କଥା । ରତ୍ନାକରବାବୁ ରାଞ୍ଚିର ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ । ସେଇଠାରେ ତାଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ । ଓଡ଼ିଆ ଭାଇମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ମୁଁ ଓଡ଼ିଆସଂଘ ଗଠନ କରିଥିଲି; ଓଡ଼ିଆ ଭାଇମାନଙ୍କୁ ନେଇ ବନ୍ଧୁମିଳନର ଆୟୋଜନ କଲି ଏବଂ ରତ୍ନାକର ପଣ୍ଡିତଙ୍କୁ ସଭାପତି ପଦରେ ବରଣ କରିଥିଲୁ । ଏ ଉତ୍ସବରେ ଯେଉଁ ଫଟୋ ଉଠାଇଥିଲୁ ତାହା ଏବେ ମଧ୍ୟ ମୋ ଶୋଇବା ଘରେ ଟଙ୍ଗାହୋଇଛି । ତାଙ୍କ ଭଳି ବିଶିଷ୍ଟ ବ୍ୟକ୍ତିଙ୍କୁ ସଭାପତିରୂପେ ପାଇବା ଏକ ଭାଗ୍ୟର କଥା, ଏହା ସମସ୍ତେ ସ୍ୱୀକାର କରିଥିଲେ । ତାଙ୍କ ସହ ମୋର ଭଲଭାବରେ ପରିଚୟ ହେବା ସଙ୍ଗେ ସଙ୍ଗେ ଗୋଟିଏ ଅନୁରୋଧ ନେଇ ଦିନେ ତାଙ୍କ ବାସଭବନରେ ପହଞ୍ଚିଲି । ବେକାର ଓଡ଼ିଆ ଭାଇମାନଙ୍କୁ ସରକାରୀ ଚାକିରୀ ଯୋଗାଇବା ମୋର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଗ୍ରୀଷ୍ମକାଳରେ ସରକାରୀ କାର୍ଯ୍ୟାନୁଷ୍ଠାନ ରାଞ୍ଚିକୁ ଉଠି ଯାଉଥିଲା । ଜଣେ ବି. ଏ. ଫେଲ ଗରିବ ଭାଇ କାର୍ଯ୍ୟାନ୍ୱେଷଣରେ ରାଞ୍ଚିରେ ପହଞ୍ଚିଲେ । ଅଫିସ କାର୍ଯ୍ୟ ବିଷୟରେ ଅନଭିଜ୍ଞ ଥିବାରୁ ଏବଂ କାର୍ଯ୍ୟ ପାଇବା ପର୍ଯ୍ୟନ୍ତ ଚଳିବା ନିମନ୍ତେ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ମୁଁ ତାଙ୍କ ନିମନ୍ତେ ମହାସମସ୍ୟାରେ ପଡ଼ିଲି । ମୁଁ ତାଙ୍କୁ ଟାଇପରାଇଟିଂ ଶିଖାଇଲି, କିନ୍ତୁ ତାଙ୍କର ଦୈନନ୍ଦିନ ଅଭାବ ସମ୍ପୂର୍ଣ୍ଣରୂପେ ମେଣ୍ଟାଇବାରେ ଅସମର୍ଥ ହୋଇ ପଣ୍ଡିତଙ୍କର ପରାମର୍ଶ ଲୋଡ଼ିଲି । ତାଙ୍କଠାରୁ ଆଶ୍ୱାସନା ବାଣୀ ଶୁଣି କୃତଜ୍ଞତାରେ ମୋର ମଥା ନଇଁଗଲା । ସେ କହିଲେ, "ସାମୁଏଲ, ଚିନ୍ତା କାହିଁକି କରୁଛ ? ମାନବସେବା ହିଁ ଧର୍ମ, ଧୈର୍ଯ୍ୟ ଧରି କାର୍ଯ୍ୟ କରିପକାଅ । ଏ ପିଲାଟି ପାଇଁ ମୁଁ ଗୋଟିଏ ଉପାୟ କହୁଛି । ସେ ମୋର ଟ୍ୟୁସନ ଛିଅକୁ

ଘଣ୍ଟାଏ ପଢ଼ାଇ ଦେବ ଓ ମୋ ଘରେ ବେଳାଏ ଖାଇବ ଓ ମୁଁ ତାକୁ ମାସକୁ ୧୦ ଟଙ୍କା ମଧ୍ୟ ଦେବି" । ଏହା ରତ୍ନାକରବାବୁଙ୍କ ଉଦାର ଓ ପରୋପକାରୀ ପ୍ରାଣର ଗୋଟିଏ ପ୍ରମାଣ । ଏହିପରି ବହୁ ଦରିଦ୍ର ଲୋକ ଓ ଛାତ୍ରମାନଙ୍କୁ ସେ ସାହାଯ୍ୟ କରିଥିଲେ । ଆଜି ସେମାନଙ୍କ ହୃଦୟରେ ସେ ବିରାଜମାନ ।

ବହୁ ବର୍ଷ ପରେ ପୁଣି ଥରେ ଶିକ୍ଷାକ୍ଷେତ୍ରରେ ସହକର୍ମୀ ହିସାବରେ ତାଙ୍କ ସହ ଦେଖା ହେବାର ସୁଯୋଗ ମିଳିଲା । ଗୋଟିଏ ଶିକ୍ଷାନୁଷ୍ଠାନର ପରିଚାଳନା କମିଟିରେ, ଏପରି କି ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ଆମେ ଦୁହେଁ ଏକାଠି ସଭ୍ୟରୂପେ କାର୍ଯ୍ୟ କରିଛୁ । ତାଙ୍କ ପରି ଉଦାର, ଦେବତୁଲ୍ୟ ପୁରୁଷ ଦେଶରେ ବିରଳ । ତାଙ୍କ ସଂସ୍ପର୍ଶରେ ଆସିଥିବା ଯେ କୌଣସି ବ୍ୟକ୍ତି ତାଙ୍କୁ ଭୁଲି ପାରିବ ନାହିଁ । ତାଙ୍କ ଜୀବନ ଆମମାନଙ୍କର ଆଦର୍ଶ ହୋଇ ରହିବ । ପ୍ରାଣରେ ଦୁଃଖ ରହିଗଲା, ଶେଷ ଦେଖା ହୋଇପାରିଲା ନାହିଁ । କିନ୍ତୁ ସେ ମୋର ଚିର ପୂଜ୍ୟ ରହିବେ ।

---



ଅଧ୍ୟାପକ ବିପିନବିହାରୀ ରାୟ ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି



ସବୁଶେଷ—ଅଶ୍ରୁ ଢାଳିଲେ କଣ ସେ ଫେରି ଆସିବେ ?
ଜ୍ୟେଷ୍ଠପୁତ୍ର ନବକମ, କନ୍ୟା ଧର୍ମପତ୍ନୀ, ପୁତ୍ରବଧୂ ଓ ପରିବାରର ଅନ୍ୟମାନେ

